# ଭିନ୍ନ ଏକ ସୂର୍ଯ୍ୟୋଦୟ

ଡକ୍ଟର ବାସୁଦେବ ସାହୁ

ଶତନେତ୍ର ପ୍ରକାଶନୀ
ଭୁବନେଶ୍ୱର-୨

# ଭିନ୍ନ ଏକ ସୂର୍ଯ୍ୟୋଦୟ
(ଉପନ୍ୟାସ)

# VINNA EKA SURYODAY
(A nobel)

ଲେଖକ : ଡକ୍ଟର ବାସୁଦେବ ସାହୁ

Dr. Basudev Sahoo



ପ୍ରଥମ ପ୍ରକାଶନ : ୧୯୯୮

ପ୍ରକାଶକ : ଶତନେତ୍ର ପ୍ରକାଶନୀ
ଏ/ଏମ୍. ୩୯, କପିଳ ପ୍ରସାଦ,
ଭୁବନେଶ୍ୱର-୭୫୧୦୦୨

ପ୍ରଚ୍ଛଦ : ବିଜୟ
ଅକ୍ଷର ଓ ମୁଦ୍ରଣ : ଓଁକାର

ମୂଲ୍ୟ : ଚାଳିଶ ଟଙ୍କା

First Edition : 1998
Published by :
Satanetra Prakashani
A/M-39, Kapil Prasad,
Bhubaneswar-751002

Cover : Bijaya

Printed by : Onkar

Price : Rs. 40.00



# ଉତ୍ସର୍ଗିତ

(ଯାହାର ଆଦର୍ଶଜୀବନ ଅନ୍ୟମାନଙ୍କର ଅନୁକରଣୀୟ ସେହି ଅମରାତ୍ମା ପୂଜ୍ୟ ଶଶୁର ସ୍ୱର୍ଗୀୟ ଲଛମନ ବେହେରାଙ୍କ ପବିତ୍ର ସ୍ମୃତିରେ)

# ମୁଖବନ୍ଧ

ଉପନ୍ୟାସ ଶୈଳୀରେ ଲିଖିତ ଏହି ପୁସ୍ତକଟି ଜଣେ ଲବଣ ସତ୍ୟାଗ୍ରହୀ ନିଷ୍ଠାପର ସାମ୍ୟବାଦୀ ନେତାଙ୍କର ଜୀବନ ଆଲେଖ୍ୟ ।

ଜୀବନର ବହୁ ଘାତ ପ୍ରତିଘାତ ଦେଇ ଏହି ଆଦର୍ଶ ପୁରୁଷ ଛାତ୍ରାବସ୍ଥାରେ ଲବଣ ସତ୍ୟାଗ୍ରହରେ ଯୋଗଦେବା ଠାରୁ ଆରମ୍ଭ କରି ଆତ୍ମଗୋପନକାରୀ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସହାୟତା ଦେବା, ପ୍ରଜା ଆନ୍ଦୋଳନ ଓ ଭାଗଚାଷ ଆନ୍ଦୋଳନକୁ ପ୍ରୋତ୍ସାହିତ କରିବା, ରେଳ ଶ୍ରମିକ ସଂଗଠନରେ ସକ୍ରିୟ ଅଂଶଗ୍ରହଣ କରିବା ଏବଂ ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ କାଳରେ ସାମ୍ୟବାଦୀ ଆନ୍ଦୋଳନକୁ ଆଗେଇ ନେବା ମାଧ୍ୟମରେ ଦେଶପ୍ରେମ, ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ସାମ୍ୟବାଦ ପ୍ରତି ନିବିଡ ଅନୁରକ୍ତି ପ୍ରକାଶ କରିଯାଇଛନ୍ତି । ଜଣେ ସ୍ନେହୀ ବନ୍ଧୁବତ୍ସଳ ଓ ଗରିବଙ୍କ ପ୍ରତି ଅତ୍ୟନ୍ତ ଦରଦୀ ବ୍ୟକ୍ତି ଭାବରେ ତାଙ୍କ ଜୀବନ ଥିଲା ଅନ୍ୟମାନଙ୍କ ପ୍ରତି ଆନନ୍ଦ ଓ ପ୍ରେରଣାର ଉତ୍ସ । ନିଜ ଜନ୍ମଭୂମି, ଗାଁ ମାଟି ଓ ଆତ୍ମୀୟମାନଙ୍କ ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧା ଓ କର୍ତ୍ତବ୍ୟବୋଧ ସାଧାରଣ ମଣିଷ ଜୀବନରେ ବିରଳ । ଜଣେ ଗୃହସ୍ଥ, ରେଳକର୍ମଚାରୀ, ଶ୍ରମିକ ସଂଗଠକ ଓ ବାମପନ୍ଥୀ ନେତା ବା କର୍ମୀ ଭାବରେ ତାଙ୍କର କାର୍ଯ୍ୟବଳୀ ଥିଲା ଅତ୍ୟନ୍ତ ବିଚାରସିଦ୍ଧ, ଛଳନାହୀନ ଓ ପ୍ରେରଣାମୟ । ସମାଜରେ ଅତି ସୁପରିଚିତ ନହେଲେ ମଧ୍ୟ, ବହୁ ପରିଚିତ ଲୋକଙ୍କ ନିକଟରେ ସେ ଥିଲେ ଆଦରଣୀୟ । ଆମ ଦେଶରେ ସାମ୍ୟବାଦୀ ସମାଜ ପ୍ରତିଷ୍ଠା ପାଇଁ ତାଙ୍କର ବ୍ୟାକୁଳତା ଅଦମନୀୟ । ଆଶା ଓ ଅପ୍ରତିହତ ସ୍ୱପ୍ନ ଥିଲା ଅସାଧାରଣ । ଏକ ସାଧାରଣ ମଣିଷ ଭିତରେ ଲୁକାୟିତ ଥିଲା ଅସାଧାରଣ ଆଦର୍ଶ ବ୍ୟକ୍ତିତ୍ୱ । ଏହି ଦୃଷ୍ଟିରୁ ତାଙ୍କର ଜୀବନ ଆଲେଖ୍ୟ ଉତ୍ତର ପିଢିର ଲୋକଙ୍କ ପାଇଁ ଶିକ୍ଷଣୀୟ ।

ନିଜ ନିଜବନର ବିବିଧ ଅଭିଜ୍ଞତା ସେ ସଂକ୍ଷେପରେ ଓ ସାଙ୍କେତିକ ଭାବେ ଲିପିବଦ୍ଧ କରିଯାଇଥିଲେ କ୍ଷୁଦ୍ର ଏକ ଆତ୍ମପଞ୍ଜିକାରେ । ଆତ୍ମପଞ୍ଜିକାଟି ଅପରିବର୍ତ୍ତିତ ରୂପେ ପ୍ରକାଶ କରିଥିଲେ ପାଠକଙ୍କ ନିକଟରେ ବିଶେଷ ସୁଖପାଠ୍ୟ ହୋଇନଥାନ୍ତା । ତେଣୁ ଆତ୍ମପଞ୍ଜିକାର ବିଷୟବସ୍ତୁକୁ ଏବଂ ତାଙ୍କର ସହକର୍ମୀ ଓ ଆତ୍ମୀୟଙ୍କ ବିବରଣୀକୁ ଆଧାର କରି ଏହି ଉପନ୍ୟାସଟି ରଚନା କରାଯାଇଛି । କେତେକ ସ୍ଥଳରେ କଳ୍ପନାର ପୁଟ ଦିଆଯାଇଛି ଲେଖାଟିକୁ ସୁନ୍ଦର କରିବା ପାଇଁ । 'ଭିନ୍ନ ଏକ ସୂର୍ଯ୍ୟୋଦୟ'ର ପାଠକ କିଛିଟା ଆଲୋକ ପାଇଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ।

ପୁସ୍ତକଟି ପ୍ରକାଶ କରିବାରେ ଶ୍ରୀଯୁକ୍ତ ଅଜୟ ରାଉତ ଓ ଅନ୍ୟାନ୍ୟ ବନ୍ଧୁମାନେ ସାହାଯ୍ୟ କରିଥିବାରୁ ଲେଖକ ସେମାନଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଲେଖକ

(ଏକ)

· "ବେଲାଯେ ପଡେ ଗେଲ ଜଲ୍‌କେ ଚଲ୍
ପୁରାନୋ ସେଇ ସୁରେ କେ ଯେନ ଡାକେ ମୋରେ
କୋଥାଯେ ଛାୟା ସଖୀ କୋଥାଯେ ଜଲ୍"

ରେ ନଖିଆ, ରେ ନିଧିଆ

"କୁଆଡେ ଗଲରେ ଚଗଲା ଟୋକା ଦିଟା, ଧାଇଁ ଆସ, ତମପାଇଁ ଆଣିଛି ମୁଢି ମୁଆଁ, ଗୁଲୁଗୁଲା, ବୁଟଭଜା । ତେଲପସରାଟି ଘର ଦୁଆର ମୁହଁରେ ଥୋଇ ଦେଇ ଆଦରରେ ଡାକଛାଡୁଛି ରାଧାମାଉସୀ, ନହଞ୍ଜରା ଗାଁର ତେଲୁଣୀ ରାଧା, ଆଖପାଖ ଗାଁର ଛୋଟବଡ ସମସ୍ତଙ୍କର ସେ ରାଧା ମାଉସୀ, ଉମର ଷାଠିଏରୁ ଅଧିକ, ଚୋପା ଗୋରା ନହେଲେ ବି ଉଜ୍ଜ୍ୱଳ ସଫା ଦେହ, ବଳିଲା ବଳିଲା ଦେହ, କଳା ମଚମଚ ଘନକେଶରେ ମସ୍ତବଡ ଜୁଡା, ବିଧାତା ଏଇ କେଇବର୍ଷ ହେଲା ସିନ୍ଥିରୁ ତାର ପୋଛି ଦେଇଛନ୍ତି, ସିନ୍ଦୁର ଗାର, ନୋହିଲେ ଠାକୁରାଣୀ ପରି ଜଳୁଥାନ୍ତା ଦାଉ ଦାଉ । ତୀକ୍ଷ ନାକ ଲମ୍ୱ ଦେହ, ଖରାବର୍ଷା ଶୀତରେ ଗାଁ ଗାଁ ବୁଲି ସୋରିଷ, ନଡିଆ, ଜଡାତେଲ ବିକିଲେ ମଧ୍ୟ ଚମର ଚିକ୍କଣତା ବିଶେଷ ମଉଳି ପଡିନି, ଯୌବନରେ ନିଶ୍ଚିତରୂପେ ସେ ଥିଲା, ସୁନ୍ଦରୀ ତନ୍ୱୀ ଆକର୍ଷଣୀୟା । ଶାଶୂଙ୍କ ଡାକ ଶୁଣି ବୋହୂ ପାର୍ବତୀ ଘରଭିତରୁ ଧାଇଁ ଆସିଲା, ପଛେ ପଛେ ଝିଅ ରେବତୀ, ଗୋରୀ ପତଳୀ, ଚଞ୍ଚଳ । ଶାଶୂଙ୍କ ଠାରୁ ପସରାଟି ଘର ଭିତରକୁ ନେଇ ଯାଉଁ ଯାଉଁ କହି ଯାଉଥାଏ "ଦୁଷ୍ଟ ଟୋକା ଦିଟା କଥା ମାନୁ ନାହାନ୍ତି ମା, ଦିପହର ବେଳୁ ଯାଇଛନ୍ତି ଯେ ମହାନାଳ କୂଳକୁ ଏ ଯାବତ ଫେରି ନାହାନ୍ତି, କି ମୋହ ଲଗାଇଛି ନାଳ କୂଳ ଝଙ୍କାଳିଆ ବରଗଛଟି, ଚଢେଇ ଭଳି ସାହିର ପିଲାଏ ଝୁଲୁଥିବେ ଗଛଡାଳରେ, ଡେଙ୍ଗା ମାରୁଥିବେ ଗହୀର ନାଳର କାଚ କେନ୍ଦୁ ପରି ସ୍ଥିର ଜଳକୁ । ପାଣିରେ ଖେଳି ଯାଉଥିବ ଭଉଁରୀ, ମନ ମତାଣିଆ ଗୀତ ଗାଇ, ନାଚୁଥିବେ ପିଲାଏ ସଞ୍ଜ ହେଲେ ନୀଡଫେରା ପକ୍ଷୀ ପରି ଘୋଘା ହୋହା ହୋଇ ଫେରିବେ ଘରକୁ" । "ହଉଲୋ ବୋହୂ ମୋ ନାତି ଦିଟାଙ୍କ ପାଇଁ ମୁଆଁ ଗୁଲୁଗୁଲା ସାଇତି ରଖିଦେଇଥିବୁ । ଏ ନାକ କାହୁରୀ ଡଗଡଗୀ ରେବ ନୋହିଲେ ସବୁ ଖାଇଦେବ ।" କାହିଁକି କିଜାଣି ସାଆନ୍ତମା ନାତୁଣୀଟିକୁ ଏତେ ଆଦର କରନ୍ତି ନାହିଁ । ମାଆ ପାଖରେ ସବୁବେଳେ ଲସର ପସର ହେଉଥିବାରୁ ତା ପ୍ରତି ଅନାଦର, କି ନିଜ ଅତୀତ ସୌନ୍ଦର୍ଯ୍ୟର ଭାବୀ ପ୍ରତିଦ୍ୱନ୍ଦୀ ପ୍ରତି ନାରୀର ସ୍ୱାଭାବିକ ଇର୍ଷା, କହିହେବନି, ପିତୃ ପ୍ରଧାନ ସମାଜରେ କନ୍ୟା ସନ୍ତାନ ପ୍ରତି ଆବହମାନ କାଳରୁ ଗଢିଆସିଥିବା ଅବହେଳାର ଏହା ଏକ ରୂପାନ୍ତର ।

[redacted]

ସୂର୍ଯ୍ୟାସ୍ତର ରଙ୍ଗୀନ କିରଣ ବିଛୁରି ପଡିଛି ମହାନାଳର ସ୍ଫଟିକପରି ସ୍ୱଚ୍ଛ ଜଳରେ । ଗୋଧୂଳିର ମୃଦୁ ପବନରେ ଶୀତଳ ଜଳରେ ଆହ୍ଲାଦରେ ଡେଉଁଛନ୍ତି ଛୋଟ ଛୋଟ ମାଛ । ରୂପା ପାତିଆ ମାଛ ଉପରେ ଅସ୍ତ ସୂର୍ଯ୍ୟର ସୁନେଲି କିରଣ ଚମତ୍କାର ଦେଖାଯାଉଛି, ଆକର୍ଷି ନେଉଛି ନାଳକୂଳରେ ଖେଳୁଥିବା ପିଲାମାନଙ୍କୁ । ପିଲାଙ୍କ ଦଳର ନେତାପଣିଆ ଦେଖାଉଥିବା ହରିଆ ଗଛଡାଳରୁ ଝାମ୍ପ ମାରିଲା ପାଣିକୁ । ଡାକଦେଲା, ଏ ନଖିଆ ଏ କାର୍ତ୍ତିକା, ଚାଲିଆସ । ଲୁଗାକାନିରେ ଖିଅ ଧରିବା କେତେ ସୁନ୍ଦର ମାଛ ଗୁଡିକ ପହଁରୁଛନ୍ତି, ସହଜରେ ଧରିନେବା । ଛହାତି, ସାତହାତି ଲୁଗା ପିନ୍ଧିଥିବା କେତୋଟି ପିଲା ଧସି ପସିଲେ ପାଣି ଭିତରକୁ, ଅଧାଲୁଗା ଦେହରେ, ବାକି ଅଧକର ଶେଷ କାନିକୁ ଧରିଲା ଆଉ ଜଣେ । ଆନନ୍ଦରେ ପହଁରୁ ଥିବା ମାଛ ଧରାପଡିଗଲେ ଲୁଗା କାନିରେ । ନଖିଆ, ନିଧିଆ ଦି ଭାଇ ଲୋଭ ସମ୍ଭାଳି ପାରିଲେ ନାହିଁ । ବଡଭାଇ ନିଧିଆ କହିଲା, ଏ ନଖିଆ, ଆମେତ ଛୋଟ ଗାମୁଛା ପିନ୍ଧିଛେ, କିମିତି ମାଛ ଧରିବା ? ନଖିଆ ଉତ୍ତର ଦେଲା ଭାଇ ମୁଁ ନଙ୍ଗଳା ହୋଇ ପଡୁଛି । ଏଇଥିରେ କାନିଖିଅ ଦେବା, ମାଛ ଧରି ସାରିଲେ ଗାମୁଛା ଚିପୁଡି ପିନ୍ଧି ପକାଇବି, ବଡଭାଇ କହିଲା "ବାପା ବୋଉ ଜାଣିଲେ ଗାଳି ଦେବେ, ଓଦା ଗାମୁଛା, ଖଣ୍ଡେ ଲେଖା ଗାମୁଛା ତ ଆମର । ଘରେ ଯାଇ ପିନ୍ଧିବା କ'ଣ ? ବେପରୁଆ ଭାବରେ ନଖିଆ କହିଲା "ସଂଜତ ହୋଇ ଆସୁଛି, ଆଉ କୁଆଡେ ଯିବାର ଅଛି କି ? ଘରେ ପହଞ୍ଚି କନା କପଡା କି ସାଆନ୍ତ ମା ଶାଢ଼ିଟି କମରରେ ଗୋଡାଇ ଦେଇ ଶୋଇଁପଡିଲେ ଗଲା" ତାହାହିଁ ହେଲା, ଗାମୁଛାରେ କାନିଖିଅ ଦେଇ ମାଛଧରା ହେଲା । ଜୀଅନ୍ତା ଚୂନା ମାଛ ଧରି ସଞ୍ଜବେଳକୁ ଘରେ ପହଞ୍ଚିଲେ ଦିଭାଇ । ବୋଉର ଦୃଷ୍ଟି ଏଡାଇ ସିଧା ଚାଲିଲେ ସାଆନ୍ତ ମା ପାଖକୁ । ବାହାଦୁରି ଦେଖାଇ ଏକ ସ୍ୱରରେ ଚୁପିଚୁପି କହି ଉଠିଲେ "ମାଆ ଆଜି ନାଳରୁ କେତେ ମାଛ ଧରି ଆଣିଛୁ ଦେଖିଲୁ, ଜୀଅନ୍ତା ଚହ୍ଲା, କଣ୍ଟିଆ, ବେସର ଦେଇ ରାନ୍ଧିବାକୁ ବୋଉକୁ କହିବୁ, ଭାରି ବଢ଼ିଆ ଲାଗିବ" । ଛୁଆ ଦି'ଟାଙ୍କ ପାଟିରୁ ସତେ ଯେମିତି ଲାଳ ବୋହି ଆସୁଥାଏ । ସାଆନ୍ତ ମା ଓଦା ଗାମୁଛା କାନିରେ ବନ୍ଧାଯାଇଥିବା ମାଛକୁ ଦେଖି ବେଶ୍ ଖୁସି, କିନ୍ତୁ ଓଦା ସରସର ଦେହର ସ୍ପର୍ଶ ପାଇ କ୍ରୋଧାନ୍ୱିତ ଓ ଚିନ୍ତିତ । "ଆରେ ଥଣ୍ଡା ଲାଗିବରେ ଯାଆ ଶୁଖିଲା କନାକନି ଖଣ୍ଡେ ନପାଇଲେ, ମୋ ଢଣ୍ଡା ଶାଢ଼ିଟା ଦେହରେ ଗୁଡେଇ ଦିଅ । ବୋଉ ସଞ୍ଜଦୀପ ଦେଇ ଆସିଲାଣି । ପାଖ ବ୍ରାହ୍ମଣ ସାହିର 'ରାଧାମୋହନ' ମନ୍ଦିରରେ ଆଳତି ହେଲାଣି । ଢୋଲ ମୃଦଙ୍ଗ ଘଣ୍ଟା ଧ୍ୱନିରେ କମ୍ପି ଉଠୁଛି । ସନ୍ଧ୍ୟାର ଆକାଶ, ଆଉ ଟିକିଏ ପରେ ଭାସିଆସିବ ମଧୁର ଭଜନ 'ଭବସାଗର ତାରଣ କାରଣ ହେ' 'ଲଳିତା ଲବଙ୍ଗ ଲତା' । ଖଣ୍ଡିଏ ଲେଖା ଗାମୁଛା ଓଦା ତ କରିଦେଲ, ମନ୍ଦିରକୁ ତ ଆଜି ଯାଇ ପାରିବ ନାହିଁ । ଏହି ଘର ଅଗଣାରେ ବସି ପ୍ରାର୍ଥନା କର । 'ଆହେ ଦୟାମୟ ବିଶ୍ୱ ବିହାରୀ' 'ଭୋଗ ନଖାଇଲ ନାହିଁ' ତୁମ ପାଇଁ ଆଜି ଭଲ ମୁଢି ମୁଆଁ ବରା ଗୁଲୁଗୁଲା ଷ୍ଟେସନ ବଜାରରୁ ଆଣିଛି । ବୋଉଠାରୁ ଆଣି ଖାଅ ।

ପିଲା ଦିହିଁଙ୍କର ଆନନ୍ଦର ସୀମା ନାହିଁ । ଏବେ ମୁଢିମୁଆଁ ବରା ଗୁଲୁଗୁଲା ରାତି ଭୋଜନରେ ମାଛ ତରକାରି, କେତେ ସୌଭାଗ୍ୟର ଦିନ ଆଜି !

ଗରିବ ତେଲିଘର, ଆଠ ପ୍ରାଣୀ କୁଟୁମ୍ବଙ୍କୁ ନେଇ ପରିବାରଟି, ବୁଢ଼ୀମା, ନଣ୍ଡିଆ ବନାମ ଲକ୍ଷ୍ମଣର ବାପା, ମାଆ, ବଡବାପା, ବଡମା, ଲକ୍ଷ୍ମଣ ଓ ତାର ଭାଇ ଓ ଭଉଣୀ ରେବତୀ, ଚାଷଜମି ମାତ୍ର ୩ ମାଣ, ବର୍ଷରା କରି ପରିବାର ପାଇଁ ନଅ ମାସର ଖାଦ୍ୟ-ଚାଉଳ ସଂଗ୍ରହ କରାଯାଏ, ବର୍ଷର ବାକି ତିନିମାସ ମହାଜନଠାରୁ ଧାନ କରଜ ଆଣି ଚଳିବାକୁ ପଡେ । ଦିନରେ ଥରେ ରନ୍ଧା, ପଖାଳ ପାଣି ଖାଇ ଚଳିଯାଏ । ଲକ୍ଷ୍ମଣର ବାପା ନିଜେ ଜମିରେ ହଳ, ରୁଆ଼ଖୋଳା, ବେଉଷଣ କରନ୍ତି । ଖରାବର୍ଷା ସବୁଦିନ, କଠିନ ପରିଶ୍ରମ । ବଡବାପା ବି.ଏନ୍.ଆର୍.ର ନିକଟସ୍ଥ ଖନ୍ତାପଡା ରେଲଷ୍ଟେସନରେ ପଏଣ୍ଟମ୍ୟାନ, ଦରମା ଖୁବ୍ କମ୍ । ଆଠଜଣିଆ ପରିବାରକୁ ଚଳାଇବା କେତେ ଯେ କଷ୍ଟକର, ତା ଅନୁଭବୀ ବ୍ୟତୀତ ଅନ୍ୟ କେହି ଉପଲବ୍ଧି କରି ପାରିବେ ନାହିଁ । ପରିବାରର କଷଣ ବଢିଯାଏ, ଘର ଧାନ ଚାଉଳ ସରିଗଲେ । ମହାଜନ ବାପୁଡାଠାରୁ କରଜ ଆଣିବାକୁ କେତେ କାକୁତି ମିନତି, କେତେ ଅପେକ୍ଷା ! ଦିନେ ଦିନେ ଘରେ ଚାଉଳ କି ପଇସା ନଥାଏ । କରଜ ଧାନକୁ ସାରା ପରିବାରଙ୍କ ଅପେକ୍ଷା, ରାତିରେ ପ୍ରଥମ ପ୍ରହରରେ କରଜ ଧାନ ମିଳିଲାତ ସେ ଧାନକୁ ଉଲୁଡି ସଙ୍ଗେ ସଙ୍ଗେ ଢେଙ୍କିରେ କୁଟି ଚାଉଳ କାଢି ଫୁଟୁଥିବା ପାଣି ହାଣ୍ଡିରେ ପକାଇ ଭାତ ରନ୍ଧାଯାଏ ଓ ତାକୁ ଭୋକିଲା ପିଲାଙ୍କୁ ଖାଇବାକୁ ଦିଆଯାଏ ।

ସାନବୋହୂ ଲକ୍ଷ୍ମଣର ମାଆ । ଦିନବେଳା ଭାତ ରନ୍ଧା ହୁଏ । ଦିନେ ଦିନେ ଯାହା ଭାତ ରନ୍ଧା ହୋଇଥାଏ, ପିଲା ବୁଢ଼ୀମା ଓ ପିଲାଙ୍କ ବାପାଙ୍କୁ ଦେବାପରେ ପ୍ରାୟ ଶେଷ ହୋଇଯାଏ । ଲକ୍ଷ୍ମଣର ମାଆ ତୋରାଣି ପିଇ ଦିନ କାଟନ୍ତି ।

ଏପରି ଏକ ଦୁଃଖୀ ପରିବାରର ପିଲାଙ୍କ ଭାଗ୍ୟଜୋର ଆଜି । ବରା ଗୁଲୁଗୁଲା, ମାଛ ତରକାରୀ, କେତେ ମଜା, ଆନନ୍ଦ ଉତ୍ସାହରେ ବୁଢ଼ୀ ମାକୁ ଜାବୋଡି ଧରି ଶୋଇପଡିଲେ ଦି ଭାଇ ।

- - -

ସକାଳର ସୂର୍ଯ୍ୟକିରଣ ବିଛୁରି ପଡ଼ିଲାଣି ଚାରିଆଡେ, ବାଡିରେ, ଘର ପିଢାରେ, ତାଳଗଛରେ, ଘଣାଶାଳ ପିଢାରେ । ଗତ ରାତିର ଭୁରି ଭୋଜନ କରି ନିଶ୍ଚିନ୍ତ ମନରେ ଶୋଇ ପଡିଛନ୍ତି ପିଲା ଦିଟି, ଗଡିଆର ପଦ୍ମଫୁଲଟି ସୂର୍ଯ୍ୟଙ୍କୁ ଚାହିଁ ନଚେଇଁ ଦେଉଛି ତାର ନାଲିଅଧର, କୂଅ ପାଖକୁ ଲାଗି ରହିଥିବା ଟଗର ଗଛରେ ତୋଫା ତୋଫା ଫୁଲ, ଶୁଭ୍ରତାରେ ଫୁଲେଇ ହୋଇ ପବନ ସାଙ୍ଗରେ ନାଚୁଛନ୍ତି, ଊର୍ଦ୍ଧ୍ୱଗାମୀ ସୂର୍ଯ୍ୟଙ୍କୁ ଚାହିଁ । ବାସଗୃହର ଆଗରେ ଘଣାଶାଳରୁ ଭାସି ଆସୁଛି 'କେଁ କଟରେ କେଁ କଟର ଶବ୍ଦ' । ଗୋଲ ଘରଟି ମଝିରେ ଘଣାଗଣ୍ଡି- ଗଣ୍ଡିଭିତରେ ପେଡାଯାଏ, ଜଡା ନିମ୍ବ ସୋରିଷ ମଞ୍ଜି । ପାଚିଲା ନଡିଆ ପେଡାଯାଏ ତେଲ ପାଇଁ । ତେଲ ପେଡା କଲଟିକୁ ଘୁରାଉଥାନ୍ତି ମହି ଯୋଗା ବଳଦ । ହ୍ରି ହ୍ରି କରି ବଳଦ ଅଡାଏ ଲକ୍ଷ୍ମଣର ବାପା, ବୁଢ଼ୀ ମା ପଣିଦିଏ ତେଲ ମଞ୍ଜି, ମଞ୍ଜି ଚିପୁଡି ହୋଇ ତେଲ ବାହାରି ଆସେ ଏକ ରନ୍ଧ୍ର ଦେଇ । ପିମ୍ପା ବା ଠେକିରେ ଭରି ରଖେ ବୁଢ଼ୀ ମା, ଗାଁ ଗାଁ ବୁଲି ବିକ୍ରି କରେ ଖାଣ୍ଟି ସୋରିଷ ତେଲ, ନିମ୍ବ ତେଲ, ଜଡା ତେଲ । ଘଣା ତେଲକୁ ବଡ ଆଦର, ସେଥିରେ

ନଥାଏ ଭେଜାଲ ନଥାଏ କିଛି ଦୋଷ । ଗାଁ ଲୋକଙ୍କ ଧାରଣା 'ମଥାରେ ପଗଡି ପାଦରେ ତେଲ, ବଇଦର ସାଙ୍ଗେ କରିବ ଗେଲ' । ରାନ୍ଧିଲେ, ଜଡାତେଲରେ ଜୁଡା ବାନ୍ଧିଲେ ଖୁନ୍ଦି ହୋଇ ରହେ । ବୟସ ଗଡିଗଲା ଯାଏ, ସ୍ତ୍ରୀଲୋକଙ୍କ କେଶ ଘନ ଓ କଳା ମଚମଚ ହୋଇ ରହେ । ଦେହର ଚମରହେ ସରସ ଚିକ୍କଣ । ରାଧା ମାଉସୀକୁ ଚାହିଁ ରହିଥାନ୍ତି ଗାଁ ବୋହୁଏ । ରନ୍ଧନର ଆବଶ୍ୟକତା, ସ୍ନାନଚର୍ଯ୍ୟ, କେଶବିନ୍ୟାସ- ସମସ୍ତ ଗୁଜୁରାଣ ମେଣ୍ଟାଯାଏ ରାଧା ମାଉସୀଠାରୁ ତେଲ କିଣି । ରାଧାମାଉସୀର ସ୍ନେହ ଆତ୍ମୀୟତାଭରା କଥା ମନକୁ ଛୁଏଁ । ଖାଣ୍ଟିତେଲ ଉଚିତ୍ ଦର । ରାଧାମାଉସୀ ତେଲର ମୂଲ୍ୟ ବଦଳରେ ଆଣେ କିଛି କଉଡି, ଅବା ବିରି ମୁଗ ଅନ୍ୟ କିଛି । ଭାତଟି ସିନା ମିଳିଯାଏ ଚାଷରୁ, ଚନି ତରକାରି ଓ ଘରର ଅନ୍ୟାନ୍ୟ ଗୁଜୁରାଣ ମେଣ୍ଟାଯାଏ ଏହି ଘଣାପେଡା ତେଲ ବେପାରର ଲାଭରୁ । ବୁଢୀମା ପ୍ରକୃତରେ ଘରର କର୍ତ୍ତ୍ରୀ । ସେ ଚଳାଏ ଘର ।

ବ୍ରାହ୍ମଣ ସାହି ମୁଣ୍ଡରେ ଗାଁ ସ୍କୁଲ । ସରକାରୀ ନିମ୍ନପ୍ରାଥମିକ ବିଦ୍ୟାଳୟ । ଛୋଟ ଛୋଟ ପିଲାଗୁଡିକ ସିଲଟ ଖଡି ବହି ବସ୍ତାନି ଧରି ଚାଲିଛନ୍ତି ଇସ୍କୁଲକୁ । କାହା ପକେଟରେ ମୁଢି ତ କାହା ପକେଟରେ ନବାତ । ଇସ୍କୁଲ ଚାଲେ ସକାଳ ସାତଟାରୁ ଏଗାରଟା, ଉପରବେଳା ଦୁଇଟାରୁ ପାଞ୍ଚଟା ପର୍ଯ୍ୟନ୍ତ । ଟିଫିନ ଛୁଟିରେ ଭୋକ ଲାଗିଲେ ଖାଇବେ ନିଜ ନିଜର ମୁଢି ନବାତ, ଧନୀ ଘରର ପିଲାଙ୍କ ପକେଟରେ ପଇସେ ଦି ପଇସା । ମନହେଲେ ବୁଟ ଚିନାବାଦାମ ବିସ୍କୁଟ କିଣି ଖାଇବେ । ନଖିଆ ବାପା ଅପଲକ ଦୃଷ୍ଟିରେ ଚାହିଁ ରହିଛନ୍ତି ପିଲାଙ୍କ ଧାଡିକୁ । ଆଉ ଟିକିଏ ପରେ ପିଲାଙ୍କ ସମବେତ କଣ୍ଠରୁ ଭାସି ଆସିବ ପ୍ରାର୍ଥନା 'ଆହେ ଦୟାମୟ ବିଶ୍ୱ ବିହାରୀ, ଘେନ ଦୟାବହି ମୋର ଗୁହାରି', ଦି କେ ଦିପଣ, ଦି ଦୁନେ ଚାରିପଣ', କେତେ ପିଲା ପ୍ରତିଯୋଗିତା କରି ଲଳିତ କଣ୍ଠରେ ଗାଇବେ,

"ପାହିଲା ଅନ୍ଧାର ରଜନୀ ଉଠ ଉଠ ବାଳକେ
ନବୀନ ପ୍ରଭାତ ସମୟ ଏବେ ଗାଅ ପୁଲକେ
ଦଶ ଦିଗ ଦେଖ ଉଜ୍ଜ୍ୱଳ ପାଇ ରବି କିରଣ
ଫୁଲ ଫୁଟିଅଛି କାନନେ ଧୀରେ ବହେ ପବନ"

ଘଣା ବଳଦ ପିଠିରେ ହାତ ମାରିଦେଇ ଭାବି ଯାଉଛନ୍ତି ନଖିଆ ବାପା ଶୂନ୍ୟ ଆକାଶକୁ ଚାହିଁ । ପାଗ ଏବର୍ଷ ଚାଷ ପାଇଁ ଅନୁକୂଳ ହେବାର ଆଶା । କିଛି ଦିନ ତଳେ ବର୍ଷା ଦି ଅସରା ହୋଇ ଯାଇଛି । ଖନା ବଚନ 'ଯଦି ବରଷଇ ମାଘର ଶେଷ, ଧନ୍ୟ ସେ ରାଜା ଧନ୍ୟ ସେ ଦେଶ' ଚାଷ ଭଲହେଲେ, ବେଉସା ଭଲ, ଚାଷୀ ମୂଲିଆ ବେପାରୀ ସମସ୍ତଙ୍କ ଅବସ୍ଥା ସୁଧୁରେ । ଅନେକ ଦିନ ହେଲା ସେ ଭାବିଲେଣି ଦିପୁଅଙ୍କୁ ଇସ୍କୁଲରେ ଭର୍ତ୍ତି କରିବେ । ପେଟକୁ ଦାନା ଗଣ୍ଡେ ଦେବାକୁ ତ ଅକ୍ଷମ । ଇସ୍କୁଲ ଦରମା, ସିଲଟ ଖଡି ବହିପତ୍ର ପାଇଁ ପଇସା କୋଉଁଠୁ ପାଇବ ?

ସପ୍ତାହରେ ଥରେ ଦିଥର ଦିପହରେ ସ୍କୁଲ ପିଲାଏ ଡ୍ରିଲ କରନ୍ତି । ଖାକି ହାଫ୍‌ପେଣ୍ଟ ଧଳା ସାର୍ଟ ପିନ୍ଧି । ଛୋଟ ପିଲାଏ, ଲେଫ୍ଟ ରାଇଟ୍ କରି ଚାଲୁଥିବାବେଳେ ଆନନ୍ଦରେ ଦେଖନ୍ତି ଲକ୍ଷ୍ମଣର ବାପା,

ଦୂର ଘଣାଶାଳରୁ । ମନରେ ତାଙ୍କର ଗର୍ବ ଉଲ୍ଲାସ ଭରିଯାଏ । ନହଞ୍ଚରା ପିଲାଏ ବଡହେଲେ ଫୌଜ ହେବେ, ଡିପୁଟି ହେବେ, ଦାରୋଗା ହେବେ । ପର ମୂହୂର୍ତ୍ତରେ ତାଙ୍କର ମନ ମରିଯାଏ । ଭାବିପକାନ୍ତି, ମୋ ନଖିଆ, ମୋ ନିଧି ଇମିତି ବାବୁ ହେବେ ନାହିଁ ନା ? ନିଜ ପ୍ରତି ଧିକ୍କାର ଆସେ, ନିଜର ଗରିବ ପଣିଆ ପୂରୁଷ ପଣିଆକୁ ଉପହାସ କରେ । ସେଦିନ ତାଙ୍କୁ ବଡ ଆଘାତ ଲାଗିଥିଲା, ପୁଅ ନଖିଆ ଘଣାଶାଳରେ ବାପାଙ୍କୁ କହିଥିଲା "ବାପା ମୋ ପାଇଁ ଗୋଟେ ହାଫ ପେଣ୍ଟ ହାଫ୍ ସାର୍ଟ ଆଣି ଦେବ । ମୁଁ ବି ଡ୍ରିଲ କରିବି" । ଛାତିର ହୁତାଶକୁ ଚାପିଧରି ବାପା ଆଶ୍ବାସନା ଦେଇ କହିଥିଲେ "ତୁ ଆଗେ ସ୍କୁଲକୁ ଯାଆ, ପାଠ ପଢ, ପେଣ୍ଟ ସାର୍ଟ ପିନ୍ଧି ଡ୍ରିଲ କରିବୁ" । ନଖିଆ ଖୁସିହୋଇ କହିଥିଲା, 'ମୁଁ ଇସ୍କୁଲକୁ ଯିବି, ବାପା, ପାଠ ପଢିବି' । ସେହିଦିନରୁ ନଖିଆର ବାପା ମନେ ମନେ ସ୍ଥିର କରିଛନ୍ତି, ଏକ ପ୍ରକାର ସଂକଳ୍ପ, ଯାହା ଋଣ କରିବାକୁ ହେଉ ପଛେ ଏବର୍ଷ ପିଲା ଦିଟାଙ୍କୁ ଇସ୍କୁଲରେ ଭର୍ତ୍ତି କରିବେ ।

ବାପା ରଡି ଛାଡିଲେ 'ରେ ନିଧି ରେ ନଖି, କୁଆଡେ ଗଲରେ, ଅଲକ୍ଷଣା, ଅଳସୁଆ, କେତେବେଳ ଯାଏ ବିଛଣାରେ ପଡିଥିବ । ଇସ୍କୁଲକୁ ନଯାଇ ପାରିଲ ନାହିଁ, କାମରେ ଟିକିଏ ସାହାଯ୍ୟ କର । ଆସ ଘଣା ବଳଦକୁ ଟିକିଏ ଅଡେଇ ଦିଅ । ପଖାଳ ଗଣ୍ଡେ ଖାଇ ତ ମୋତେ ବିଲକୁ ଯିବାକୁ ହେବ । ଚହଟ ଖରା ମେଲିଗଲାଣି, ଆଉ ଟିକିଏ ବେଳକୁ ଟାଣ ହୋଇଯିବ, ବିଲରେ ବେଶୀବେଳ କାମ କରି ହେବନି । ବାପାଙ୍କ ଚିତ୍କାର ଶୁଣି ଧଡପଡ ହୋଇ ବିଛଣାରୁ ଉଠିପଡିଲେ ଦିଭାଇ । ମୁହଁରେ ପାଣି ଟିକିଏ ମାରି ଦେଇ ଛୁଟିଆସିଲେ ଘଣାଶାଳକୁ । କାଳିଆ କଷରା ଦିଟା ବଳଦ ଏମାନଙ୍କର ଅତିପ୍ରିୟ । ପିଠି ଆଉଁଷି ଦିଅନ୍ତି । ଗାଲରେ ଚୋକ ଦିଅନ୍ତି । ସୁଧାର ବଳଦ ଦିଟି ସ୍ନେହସ୍ନିଗ୍ଧ ନୟନରେ ଚାହାଁନ୍ତି ପିଲା ଦିଟିଙ୍କୁ । ଦିଭାଇ ଛନ ଛନ ଘାସ ଆଣି ନିତି ଦିଅନ୍ତି ବଳଦକୁ । ପଶୁହେଲେ ବି ଅଛି ତାଙ୍କର ହୃଦୟ । ପିଲା ଦିଟାର ହାତ ବାଜିବାରୁ କୁତୁକୁତୁ ହୋଇ ଖୁସି ମିଜାଜରେ ଟାଣିଚାଲିଲେ ଘଣା । କଠିନ କାମ ସତେ ଯେମିତି ପାଲଟିଗଲା ହସଖୁସିର ଖେଳ । ପିଲାଦିଟିଙ୍କ କଣ୍ଠରୁ ସ୍ଫୁରି ଉଠିଲା ଆନନ୍ଦଭରା ସଙ୍ଗୀତ, 'ଝୁଲ ପଣ୍ଡା ଝୁଲ ପଣ୍ଡା, ଝୁଲୁ ଝୁଲୁ ଖାଏ ଛେନାମୁଣ୍ଡା । ନଝୁଲିରେ ଖାଏ ଗୁଳି ଗେଣ୍ଡା' । 'ବାଇମୁଣ୍ଡ ବାଇମୁଣ୍ଡ, କିଛି ଖାଇନାହିଁ ଖାଲି ତୁଣ୍ଡ' । ସଙ୍ଗୀତର ତାନେ ତାନେ ବାଜି ଉଠୁଥାଏ ବଳଦ ବେକର ଘଣ୍ଟି । ଝୁଲି ଝୁଲି ଚାଲିଲେ ଘଣାବଳଦ, ଗାଇ ଚାଲିଥାନ୍ତି ଗୀତ ପରେ ଗୀତ ପିଲା ଦିଟା -

"ଜମି ଚଷେ ଚଷା, ବଳଦବଳେ
ତହିଁ ଧାନ ମୁଗ ଗମହଫଳେ
ଗୋରସ ଜାଣ, ରଖିଛି ବଞ୍ଚାଇ ଛୁଆଙ୍କ ପ୍ରାଣ" ।

ବୁଢୀମାଠାରୁ ଶିଖିଥିବା ଗୀତଗୁଡିକ ନଖିଆର ବେଶ ମୁଖସ୍ଥ । ସ୍ମୃତିଶକ୍ତି ତାର ପ୍ରଖର । କଣ୍ଠର ସ୍ୱର ମଧ୍ୟ ଲଳିତ । ମୂକ ବଳଦଟି ମୁଣ୍ଡ ହଲାଇ ସତେ ଯେମିତି ବାହାବା ବାହାବା କରି ଚାଲିଥାଏ ।

## (ଦୁଇ)

"ଗାଆଁ ଚାଟଶାଳୀ ପାଠ ଦେଲି ସାରି, ବାପା ଯାଚିଦେଲେ ବର"

ନଖିଆ ବାପାଙ୍କ ମନ ସଂକଳ୍ପ ପୂର୍ଣ୍ଣ ହୋଇଛି । କଷ୍ଟେ ମଷ୍ଟେ କିଛି ଅର୍ଥ ଯୋଗାଡ କରି ସିଲଟ ଖଡି, ଜାମାପ୍ୟାଣ୍ଟ କିଣି ପୁଅ ଦିଟାଙ୍କ ନାମ ଇସ୍କୁଲରେ ଲେଖାଇଛନ୍ତି । ଦିଭାଇ ଆନନ୍ଦରେ ଯାଆନ୍ତି ଇସ୍କୁଲକୁ ସବୁଦିନ । ମାଷ୍ଟର ମହାଶୟ କିନ୍ତୁ ସବୁଦିନ ଆସନ୍ତି ନାହିଁ । ସେଥିପାଇଁ ପିଲାଙ୍କ ମନରେ ଦୁଃଖ ନଥାଏ । ନିମ୍ନପ୍ରାଇମେରୀ ସ୍କୁଲଟିର ଥାଏ ପ୍ରଶସ୍ତ ଘର । ଗଛବୃକ୍ଷ ଘେରା ବଡପଡିଆଟିଏ । ପାଠପଢା ଆଳରେ ବହୁ ପିଲାଙ୍କ ସମାବେଶ, ପାଠପଢା ନଥିଲେ ଜମେ ଖେଳ । ଆନନ୍ଦରେ କଟିଯାଏ ଦିନ, ଘରେ ରହି ବୋଲହାକ କରିବା ଓ ବିଲରେ ହଳିଆ ପାଖକୁ ପାଣି ନେଇ ଯିବାଠାରୁ ଏହା ସୁଖକର ନୁହେଁ କି ? ନଖିଆ ବୁଦ୍ଧିମାନ, ପାଠରେ ତାର ଆଗ୍ରହ, ଶ୍ରେଣୀରେ ହୁଏ ପ୍ରଥମ । ଗାଁ ସ୍କୁଲରେ ଭଲ ପାଠ ପଢାଯାଏନା । କିଛି ଦୂରରେ ମାମୁଘର ଗାଁରେ ଥିବା ସ୍କୁଲଟି ବେଶ୍ ନାମଜାଦା । ପ୍ରାୟ ପ୍ରତ୍ୟେକବର୍ଷ ବୃତ୍ତି ପାଏ । ଲକ୍ଷ୍ମଣକୁ ତେଣୁ ମାମୁଁଘର ଗାଁ ସ୍କୁଲରେ ଆଉଥରେ ତୃତୀୟ ଶ୍ରେଣୀରେ ନାମ ଲେଖାଇ ଦିଆଗଲା ବୃତ୍ତି ପାଇବା ଆଶାରେ । ମାମୁଁ ଘର ସଚ୍ଛଳ । ବିଦ୍ୟାର୍ଜନ ସଙ୍ଗେ ସଙ୍ଗେ ଭଲରେ ଗଣ୍ଡେ ଖାଇପିଇ ପୁଅ ସୁସ୍ଥ ସବଳ ହେବ । ପାଠପ୍ରତି ଆଗ୍ରହର ଆତିଶଯ୍ୟ ଟାଣିନେଲା ଲକ୍ଷ୍ମଣକୁ ମାମୁଁ ଘରକୁ । ମାସିକ ଛାତ୍ରବୃତ୍ତିର ଆକର୍ଷଣ ମଧ୍ୟ କମ୍ ନୁହେଁ, ବିଶେଷତଃ ଅଭାବୀ ଲୋକପାଇଁ । ତୃତୀୟ ଶ୍ରେଣୀ ପରୀକ୍ଷାରେ ବୃତ୍ତି ପାଇ ଲକ୍ଷ୍ମଣ ସୁରୁଖୁରୁରେ ମାମୁଁ ଘରେ ରହି ଉଚ୍ଚ ପ୍ରାଥମିକ ପାଠ ଅଧ୍ୟୟନ କଲା । ବୃତ୍ତି ପାଇବା ଆଶାରେ ପଞ୍ଚମ ଶ୍ରେଣୀରେ ଦି ବର୍ଷ ପଢିବାକୁ ପଡିଥିଲା ତାକୁ । ବୃତ୍ତି ପାଇଥିଲା ମଧ୍ୟ ପଞ୍ଚମରେ । ଭର୍ଣ୍ଣାକୁଲାର ଇସ୍କୁଲରେ ପାଠ ପଢା ଷଷ୍ଠ ସପ୍ତମ ଶ୍ରେଣୀରେ । ଭର୍ଣ୍ଣାକୁଲାର ପରୀକ୍ଷାରେ କୃତିତ୍ୱର ସହ ପାଶ୍ କରି ଏବଂ ବୃତ୍ତି ପାଇ ବାଲେଶ୍ୱର ଖ୍ରୀଷ୍ଟାନ ମିସନ ସ୍କୁଲରେ ଇଂରାଜୀ ଜାଣିବାକୁ ଷଷ୍ଠ ସପ୍ତମ ଶ୍ରେଣୀରେ ପଢିଥିଲା ଲକ୍ଷ୍ମଣ । ଇଂରାଜୀ ଶାସନ, ଇଂରାଜୀ ନଜାଣିଲେ କେଉଁଠି ଭଲ ଚାକିରି ମିଳିବ ? ବୃତ୍ତି ଟଙ୍କାରେ ତ ଚଳି ଯାଉଛି । ପାଠ ନପଢିଲେ ବୃତ୍ତି ମିଳିବ ନାହିଁ । ବୃତ୍ତି ନ ମିଳିଲେ ଘରେ ଗରିବ ପରିବାର ଉପରେ ବୋଝ । ପେଟ ପୂରେଇ ଖାଇବା ସ୍ୱପ୍ନ । ବୟସ ଗଡିଲେ ଦୁଃଖ ନାହିଁ । ଗରିବ ଜୀବନରେ କି ଅମୂଲ୍ୟ ଦୀର୍ଘକାଳୀନ ଯୋଜନା ଅଛି ଯେ, ସମୟକୁ ହିସାବ କରି ଚଳିବାକୁ ହେବ । ଚକେ ଗଲେ ବାରହାତ, ଜୀବନର ଚକ ବୃତ୍ତି ଅର୍ଥ ଠେଲାରେ ଯେତେ ଦିନ ଯେତେ ଦୂର ଗଡୁଥାଉ, ଚିନ୍ତା କରିବା ନିଷ୍ପ୍ରୟୋଜନ । ନିମ୍ନପ୍ରାଇମେରୀର ତୃତୀୟ ଶ୍ରେଣୀ ପାଠ ୧୦ ବର୍ଷରେ ଆରମ୍ଭ କରି ବାଇଶ ବର୍ଷରେ ହେଲା ମେଟ୍ରିକ ପାଶ୍ । ଘର ଓ ବାପା ମାଆଙ୍କଠାରୁ ସଦା ସର୍ବଦା ଦୂରରେ ରହି, ଗର୍ବର ସହିତ ମେଟ୍ରିକ ସାର୍ଟିଫିକେଟ ଧରି ବାରବର୍ଷ ବନବାସ ପରେ ଲକ୍ଷ୍ମଣ ଫେରିଥିଲା ନିଜ ଘରକୁ । ଆଦରର ବାପା ମାଆ ପିଲାଦିନର ସାଙ୍ଗସାଥୀ ମେଳକୁ । ବଡଭାଇ ନିଧି ତୃତୀୟ ଶ୍ରେଣୀ ଅତିକ୍ରମ କରି ନପାରି ରହିଯାଇଥିଲା ନହଞ୍ଜରା ମାଟିରେ ।

(ତିନି)

'ଲୁଣ ଗଣ୍ଡା ପାଇଁ କରିଦେଲା ମନା
କହିବାକୁ ମୋତେ ମାଡୁଛି ଲାଜ
ହେ ବ୍ରିଟିସ୍ ରାଜ,
ମୋ ବାଡି ଭିତରେ ଲୁଣର ଅମଳ
ଅଲଣା ଖାଆନ୍ତି ଦୁଃଖୀ ଓଡିଆ,
ଲୁଚାଇ ଖାଇଲେ ପବଡି ନିଅନ୍ତି,
ଖୋଲ୍‌ଟି କହି ତାଙ୍କୁ ନୀଳ ପଗଡିଆ ।'
(ନନ୍ଦକିଶୋର)

ଦାଣ୍ଡିଠାରୁ ଚାନ୍ଦିପୁର, ଗୋଟିଏ ଆଓ୍ୱାଜ, 'ମୁଠିଏ ଲୁଣରେ ଗୋଟିଏ ସାମ୍ରାଜ୍ୟ', ସ୍ୱାଧୀନ ଆତ୍ମନିର୍ଭରଶୀଳ ସର୍ବଶକ୍ତିମାନ ଭାରତ ସ୍ୱପ୍ନ ଦେଖୁଛନ୍ତି ଗାନ୍ଧୀ, ତାଙ୍କର ଅଗଣିତ ଅନୁଚର । ମୁଠିଏ ଲୁଣ ବଜ୍ରମୁଷ୍ଟିର ସଙ୍କେତ, ଅଧିକାର ସାବ୍ୟସ୍ତର ଆଭାସ । ୧୯୩୦ ମସିହା, ମାଇଲ ମାଇଲ ଧରି ଚାଲିଛନ୍ତି ସଂଗ୍ରାମୀ ସୈନିକ ଗାନ୍ଧୀଙ୍କ ଆହ୍ୱାନରେ । ନିର୍ଭୀକ, ସଂକଳ୍ପବଦ୍ଧ ଅଜୟ ଅନୁଚରବର୍ଗ । ପଦଯାତ୍ରାରେ ଦୋହଲି ଯାଉଛି ଭୂଇଁ । ସଂଗ୍ରାମୀ ଜନତାର ଧାର ମିଶି ଯାଉଛି ସମୁଦ୍ରତୀରେ । ଗଗନେ ପବନେ ନିନାଦିତ ହେଉଛି ବିଶ୍ୱ କବିଙ୍କ ଉଦାତ୍ତ ସଙ୍ଗୀତ "ହେ ମୋର ଚିତ୍ତ ପୂଣ୍ୟତୀର୍ଥେ ଜାଗୋରେ ଧୀରେ, ମହାଭାରତର ସାଗର ତୀରେ" ।

ଦେହରେ ଖେଳିଯାଉଛି ଶିହରଣ, ପାଠୁଆ ଅପାଠୁଆ ଦେଶପ୍ରତି ଆସକ୍ତ ଆବାଳବୃଦ୍ଧବନିତା ସବୁରି ପ୍ରାଣରେ । ଲବଣ ସତ୍ୟାଗ୍ରହର ମନ୍ତ୍ରଧ୍ୱନି ଉଦ୍‌ବେଳିତ କରିଛି ଅସଂଖ୍ୟ ହୃଦୟକୁ । ସତ୍ୟାଗ୍ରହରେ ଝାସ ଦେଇଛନ୍ତି, ଗୋପ, ନବକୃଷ୍ଣ, ହରେକୃଷ୍ଣ ନନ୍ଦକିଶୋର, କୁଳବଧୂ ସରଳା, ମାଳତୀ କେତେଯେ କେତେ । ଗାନ୍ଧିଜୀଙ୍କ ଡାକରାରେ ମନ୍ତ୍ରମୁଗ୍ଧ ପରି ଟାଣି ହୋଇ ଆସିଛନ୍ତି କେତେ ଯେ ସ୍କୁଲ କଲେଜ ଛାତ୍ର ଚପଳ କିଶୋର, ତରୁଣ, ଶୁରେନ୍ଦ୍ର, ଅନନ୍ତ, ଲକ୍ଷ୍ମଣ ।

ଭାବପ୍ରବଣ କିଶୋର ଲକ୍ଷ୍ମଣ ମନରେ ଉଠିଛି ଅହେତୁକ ପ୍ରଶ୍ନ । କାହିଁକି ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ବର୍ଜନ କରି ଝାସ ଦେଉଛନ୍ତି ବିପ୍ଳବାଗ୍ନିରେ ଗାନ୍ଧୀ, ନେହରୁ, ପଟେଲ, ଜୟପ୍ରକାଶ ? ସୀମିତ ଜୀବନର ଲକ୍ଷ୍ୟ କ'ଣ, ଆତ୍ମସ୍ୱାର୍ଥ ନା ସମାଜକଲ୍ୟାଣ, ଆଦର୍ଶ ନା ଐଶ୍ୱର୍ଯ୍ୟ, ଏକ ନା ଅନେକ ଅହଂ ନା ସର୍ବଂ, ଶ୍ରେୟ ନା ପ୍ରେୟ ? ଏ ସବୁ ଜଟିଳ ପ୍ରଶ୍ନର ସଠିକ୍ ଉତ୍ତର କିଶୋର ଲକ୍ଷ୍ମଣ ପାଇଥିଲା କି ନାହିଁ କହିହେବନି । ତେବେ ପ୍ରଶ୍ନ ତାର ହୃଦୟକୁ କରିଥିଲା ଆନ୍ଦୋଳିତ, ମନକୁ ପ୍ରସାରିତ । କେଉଁ ଏକ ଯାଦୁକରୀ ମନ୍ତ୍ରରେ ମୋହମୁଗ୍ଧ ହୋଇ ଯୋଗ ଦେଇଥିଲା ୧୯୩୦ ମସିହାର ଲବଣ ସତ୍ୟାଗ୍ରହରେ, ନବମ ଶ୍ରେଣୀର ଛାତ୍ର ଲକ୍ଷ୍ମଣ । ସତ୍ୟାଗ୍ରହର ବାର୍ତ୍ତା ଥିଲା, ଭାରତର ସାର୍ବଭୌମତ୍ୱ ରହିବ ଭାରତୀୟଙ୍କ ମୁଷ୍ଟିରେ, ଇଂରାଜୀଙ୍କ ହାତରେ ନୁହେଁ ।

ଭାରତ ମାଟିର ପାଣି ପବନ ଉପରେ ଭାରତୀୟଙ୍କର ଅଧିକାର । ମୁଠିଏ ଲୁଣ ମାରି ମହାପ୍ରତାପୀ ଇଂରେଜୀ ସରକାରଙ୍କୁ ଅମାନ୍ୟ କରିବାକୁ ହେବ । ସମଗ୍ର ଭାରତବାସୀ ବଜ୍ରସ୍ୱରରେ ଘୋଷଣା କରିବେ "ଏଇ ମାଟି ଆମର । ଆମେ ଯାହା ଚାହିଁବୁ କରିବୁ । ବିଦେଶୀର ହସ୍ତକ୍ଷେପ ସହିବୁ ନାହିଁ, ସହିବୁ ନାହିଁ" । ଦଶମ ଶ୍ରେଣୀରେ ବୃତ୍ତି ପାଇ ପାଠ ପଢୁଥିବା ବାଲେଶ୍ୱର ଜିଲ୍ଲା ସ୍କୁଲ ଛାତ୍ର ଲକ୍ଷ୍ମଣ ଏବଂ ଆଉ ତିନି ଚାରିଜଣ ସ୍ୱାଧୀନ ଚେତା ଛାତ୍ର ଜାତୀୟତାରେ ଉଦ୍‌ବୁଦ୍ଧ ହୋଇ ଯୋଗ ଦେଇଥିଲେ ଲୁଣମରା ଆନ୍ଦୋଳନରେ । ଦାଣ୍ଡି, ଚାନ୍ଦିପୁର, ଗୋପାଳପୁରର ଐତିହାସିକ ଲୁଣମରା ଯାତ୍ରା ଥରାଇ ଦେଇଥିଲା ବ୍ରିଟିସ ସମ୍ରାଟର ହୃତପିଣ୍ଡ, ରଚିଥିଲା ତ୍ୟାଗର ଉଦ୍‌ବେଳନ । ଆଦର୍ଶର ପ୍ରେରଣା ଏବଂ ରଙ୍ଗୀନ ସ୍ୱପ୍ନରେ ଭୁଲିଯାଇଥିଲେ ତାତ୍କାଳିକ ବାସ୍ତବତା, ଅଭାବ ଅନାଟନ ପରିବେଶରେ ସରକାରୀ ବୃତ୍ତି ପାଇ ବିଦ୍ୟାର୍ଜନ ସହ ପେଟପୂରା ଗଣ୍ଡେ ଖାଇ ବଞ୍ଚି ରହିବାର ଇଙ୍କାକର ଦୟନୀୟ ଅବସ୍ଥା ।

ଲୁଣମରା ଆନ୍ଦୋଳନରେ ଯୋଗ ଦେଇଥିବା ଛାତ୍ରମାନଙ୍କୁ ସ୍କୁଲରୁ ବହିଷ୍କାର କରାଗଲା । କିଶୋର ଲକ୍ଷ୍ମଣ ପାଠପଢାରୁ ବଞ୍ଚିତ ହେଲେ । ବଞ୍ଚିତ ହେଲେ ମଧ୍ୟ ଦୁଇବେଳା ଖାଇବାକୁ ପାଇବା ସୁଯୋଗରୁ । ଅନ୍ୟ ସତ୍ୟାଗ୍ରହୀ ସହପାଠୀମାନେ ଥିଲେ ସ୍ୱଚ୍ଛଳ ପରିବାରର ପିଲା । ସ୍କୁଲରୁ ବାହାରି ଯାଇ ଘରେ ନିଶ୍ଚିନ୍ତରେ ରହିଥିବେ । ମାତ୍ର କିଶୋର ଲକ୍ଷ୍ମଣ ? ତାଙ୍କ ନିକଟରେ ନଥିଲା ଖାଦ୍ୟ ସଂଗ୍ରହର ବିକଳ୍ପ ପନ୍ଥା । ପାଠ ପଢା ନହେଲେ ମୂଲ ଲାଗ । ମୂଲ ମଧ୍ୟ ଦୁଷ୍ପ୍ରାପ୍ୟ । ପୃଥିବୀ ବ୍ୟାପୀ ଅର୍ଥନୈତିକ ମାନ୍ଦା ଅବସ୍ଥା । ଦାରିଦ୍ର୍ୟ ଓ କ୍ଷୁଧା ଦଂଶି ଚାଲିଥିଲା ଲକ୍ଷ୍ମଣଙ୍କ ପରିବାରକୁ । କ୍ଷୁଧାଭଳି ଜୈବିକ ତାଡନା ନିକଟରେ ହାର ମାନିଥିଲା ଉଚ୍ଚ ମାନସିକତା ଓ ଉଦ୍ଦାମ ଆବେଗ । ମନରେ ନୈରାଶ୍ୟ ଓ ସନ୍ଦେହ ବେଳେବେଳେ ଉଙ୍କି ମାରୁଥାଏ । "ସ୍ୱାଧୀନତା ମିଳିବା କଷ୍ଟ, ମିଳିଲେ ମଧ୍ୟ କାହାର ଲାଭ ? ଯେଉଁମାନେ ପଢାପଢି କରିଛନ୍ତି ସେମାନଙ୍କର ଲାଭ । ତେଣୁ ଯେକୌଣସି ମତେ ସ୍କୁଲ ପାଠ ଚାଲୁ କରିବାକୁ ହେବ" ।

ଲୁଣମରା ଆନ୍ଦୋଳନ ପରେ ପରିସ୍ଥିତି ଶାନ୍ତ । ଅନନ୍ୟୋପାୟ ହୋଇ ଦିନେ ମଧ୍ୟାହ୍ନରେ କିଶୋର ଲକ୍ଷ୍ମଣ ପହଞ୍ଚିଲେ ଜିଲ୍ଲା ସ୍କୁଲ ହେଡମାଷ୍ଟର ଫଜଲ ହକଙ୍କ ନିକଟରେ । ଧଳା ଶୁଭ୍ରଶୋଭିତ ଗୌରବର୍ଣ୍ଣ ଉଉର ପଚାଶର ଗମ୍ଭୀର ହେଡମାଷ୍ଟର ଫାଇଲେରିଆ ଜନିତ ଈଷତ୍ ଗୋଦଦା ଗୋଡ ଦୁଇଟିକୁ ଟି ପୟ ଉପରେ ଥୋଇ ସମ୍ବାଦ ପତ୍ର ପଢୁଥିଲେ । କିଶୋର ଲକ୍ଷ୍ମଣ ହେଡମାଷ୍ଟରଙ୍କ ପାଦ ଦୁଇଟିକୁ ଜାବୋଡି ଧରି ଭୋ ଭୋ ହୋଇ କାନ୍ଦୁଥାନ୍ତି ଏବଂ କହୁଥାଆନ୍ତି "ସାର କ୍ଷମା କରନ୍ତୁ, ମୁଁ ଭୁଲ କରିଛି, କ୍ଷମା କରନ୍ତୁ । ମୁଁ ପାଠ ପଢିବାକୁ ଚାହେଁ, ଶ୍ରେଣୀରେ ମୋର ନାମ ଲେଖି ଦିଅନ୍ତୁ ।" ମେଧାବୀ ଛାତ୍ର ଲକ୍ଷ୍ମଣଙ୍କୁ ନିଶ୍ଚୟ ହେଡମାଷ୍ଟର ମହାଶୟ ଚିହ୍ନିଥିବେ, ମାତ୍ର ବ୍ରିଟିସ୍ ସରକାରଙ୍କ ବିଶ୍ୱସ୍ତ କର୍ମଚାରୀ କିଛି ପ୍ରତିଶ୍ରୁତି ନଦେଇ ନୀରବ ରହିଥିଲେ । ବେଶ କିଛି ସମୟ କଟିଗଲାଣି । ପିଲାଟିର କାନ୍ଦ ସ୍ପର୍ଶ କରିଛି ନାରୀର ହୃଦୟ । ଗୁରୁମାଆ ବେଗମ୍‌ଙ୍କ ହୃଦୟ । ବେଗମ୍ ବାରଣ୍ଡାକୁ ଆସି ରାଗମିଶା

ସ୍ୱରରେ ହେଡମାଷ୍ଟର ମହାଶୟଙ୍କୁ ତିରସ୍କାର କରି କହିଲେ, "ମାଷ୍ଟର ହୋଇଛ, ପିଲାଟି କେତେବେଳୁ କାନ୍ଦିଲାଣି, ପାଟିରୁ କଥା ବାହାରୁ ନାହିଁ", ଲକ୍ଷ୍ମଣଙ୍କୁ ଲକ୍ଷ୍ୟ କରି କହିଲେ "ବଚା, କେତେବେଳୁ ଆସିଲୁଣି । ମଧ୍ୟାହ୍ନ ଗଡିଗଲାଣି । ଭୋକ ଲାଗୁଥିବ । ଆ ଗଣ୍ଡେ କ'ଣ ଆଗେ ଖାଇ ନେ, ପରେ ହେଡମାଷ୍ଟରଙ୍କ ନିକଟରେ ଗୁହାରି କରିବୁ" । ଭୋକରେ ପେଟ ଜଳୁଥିବା ଲକ୍ଷ୍ମଣ ଧୀରେ ଧୀରେ ବେଗମ ସାହେବାଙ୍କୁ ଅନୁସରଣ କରି ଘର ଭିତରକୁ ଗଲେ । ପରଟା ତରକାରିରେ ଉଦର ଶାନ୍ତ କରି ପୁନର୍ବାର ଆରମ୍ଭ କଲେ ତାଙ୍କର ଗୁହାରି । ବେଗମଙ୍କ ଦୟାରେ ଆନୁପ୍ରାଣିତ ହୋଇ ବା ନିଜ ବିବେକର ନିର୍ଦ୍ଦେଶରେ ହେଡମାଷ୍ଟର ମହାଶୟ ସଦୟ ହୋଇ କହିଲେ "ନାମ ଲେଖାଇ ଦେବି, ମାତ୍ର ବୃତ୍ତି ମିଳିବ ନାହିଁ ।"

ନିଜର ପୁରୁଣା ପାଠ୍ୟପୁସ୍ତକ ବିକ୍ରୟ କରି କିଶୋର ଲକ୍ଷ୍ମଣ ନାମ ଲେଖା ଫିସ ଦାଖଲ କଲେ । ଦୁଇବେଳା ଖାଇବା ପାଇଁ ବହୁ କଷ୍ଟରେ ସ୍କୁଲ ଠାରୁ ୪/୫ ମାଇଲ ଦୂରରେ ଟିଉସନ ବ୍ୟବସ୍ଥା କରିପାରିଲେ । ପ୍ରତିଦିନ ଟିଉସନ କରିଯାନ୍ତି ୪/୫ ମାଇଲ ରାସ୍ତା ଚାଲି । କ୍ଳାନ୍ତି ଓ ସମୟ ଅଭାବ ଯୋଗୁଁ ଏବଂ ନିଜ ପାଖରେ ପାଠ୍ୟପୁସ୍ତକ ନଥିବାରୁ, କିଶୋର ଲକ୍ଷ୍ମଣଙ୍କ ପାଠ ପଢାର ଲକ୍ଷ୍ୟ, ପ୍ରଶଂସାର ସହିତ କୃତକାର୍ଯ୍ୟ ହେବାର ସମ୍ଭାବନା, କ୍ଷୀଣ ହୋଇ ଉଠୁଥାଏ । ଈଶ୍ୱରଙ୍କ ଅପାର କୃପାରୁ ମଣିଷର ଅଭିଳାଷ ଅପ୍ରତ୍ୟାଶିତ ଭାବେ ପୂର୍ଣ୍ଣ ହୁଏ । ଅଚାନକ ଦିନେ ରେଳ ଗାଡ଼ିରେ ଲକ୍ଷ୍ମଣନାଥ ହାଇସ୍କୁଲର ଜନୈକ ଶିକ୍ଷକଙ୍କ ସଙ୍ଗରେ କିଶୋର ଲକ୍ଷ୍ମଣଙ୍କ ସାକ୍ଷାତ ହୁଏ । ନୂଆ ହୋଇ ଖୋଲାଯାଇଥିବା ଲକ୍ଷ୍ମଣନାଥ ସ୍କୁଲଟି ପରୀକ୍ଷାରେ ଉତ୍ତମ ଫଳ ପାଇବା ପାଇଁ ମେଧାବୀ ଛାତ୍ର ଖୋଜୁଥାଏ । ଶିକ୍ଷକ ମହାଶୟ କିଶୋର ଲକ୍ଷ୍ମଣଙ୍କୁ ଚିହ୍ନନ୍ତି । ସେ ପଚାରିଲେ "ଲକ୍ଷ୍ମଣନାଥ ହାଇସ୍କୁଲ ସେକ୍ରେଟାରୀ ଜମିଦାର ମହାଶୟ ତୁମର ସ୍କୁଲ ଦରମା ଖାଇବା ରହିବା ବ୍ୟବସ୍ଥା କରିଦେବେ, ତୁମେ ସେ ସ୍କୁଲରେ ପଢିବ ?" କିଶୋର ଲକ୍ଷ୍ମଣ ସଙ୍ଗେ ସଙ୍ଗେ ରାଜି ହୋଇ ଗଲେ ଏବଂ ଜିଲ୍ଲା ସ୍କୁଲରୁ ସ୍ଥାନାନ୍ତର ସାର୍ଟିଫିକେଟ ନେଇ ଲକ୍ଷ୍ମଣନାଥ ହାଇସ୍କୁଲରେ ଭର୍ତ୍ତିହେଲେ । ଦୁଇବର୍ଷ ପରେ କୃତିତ୍ୱର ସହ ଏଣ୍ଟ୍ରାନସ (ମେଟ୍ରିକ) ପାଶ କଲେ ଲକ୍ଷ୍ମଣ ବାବୁ । କଲେଜରେ ପଢିବାର ଯୁ ନାହିଁ । ଚାକିରି ଦୁଷ୍ପ୍ରାପ୍ୟ, କ'ଣ କରିବେ ? କେହିଜଣେ ହିତୈଷୀ ଖବର ଦେଲେ ଯେ, କଟକ ଟ୍ରେନିଂ ସ୍କୁଲରେ ନାମ ଲେଖାଇବା ପାଇଁ ମେଟ୍ରିକ ପାଶ କରିଥିବା ପ୍ରାର୍ଥୀଙ୍କ ଠାରୁ ଦରଖାସ୍ତ ମଗାଯାଉଛି । ପାସ୍ ସାର୍ଟିଫିକେଟର ନକଲ ସହ ଦରଖାସ୍ତ କରିବାକୁ ହେବ । ନିର୍ବାଚିତ ପ୍ରାର୍ଥୀଙ୍କୁ ବୃତ୍ତି ମିଳିବ । ଦରଖାସ୍ତ ପହଞ୍ଚିବାର ଶେଷ ତାରିଖ ମାତ୍ର ସାତ ଦିନ ଅଛି । ପାଟନାରୁ ଏଣ୍ଟ୍ରାନ୍ସ୍ ସାର୍ଟିଫିକେଟ ମଗାଇବାକୁ ପଡିବ । ସାର୍ଟିଫିକେଟ ପାଇଁ ରେଜେଷ୍ଟ୍ରୀ ଦରଖାସ୍ତ ପଠାଇବାକୁ ପାଖରେ ପଇସା ନାହିଁ । ଜଣେ ପରିଚିତ ହିତାକାଙ୍କ୍ଷୀ ମୋହରିରଙ୍କୁ ଟଙ୍କାଟିଏ ଧାର ମାଗିଲେ । ମୋହରିର ମହାଶୟ କହିଲେ, "ଅପେକ୍ଷାକର ଜଣେ ମହକିଲ ଆସିବାର ଅଛି । ସେ ମୋ ଫିସ୍ ଦେଲେ, ତୁମକୁ ଟଙ୍କାଟିଏ ଦେବି ।" ଭାଗ୍ୟ ବଶତଃ ମହକିଲ ମହାପ୍ରଭୁ ଆସିଲେ । ମୋହରିର ବାବୁଙ୍କଠାରୁ ଟଙ୍କାଟିଏ ନେଇ କିଶୋର ଲକ୍ଷ୍ମଣ ରେଜେଷ୍ଟ୍ରୀ ଡାକରେ ପାଟନାକୁ

ଦରଖାସ୍ତ ପଠାଇଦେଲେ । ସେ ଯୁଗ ଥିଲା ସ୍ୱତନ୍ତ୍ର, କର୍ତ୍ତବ୍ୟ ପରାୟଣତାର, ନିୟମ ଓ ସମୟାନୁବର୍ତ୍ତିତାର । ପାଟନାରୁ ଡାକରେ ୫/୬ ଦିନ ଭିତରେ ସାର୍ଟିଫିକେଟ ଆସି ବାଲେଶ୍ୱରରେ ପହଞ୍ଚିଲା । ଲକ୍ଷ୍ମଣବାବୁ ଦରଖାସ୍ତ ପହଞ୍ଚିବାର ଦିନକ ପୂର୍ବରୁ କଟକ ଟ୍ରେନିଂ ସ୍କୁଲକୁ ଡାକରେ ଦରଖାସ୍ତ ପଠାଇ ଦେଲେ । ନାମ ଲେଖା ପାଇଁ ମନୋନୀତ ହେଲେ ମଧ୍ୟ । ବୃତ୍ତି ପାଇ ସ୍ୱଚ୍ଛନ୍ଦରେ ଦୁଇବର୍ଷ ପାଠପଢ଼ାରେ କଟିଗଲା । ଟ୍ରେନିଂର ଶେଷ ପରୀକ୍ଷା ଦେଇସାରି ସଙ୍ଗେ ସଙ୍ଗେ ଏକ ଅସ୍ଥାୟୀ ସରକାରୀ ସ୍କୁଲର ଶିକ୍ଷକ ଚାକିରି ମଧ୍ୟ ପାଇଗଲେ ।

ଶିକ୍ଷକଭାବେ ଯୋଗଦେବାପାଇଁ ଲକ୍ଷ୍ମଣଙ୍କ ରୁଚି ସମ୍ମତ ଲୁଗା ଜାମା ନଥାଏ । ଟ୍ରେନିଂ ସ୍କୁଲର ଦୟାର୍ଦ୍ର ହେଡମାଷ୍ଟର (ଅଧ୍ୟକ୍ଷ)ଙ୍କ ଠାରୁ ଧାର ସୂତ୍ରେ କିଛି ଅର୍ଥ ନେଇ ଶିକ୍ଷକତା ପାଇଁ ନିଜକୁ ପ୍ରସ୍ତୁତ କରିଦେଲେ । ଶିକ୍ଷକତା ମାତ୍ର ୩ ମାସ । ଦରମା ମାସକୁ ୪୫ ଟଙ୍କା, ସେଥିରୁ କିଛି ସଞ୍ଚୟ କରି ଲକ୍ଷ୍ମଣ ବାବୁ ଜୀବନର ପରବର୍ତ୍ତୀ ପର୍ଯ୍ୟାୟର ସଂଗ୍ରାମକୁ ଅପେକ୍ଷା କରି ରହିଲେ ।

(ଚାରି)

"ଗୁରୁ ଗୋବିନ୍ଦ ଦୋଉଖଡେ କାକେ ଲାଗୌ ପାଁୟ
ବଲିହାରୀ ଗୁରୁ ଆପନେ ଗୋବିନ୍ଦ ଦିୟୋ ବତାୟ"

(ଗୁରୁ ଗୋବିନ୍ଦ ଦୁହେଁ ଆଗରେ ଛିଡା ହୋଇଛନ୍ତି କବୀର କାହା ଚରଣ ଆଗେ ସ୍ପର୍ଶ କରିବ ? ଗୁରୁହିଁ ଧନ୍ୟ, ସେ ଗୋବିନ୍ଦଙ୍କୁ ଚିହ୍ନାଇ ଦେବେ)

ଖନ୍ତାପଡା ମାଇନର ସ୍କୁଲ । ଆଖପାଖ ଅନେକ ଗୁଡିଏ ଗାଁର ପିଲାଏ ପାଠ ପଢନ୍ତି । ୧୯୩୦ ଦଶକର କଥା । ଆଜିକାଲି ଭଳି ସେ ସମୟରେ ପ୍ରତିଗାଆଁରେ ବା ଦୁଇ ତିନିଟି ଗାଁରେ ମାଇନର ସ୍କୁଲ ନଥାଏ । ସମଗ୍ର ଥାନାରେ ଅତିବେଶୀରେ ଦୁଇ ତିନିଟା ମାଇନର ସ୍କୁଲ । ଦୂର ଗାଁର ପିଲାଏ ହଷ୍ଟେଲରେ ରହି ପାଠ ପଢନ୍ତି । କୋମଳମତି ପିଲା, ବାପ ମାଆ ଭାଇଭଉଣୀଙ୍କୁ ଛାଡି ରହିବେ ହଷ୍ଟେଲରେ । ମାସରେ ଥରେ ଦିଥର ଯାଆନ୍ତି ଘରକୁ । ହଷ୍ଟେଲର ନିୟନ୍ତ୍ରିତ ଖାଦ୍ୟ, ତା ପୁଣି ନିମ୍ନମାନର । ମନଇଚ୍ଛା କିଛି ଖାଇ ପାରିବେ ନାହିଁ । ସମୟ ସୀମିତ, ହଷ୍ଟେଲର କଡା ନିୟମ, କଠିନ ଶୃଙ୍ଖଳା । ଅନ୍ତେବାସୀ ପିଲାଙ୍କ ମନ ହୁଏ ଛଟପଟ । ନିର୍ବାସିତ ଜୀବନର ବେଦନା । ଚାତକପରି ଚାହିଁ ରହିଥିବେ, ବାପାଭାଇ ଅଭିଭାବକଙ୍କ ଆଗମନକୁ । କିମ୍ବା ମାସ ଶେଷ ରବିବାର ଓ ଛୁଟି ଦିନକୁ, ଘରକୁ ଯିବାର ଅନୁମତି ପାଇବା ଆଶାରେ । ଅନ୍ୟ ସବୁଦିନ ଇସ୍କୁଲ ଛୁଟି ପରେ ଇସ୍କୁଲ ବାଉଣ୍ଡରୀରେ ବା ପାର୍ଶ୍ୱସ୍ଥ ଖେଳ ପଡିଆରେ ବସି ଉନ୍ମୁକ୍ତ ଆକାଶକୁ, ଦୂରର ଦିଗ୍‌ବଳୟକୁ, ଅସ୍ତଗାମୀସୂର୍ଯ୍ୟକୁ ଗାଁ ବିଲ ନଈନାଳ, ଠାବେ ଠାବେ ଥିବା ଅଶ୍ୱତ୍ଥ ବର ବବୁରି ଗଛ ପରପାରେ ଥିବା ଅଦୃଶ୍ୟ ନିଜ ଗାଁ ଦିଗକୁ ।

କିଛି ଦୂରରେ ଖନ୍ତାପଡା ରେଳ ଷ୍ଟେସନ । ସକାଳେ ସଞ୍ଜେ ଦିନରାତିରେ ଚାଲିଥାଏ କେତେ ଟ୍ରେନ୍ ମାଲଗାଡି, ପାସେଞ୍ଜର, ମେଲ, ଏକ୍ସପ୍ରେସ । ରେଳଗାଡିର ଘରଘର ଶବ୍ଦ, ଗାଡି ଆସିବା

ଛାଡିବା ବେଳର ହର୍ଷ, ଘଣ୍ଟିର ଟିଂ ଟିଂ ଶବ୍ଦ ପଡାପଡିରେ ଆଣେ ବ୍ୟାଘାତ । ପିଲାଙ୍କୁ କିନ୍ତୁ ଦିଏ ମନପରିବର୍ତ୍ତନର ସୁଯୋଗ, କିଛିଟା ବିସ୍ମୟ, କିଛିଟା ଆନନ୍ଦ । ବେଳ ବୁଡୁବୁଡୁ ହେବା ବେଳେ, ଉଦାସ ମନରେ ହଷ୍ଟେଲ ପିଲାଏ ଛକଛକ ରେଳଯାତ୍ରୀଙ୍କୁ ଦେଖି ଉଚ୍ଛନ୍ନ ହୋଇ ପଡନ୍ତି, ମନହୁଏ ରେଳଚଢି ଧାଇଁ ଯିବାକୁ ସ୍ନେହମୟୀ ମାଆ କୋଳକୁ । ଆଦରର ଭାଇଭଉଣୀ ସାଙ୍ଗ ସାଥୀ ଗହଣକୁ । ଅସହାୟତା ମାରିଦିଏ ମନ, ନିରାଶ ହୃଦୟରେ ଗୁଞ୍ଜରି ଉଠେ "ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ" । ନୀଡଫେରା ପକ୍ଷୀସବୁ ଆନନ୍ଦର କାକଳି ତୋଳି ଉଡିଯାଉଥାନ୍ତି ସୁନୀଳ ମୁକ୍ତ ଆକାଶରେ ।

ଯୁବକ ଅବିବାହିତ ଟ୍ରେନିଂ ପାଶ କରିଥିବା ଲକ୍ଷ୍ମଣ ବାବୁ ଏହି ସ୍କୁଲରେ ମାଷ୍ଟର । ହଷ୍ଟେଲର ସୁପରିଟେଣ୍ଡେଣ୍ଟ ମଧ୍ୟ । ଇହଧାମଛାଡି ଚାଲିଯାଇଛନ୍ତି ଆଦରଣୀୟା ମାଆ, ବାପା, ବୁଢୀମା, ଘରର ବନ୍ଧନ ଶିଥିଳ । ଇସ୍କୁଲ ପରିସର ଭିତରେ ସର୍ବଦା ରହଣି । ଛୋଟପିଲାଙ୍କ ଗହଣରେ କଟିଯାଏ ଆନନ୍ଦରେ ଦିନ । ଏକଦା ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିବା, ଗାନ୍ଧୀ ନେହେରୁଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇଥିବା ତାଲିମପ୍ରାପ୍ତ ନୂତନ ତରୁଣ ଶିକ୍ଷକ ଲକ୍ଷ୍ମଣବାବୁ । ମନରେ ବୈପ୍ଳବିକ ଚିନ୍ତା, ଦେଶପ୍ରେମର ଜୁଆର, ସ୍ୱାଧୀନତାର ସୁନେଲି ସ୍ୱପ୍ନ । ଏହି ଆଦର୍ଶ, ଏହି ଚିନ୍ତାର ବୀଜ ବୁଣିଦେବାକୁ ହେବ ଶିଶୁ କିଶୋରମାନଙ୍କ ପ୍ରାଣରେ । ସେମାନେ ତ ହେବେ ସ୍ୱାଧୀନତା ସଂଗ୍ରାମର ବୀର ସୈନିକ ବା ସ୍ୱାଧୀନ ଭାରତରେ ସଚ୍ଚା ନାଗରିକ ।

"ସାର୍ ସାର୍ ଏବର୍ଷ ଗଣେଶ ପୂଜାରେ ଭୋଜି ହେବ ନା, ଗ୍ରାମଫୋନ୍ ଆସିବନା ?" ପଚାରୁଛି ଶ୍ରେଣୀର ମନିଟର ମେଧାବୀ ଛାତ୍ର ତପନ । ଲକ୍ଷ୍ମଣବାବୁ ଅଭୟବାଣୀ ଦେଇ କହିଲେ "ନିଶ୍ଚୟ ସବୁ ହେବ । ଯାକଯମକରେ ହେବ । କିନ୍ତୁ ତୁମେ ଏବର୍ଷ ମାଇନର ବୃତ୍ତି ପାଇବାକୁ ଯିମିତି ନଭୁଲ । ମଉଜ ମଜଲିସରେ ସମୟ ନଷ୍ଟ କରିବ ନାହିଁ" । "ନା ସାର୍" ଉତ୍ତର ଦେଇ ତପନ ଚାଲିଗଲା ଛାତ୍ରାବାସକୁ ।

କିଛିଦିନ ପରେ ଗଣେଶପୂଜା ପିଲାଙ୍କ ଉତ୍ସାହ ଉଦ୍ଦୀପନାର ସୀମା ନାହିଁ । ଘଟ ବୁଡାଯିବ । ଝାଞ୍ଜ କର୍ତ୍ତାଳ ଢୋଲ ମୃଦଙ୍ଗ ଘଣ୍ଟାରେ କମ୍ପି ଉଠୁଛି ଇସ୍କୁଲର ଚାରିପାଖ । ତେବେ ଘଟ ବୁଡାଯିବ କେଉଁଠି । ନିକଟସ୍ଥ ବଡପୋଖରୀ, ଯେଉଁଠି ଦେବଦେବୀ ଅର୍ଚ୍ଚନା ବେଳେ ସର୍ବଦା ଘଟ ବୁଡାଯାଏ, ସେଠାକୁ ଘଣ୍ଟା ବଜାଇ ଯିବାକୁ ଏ ବର୍ଷ ନିଷେଧ ଆଜ୍ଞା ଜାରି କରାଯାଇଛି । ୧୩୦ ଧାରା ଜାରି, ଗ୍ରାମ୍ୟ କଳହର ପରିଣତି । ତେବେ ସ୍କୁଲପିଲା ତ ସମସ୍ତଙ୍କର, ସେମାନଙ୍କ ପ୍ରତି କାହିଁକି ଏହା ପ୍ରଯୁଜ୍ୟ ହେବ ?-ସାହସୀ-ଯୁକ୍ତିବାଦୀ ଶିକ୍ଷକ ଲକ୍ଷ୍ମଣବାବୁଙ୍କ ଅଭିମତ । ପିଲାଙ୍କୁ ମତାଇ ଘଣ୍ଟା ବଜାଇ ୧୩୦ ଧାରା ଅମାନ୍ୟ କରି, ପୋଖରୀରେ ଘଟ ବୁଡାଗଲା । କେସ୍ ରୁଜୁ ହେଲା । ସେକ୍ରେଟାରୀ ହେଡମାଷ୍ଟର ଶିକ୍ଷକଙ୍କ ବିରୁଦ୍ଧରେ । ବାଲେଶ୍ୱର କୋର୍ଟରେ ବିଚାର, ଶିକ୍ଷାନୁଷ୍ଠାନର ଉତ୍ସବ । ଆଇନକୁ ସମ୍ମାନ ଦେଖାଇ ମାତ୍ର ଏକ ଟଙ୍କା ଜୋରିମାନା । ସ୍କୁଲ ପରିଚାଳନା ସମିତି ହୋଇଥିଲା କ୍ଷୁବ୍ଧ । ମାତ୍ର ପିଲାଏ ହୋଇଥିଲେ ଅତ୍ୟନ୍ତ ଆନନ୍ଦିତ ।

ଲକ୍ଷ୍ମଣବାବୁ କେବଳ ଜଣେ ଶିକ୍ଷକ ନଥିଲେ । ତାଙ୍କ ପ୍ରାଣରେ ଭରି ରହିଥିଲା ସମାଜ ସଂସ୍କାର ଓ ପୁନର୍ବିନ୍ୟାସର ସ୍ପୃହା । ସମୂହର ସ୍ୱାର୍ଥ ପାଇଁ ସେ ସ୍ୱର ଉତ୍ତୋଳନ କରୁଥିଲେ ନିର୍ଭୟରେ ।

ଖନ୍ତାପଡା ଗାଁରେ ପଞ୍ଚାନନ ଖାଁଙ୍କର ଧାନକଳ, ବିଶାଳ କାରଖାନା । କାରଖାନାର ଧାନଉଁଷା ଦୂଷିତ ପାଣି ବହିଯାଏ ସଡକ ପାଖ ଦେଇ । ଏକ ପଟେ ସ୍କୁଲ, ଅନ୍ୟପଟେ ଖନ୍ତାପଡା ଗାଆଁ । ଚଲାପଥର ବାଟୋଇ, ଗାଁଲୋକେ ଓ ସ୍କୁଲ ପିଲାଏ ଦୂଷିତ ଜଳ ମାଡି ଚାଲନ୍ତି । ବାୟୁମଣ୍ଡଳ ହୁଏ ଦୂଷିତ । ମିଲ ମାଲିକ, ଧନୀ ପ୍ରଭାବଶାଳୀ ପଞ୍ଚାନନ ଖାଁ ବିରୁଦ୍ଧରେ କେହି ସ୍ୱର ଉଠାନ୍ତି ନାହିଁ । ନିର୍ଭୀକ ଲକ୍ଷ୍ମଣ ବାବୁ ପରିସ୍ଥିତିକୁ ବରଦାସ୍ତ କରି ପାରିଲେ ନାହିଁ । ସର୍ବସାଧାରଣ ସ୍ୱାର୍ଥ ବ୍ୟାହତ ହେଉଛି ଦର୍ଶାଇ ଦରଖାସ୍ତ କଲେ ବାଲେଶ୍ୱର କଲେକ୍ଟରଙ୍କୁ । କାରଖାନାର ମଇଳାପାଣିର ପ୍ରତିକାର ପାଇଁ । କଲେକ୍ଟର ଆର୍. ସି. ଦାସ ଜଣେ ବିଚାରଶୀଳ ଉଦାର ବ୍ୟକ୍ତିତ୍ୱ । ସର୍ବସାଧାରଣ ଅଭିଯୋଗ ପ୍ରତି ଦିଅନ୍ତି ଗୁରୁତ୍ୱ । ଲକ୍ଷ୍ମଣବାବୁଙ୍କ ଅଭିଯୋଗ ପତ୍ର ପାଇ ନିଜେ ଆସିଲେ ସରଜମିନ୍ କରି ପ୍ରକୃତ ଘଟଣା ଜାଣିବାକୁ । କଳର ମଇଳା ପାଣି ସଡକ ଦୁଇ ପାଖେ ବହିଯାଉ ଥିବା ସ୍ୱଚକ୍ଷୁରେ ଦେଖି ଲୋକଙ୍କ ବାସ୍ତବ ଅସୁବିଧା ଉପଲବ୍ଧି କଲେ ଏବଂ ନିର୍ଦ୍ଦେଶ ଦେଲେ କଳ ପାଣି ଗଡେଇ ନେବା ପାଇଁ ଖୋଳାଯିବ ନୟନଯୋଡି ପାଖ ଏବଂ ଏହାକୁ ଏକ ପକ୍କା କେନାଲରେ ପରିଣତ କରାଯିବ ଏବଂ ଏହି କେନାଲ ଦେଇ ପାଣି ଯାଇ ପୂର୍ବପଟ ଖନ୍ତାପଡା ଗାଁଆ ବିଲରେ ପଡିବ ।

ରାତି ଦଶଟା, କଲେକ୍ଟରଙ୍କ ସଙ୍ଗରେ ଲକ୍ଷ୍ମଣବାବୁ ରାସ୍ତା କଡ ନାଳ ଦେଖି ଫେରୁଥାନ୍ତି । କଲେକ୍ଟର ସାହେବ ପଚାରିଲେ "ତୁମେ କ'ଣ କରୁଛ ? କାହା ପୁଅ ?" ଲକ୍ଷ୍ମଣବାବୁ ଉତ୍ତର ଦେଲେ 'ମୁଁ ଜଣେ ଗରିବ ଚାଷୀର ପୁଅ, ମେଟ୍ରିକ ଟ୍ରେନିଂ ପାଶ କରି ଗାଁ ସ୍କୁଲରେ ଅଛି । ଅନ୍ୟ ଭରସା କିଛି ନାହିଁ ।' 'ତୁମେ କ'ଣ କରିବାକୁ ଚାହୁଁଛ ?' ଦରଦୀ କଣ୍ଠରେ ପଚାରିଲେ କଲେକ୍ଟର ସାହେବ । "କଚେରୀରେ କିରାଣୀ ଚାକିରିଟିଏ ପାଇଲେ ଖୁସି ହୁଅନ୍ତି" ବାସ୍ତବ ଦୃଷ୍ଟିକୋଣରୁ ବିଚାର କରି ଉତ୍ତର ଦେଇଥିଲେ ଲକ୍ଷ୍ମଣବାବୁ । ତରୁଣ ଲକ୍ଷ୍ମଣଙ୍କ ନିର୍ଭୀକତା ଓ ପ୍ରଗତିଶୀଳ ମନୋଭାବରେ ବୋଧହୁଏ ପ୍ରୀତ ହୋଇଥିଲେ କଲେକ୍ଟର ସାହେବ । ଏପରି ଜଣେ ଯୋଗ୍ୟ ଯୁବକ କିରାଣୀ ଚାକିରି କରିବା ହୁଏତ ସେ ପସନ୍ଦ କଲେ ନାହିଁ । ଅବକାରୀ ବିଭାଗର ଇନ୍‌ସ୍ପେକ୍ଟର ଚାକିରି ପାଇଁ ତାଙ୍କ ନାମ ସୁପାରିଶ କରିଦେଲେ ପାଟନା ଏକ୍‌ସାଇଜ କମିସନରଙ୍କ ନିକଟକୁ । କିନ୍ତୁ ଦୁର୍ଭାଗ୍ୟବଶତଃ ଲକ୍ଷ୍ମଣବାବୁଙ୍କୁ ଏ ଚାକିରି ମିଳି ନଥିଲା ।

## (ପାଞ୍ଚ)

'ନିୟତି ଯେ ଲିପି ଲେଖିଛି ଲଲାଟେ
ଅଙ୍ଗୁଳି ଧୀରେ ଚାଳି
ଆନକେ କରିବ ତହୁଁ ଏକ ପଦ
ନୟନ ଅଶ୍ରୁ ଢାଳି'

୧୯୩୪ ମସିହା ମାର୍ଗଶୀର କାକରପଡା ସନ୍ଧ୍ୟା, ଈଷତ ଶୀତ ଆକାଶରେ ଫୋପା ଜହ୍ନ, ନିର୍ଜନ ବୋର୍ଡିଂ ଘରୁ ଲକ୍ଷ୍ମଣବାବୁ ଚାଲିଲେ ଖନ୍ତାପଡା ଷ୍ଟେସନକୁ । ଜହ୍ନରାତିର ଆମୋଦିତ ପରିବେଶ, ନିଃସଙ୍ଗ ପଥିକ, ମନରେ ଦାର୍ଶନିକର ଉଦାସିଆ ଉଦାସିଆ ଭାବ । ସାଙ୍ଗସାଥୀ ପରିଚିତ ଲୋକଙ୍କ ଦର୍ଶନରେ କାଳେ ମନ ସତେଜ ହୋଇଯିବ, ନୂତନତାହୀନ ଜୀବନରେ ସାମାନ୍ୟ ଚଞ୍ଚଳତା ଆସିବ । ଛୋଟ ବି.ଏନ୍.ଆର୍. ଷ୍ଟେସନଟିଏ ପାସେଞ୍ଜର ଗାଡି ଆସିବା ଡେରି ଅଛି । ପ୍ଲାଟଫର୍ମରେ ବସିଛନ୍ତି ଜଣେ ସୋରବାସୀ ଜମାଦାର ।

ରେଳଷ୍ଟେସନର ସର୍ବନିମ୍ନ ଚତୁର୍ଥ ଶ୍ରେଣୀ କର୍ମଚାରୀ ପଏଣ୍ଟମ୍ୟାନ ଜମାଦାର ଲକ୍ଷ୍ମଣବାବୁଙ୍କ ପରିଚିତ । "ଏବେ କ'ଣ କରୁଛ" ପଚାରିଲା ପଏଣ୍ଟମ୍ୟାନଟି । ଉତ୍ତର "ଇସ୍କୁଲ ମାଷ୍ଟର" । ପଏଣ୍ଟମ୍ୟାନଟି ପଚାରିଲା "ସୋର ଷ୍ଟେସନର ବଡମାଷ୍ଟର ପୁଅ ଓ ପୁତୁରା ଆଜି ରେଳ ଟ୍ରେନିଂ ପାଇଁ ଦରଖାସ୍ତ କଲେ, ଆପଣ କଲେ ନାହିଁ ?" ଦରଖାସ୍ତ କରିବାର ଶେଷ ତାରିଖ ଆଉ ଗୋଟିଏ ଦିନ ମାତ୍ର ଥାଏ ।

ଲକ୍ଷ୍ମଣବାବୁ ଖନ୍ତାପଡା ଷ୍ଟେସନ ମାଷ୍ଟରଙ୍କୁ ଦେଖାକଲେ । ମାଗିଲେ ରେଳଗେଜେଟ, ଚାକିରି ବିଷୟରେ ସଠିକ୍ ବିବରଣୀ ଜାଣିବାକୁ । ଷ୍ଟେସନରେ ଥିଲେ ସାନବାବୁ । କହିଲେ, 'ଗେଜେଟ ରହିଥିବା ଆଲମାରି ଚାବି ବଡବାବୁଙ୍କ ପାଖରେ । ବଡବାବୁ ଅଛନ୍ତି ବସାରେ । ବଡବାବୁଙ୍କୁ ବସାରେ ଭେଟି ଟ୍ରେନିଂ ବୃତ୍ତାନ୍ତ କହିବାରୁ ସେ ଉଦାର ଚିତ୍ତରେ ଆଲମାରି ଚାବିଟି ଲକ୍ଷ୍ମଣବାବୁଙ୍କ ହାତକୁ ବଢାଇ ଦେଲେ । ଆଲମାରିରୁ ରେଳ ଗେଜେଟ ବାହାର କରାଗଲା । ଟେଲିଗ୍ରାଫ ଟ୍ରେନିଂ ପାଇଁ ଦରଖାସ୍ତ ପହଞ୍ଚିବାର ଶେଷ ତାରିଖ ଆସନ୍ତା କାଲି । ମନରେ ସନ୍ଦେହ ଅନିଶ୍ଚିତତା, ଦରଖାସ୍ତ ଖଡଗପୁର ଅଫିସରେ କାଲିସୁଦ୍ଧା ପହଞ୍ଚାଇ ହେବ କି ? ତଥାପି ଈଶ୍ୱରଙ୍କ ଉପରେ ଭରସା ରଖି ଉଦ୍ୟମ କରି ଚାଲିଲେ ଲକ୍ଷ୍ମଣବାବୁ । ଚାକିରି ମିଳିବାର ସମ୍ଭାବନା ଉଜ୍ଜ୍ୱଳ ହେବ ଭାବି ଲକ୍ଷ୍ମଣବାବୁ ମିଥ୍ୟାର ଆଶ୍ରୟ ନେଇଥିଲେ । ଖନ୍ତାପଡା ଷ୍ଟେସନରେ ପଏଣ୍ଟମ୍ୟାନଥିବା ଅପୁତ୍ରିକ ତାଙ୍କର ବଡବାପାଙ୍କୁ ସେ ନିଜର ବାପା ବୋଲି ଦରଖାସ୍ତରେ ଉଲ୍ଲେଖ କରିଦେଲେ ।

ଦରଖାସ୍ତଟି ଖନ୍ତାପଡା ଷ୍ଟେସନମାଷ୍ଟରଙ୍କ ସୁପାରିଶରେ ପଠାଯିବ । ଷ୍ଟେସନମାଷ୍ଟର ବଡବାପାଙ୍କୁ ଡକାଇ ପଚାରିଲେ "ଲକ୍ଷ୍ମଣ ତୁମର ପୁଅ ବୋଲି ପରିଚୟ ଦେଇ ବି.ଏନ୍.ଆର୍.କୁ ଚାକିରି ପାଇଁ

ଦରଖାସ୍ତ କରିଛି । ତୁମର ଆପତ୍ତି ଅଛି କି ?'' ବଡବାପାଙ୍କ ହୃଦୟରେ ଅପତ୍ୟ ସ୍ନେହର ଫଲ୍‌ଗୁ ଖେଳିଗଲା । ଭାରତୀୟ ଏକାନ୍ନବର୍ତ୍ତୀ ପରିବାରର ମମତାମୟ ଆଦର୍ଶ ତାଙ୍କୁ ଆଲୋଡ଼ିତ କଲା । କିଏ ବାପା, କିଏ ବଡବାପା ? ନିବିଡ ସ୍ନେହ ସମ୍ପର୍କ ତ ସାର କଥା । ଜଣେ ଗୁଣବାନ ଯୁବକର ସୁନେଲି ଭବିଷ୍ୟତ ଝଲକି ଉଠିଲା ତାଙ୍କ ଆଗରେ । ଅକୁଣ୍ଠ ଚିତ୍ତରେ ସମ୍ମତି ଦେଲେ ବଡବାପା । ଦରଖାସ୍ତ ପହଞ୍ଚାଇବାର ଶେଷ ତାରିଖର ପରଦିନ ଲକ୍ଷ୍ମଣଙ୍କ ଦରଖାସ୍ତ ପହଞ୍ଚିଲା ଖଡଗପୁର ଉଚକର୍ତ୍ତାଙ୍କ ଅଫିସରେ । ମଧ୍ୟସ୍ତରୀୟ ଅଫିସରଟି ଦରଖାସ୍ତ ବିଳମ୍ବରେ ପହଞ୍ଚିବା ସୂଚାଇ ନାସ୍ତିସୂଚକ ମନ୍ତବ୍ୟ ଦେଇଥିଲେ । ମାତ୍ର ସର୍ବୋଚ୍ଚ କର୍ତ୍ତା ଲକ୍ଷ୍ମଣବାବୁଙ୍କ ମେଧା ଓ ଖଡାପଡା ଷ୍ଟେସନମାଷ୍ଟରଙ୍କ ଦୃଢ ସୁପାରିଶ ବିଚାର କରି ଦରଖାସ୍ତ ଗ୍ରହଣ କରିଥିଲେ । ଲିଖିତ ପରୀକ୍ଷା ଓ ସାକ୍ଷାତ୍କାରରେ ଲକ୍ଷ୍ମଣବାବୁ କୃତକାର୍ଯ୍ୟ ହୋଇ ଚାକିରି ତାଲିମ ନେଲେ ଏବଂ ତାଲିମପରେ ଚାକିରିରେ ବାହାଲ ହେଲେ । ଇସ୍କୁଲ ମାଷ୍ଟରରୁ ଷ୍ଟେସନ ମାଷ୍ଟର । ପିଲାଙ୍କୁ ଶିକ୍ଷା ଦେବାରୁ ରେଳଗାଡିକୁ ନିର୍ଦ୍ଦେଶ । ଚପଳମତିଙ୍କ ଠାରୁ 'ଗତି'କୁ ଦୃଷ୍ଟି ଅପସାରଣ ।

(ଛଅ)

'ନିତମ୍ବବତୀ ରୂପଠାରୁ ବଳି ନାହିଁ କିଛି ଆଉ
ହୃଦ ହରଣ
ଜଗତରେ ପୁଣି ନାହିଁ କାହିଁ ତହୁଁ
କ୍ଲେଶ କାରଣ'
(ଭର୍ତ୍ତୃହରି)

ଟେଲିଗ୍ରାଫ ଟ୍ରେନିଂ ସମାପ୍ତ । କୃତିତ୍ୱର ସହ ପାଶ କରିଛନ୍ତି ଲକ୍ଷ୍ମଣବାବୁ । ଅପେକ୍ଷା ଚାକିରିକୁ । ଅଳ୍ପଦିନ ପରେ ଆସିଗଲା ନିଯୁକ୍ତି ପତ୍ର । ସାଲିମାର ରେଳ ଷ୍ଟେସନର ସିଗନାଲର । କାମ ଟେଲିଗ୍ରାଫ କରିବା । ସାଲିମାର ଷ୍ଟେସନଟି ହାଓଡା ଷ୍ଟେସନଠାରୁ ସାତ ମାଇଲ ଦୂରରେ । ସମଗ୍ର ବି.ଏନ୍.ଆର୍.ର ମାଲଗାଡିର ଶେଷମଥା ସାଲିମାର । ମାଡ୍ରାଜ, ବମ୍ବେ, ଦିଲ୍ଲୀ ଇତ୍ୟାଦି ବିଭିନ୍ନ ସହରରୁ କଲିକତାକୁ ଆସୁଥିବା ସମସ୍ତ ମାଲଗାଡିର ଶେଷ ଆଶ୍ରୟସ୍ଥଳ ହେଉଛି ସାଲିମାର । ତେଣୁ ଷ୍ଟେସନଟି ଗୁରୁତ୍ୱପୂର୍ଣ୍ଣ । ଏମିତି ଲକ୍ଷ୍ମଣବାବୁଙ୍କ ରେଳଚାକିରି ଆରମ୍ଭ । ଖଣ୍ଡେ ସାର୍ଟ ଖଣ୍ଡେ ଧୋତିରେ ଚାକିରି ଆରମ୍ଭ । ପାଦରେ ନଥାଏ ଯୋତା ବା ଚପଲ । ମାସକ ପରେ ମିଳେ ଦରମା । ଦରମାଟି ପାଇ କେତେ ଯେ ସେ ଆନନ୍ଦିତ କହି ହେବନି । ଦରମା ମିଳିଲା ପରେ ଚାଲିଚାଲି ତିନି ମାଇଲ ଯାଇ ହାଓଡା ପୋଲରୁ ଛଅଣା ପଇସା ଦେଇ ହଳେ ଚପଲ କିଣିଲେ ଲକ୍ଷ୍ମଣବାବୁ । ହାୟରେ ଦୁର୍ଭାଗ୍ୟ ! ଚପଲ ମାଡିଆସୁ ଆସୁ ଲାଗିଗଲା ଗୋବର କି କ'ଣ । ରାତିରେ ଧୋଇଦେଲେ ଚପଲ ହଳକୁ । ତହିଁ ଆରଦିନ ଦେଖିଲାବେଳକୁ ଚପଲରେ ଦିଆଯାଇଥିବା ମୋଟା କାଗଜ ପାଣିରେ ଭିଜି ଯାଇଛି । ମନରେ ବହୁତ ଦୁଃଖ । ନୂଆ ଜିନିଷଟେ ମନଭରି ଉପଭୋଗ କରିହେଲା ନାହିଁ । ''ଛାର ଭାଗ୍ୟ ଯାର ନିହିତ ପାଷାଣେ'' । ଆନନ୍ଦ ସଙ୍ଗେ

ନିରାନନ୍ଦ, ହସ ସଙ୍ଗେ କାନ୍ଦ ମିଶି ରହିଛି ମଣିଷ ଭାଗ୍ୟରେ । ଉଲ୍ଲାସ ଓ ମନସ୍ତାପ ନେଇ ବଞ୍ଚିବାକୁ ହେବ । କର୍ମ-ଜୀବନ ଆରମ୍ଭରୁ ପ୍ରସ୍ତୁତ ହୋଇ ଯାଉଥିଲେ ଲକ୍ଷ୍ମଣବାବୁ ।

- - -

'ସ୍ମୃତି ତ କଦାପି ନୁହେଁ ଭୁଲିବାର'- ଗୁଣୁଗୁଣୁ ହୋଇ ଗାଉଥିଲେ ନିରୋଳା ସନ୍ଧ୍ୟାରେ ସାଲିମାର ବସାରେ ଶୋଇ ଶୋଇ ଅଫିସ ଫେରନ୍ତା ଲକ୍ଷ୍ମଣବାବୁ । ଏକୁଟିଆ ରହିଲେ ପ୍ରିୟ ପରିଜନ ସାଙ୍ଗସାଥୀଙ୍କ କଥା ବେଶୀ ମନେ ପଡେ । ହଜିଲା ଦିନର ମଧୁର ସ୍ମୃତି ଆଚ୍ଛନ୍ନ କରି ରଖେ । କାମଚୁଣୀଟି ବାସନକୁସନ ମାଜି ଘର ଓଳେଇ ଚାଲିଯାଇଛି । ଲକ୍ଷ୍ମଣବାବୁଙ୍କୁ ନିଜ ହାତରେ ରୋଷେଇ କରିବାକୁ ପଡିବ ରାତ୍ରିଭୋଜନ ପାଇଁ । ଜଣେ ତରୁଣ ପକ୍ଷେ ଏ ସବୁକାମ ଅସ୍ୱାଭାବିକ, କଷ୍ଟଦାୟକ । ରୋଷେଇ କଥା ଭାବିଲେ ମନେ ପଡିଯାଏ ମାଆ, ଭାଉଜ ଭଉଣୀମାନଙ୍କ କଥା । ପୁରୁଷର ଗତିଶୀଳ ବୁଲା ଜୀବନରେ ସେମାନେ ତ ସର୍ବଦା ସହଚର ହୋଇ ପାରିବେ ନାହିଁ । କିଏ ଦେବ ସାହଚର୍ଯ୍ୟ ? ନିଃସଙ୍ଗ ଜୀବନରେ ସାଥୀର ମମତା, କର୍ମକ୍ଳାନ୍ତ ଜୀବନରେ ସ୍ନେହସେବାର ଯାଦୁକରୀ ଉପଶମ ! ଭାବୁଭାବୁ ମନ ଧାଇଁଯାଏ କାହିଁ କେଉଁଠୁର । ଦୂର ହୋଇଆସେ ନିକଟ, ଅସ୍ପଷ୍ଟ ହୁଏ ସ୍ପଷ୍ଟ । କ୍ଷଣିକର ଝଲକ ଦେହ ମନକୁ କରିଦିଏ ଆଲୋକାଚ୍ଛନ୍ନ, ମୁଗ୍ଧ ।

କିଏ ସେ ନଉଲି ବୟସୀ, ଅଚିହ୍ନା ଅଜଣା । ଦାରିଦ୍ର୍ୟ ପ୍ରପୀଡିତ ପରିବାରର ଅଭାଗିନୀ କନ୍ୟା । ଦୂର ଭଦ୍ରକର ଅଖ୍ୟାତ ପଲ୍ଲୀରୁ ଆସି ରହିଛି କଲିକତା ମହାନଗରୀର କୁଖ୍ୟାତ ବେଶ୍ୟାଳୟଙ୍କ ପାଠଗଳୀ ହାଡକଟାଗଳିରେ । କେତେଦିନର ମାତ୍ର ଆଖି ଫେରାଫେରି । ଟେଲିଗ୍ରାଫ ପରୀକ୍ଷା ଦେବାକୁ କଲିକତା ଯାଇଥିଲାବେଳେ ଲକ୍ଷ୍ମଣବାବୁ ରହିଥିଲେ ଜଣେ ସହପାଠୀର ବାପାଙ୍କ ବସାରେ । ସେ ରହିଥିବା କୋଠାର ଅପର ପାର୍ଶ୍ୱର ଉପରତାଲାରେ ରହୁଥିଲେ ବେଶ୍ୟାମାନେ । ସବୁ ଓଡିଆ, ଭଦ୍ରଖବାସୀ । ପନ୍ଦର ଷୋଳ ବର୍ଷୀୟା ଗୋଟିଏ ସୁନ୍ଦରୀ ବାଳିକା ଉପରେ ଦିନେ ଅଚାନକ ଆଖି ପଡିଗଲା ଲକ୍ଷ୍ମଣବାବୁଙ୍କର । ତାଙ୍କର ଦୁଷ୍ଟ ତରୁଣ ମନକୁ ମୋହାବିଷ୍ଟ କଲା କୋମଳାଙ୍ଗୀର ନିରୀହ ଅଥଚ ଚଞ୍ଚଳ ହରିଣର ଆଖି ଦିଟା । ପ୍ରତ୍ୟେକ ଦିନ ସନ୍ଧ୍ୟା ନଅଟାରେ ଫେରିଲାବେଳେ କିଶୋରୀଟି ଠିଆହୋଇଥାଏ ଘରର ମୁଖ୍ୟ ଦରଜା ପାଖରେ । ଲକ୍ଷ୍ମଣବାବୁଙ୍କୁ ଦେଖି ଫିସ କରି ହସିଦିଏ । ଚହଲିଯାନ୍ତି ଲକ୍ଷ୍ମଣବାବୁ । ଦେହରେ ଅପୂର୍ବ ଶିହରଣ । ମନରେ ଅଜବ ଚିନ୍ତା । "କିଶୋରୀଟି କ'ଣ ତାଙ୍କ ପାଇଁ ଅପେକ୍ଷମାଣା ?" ପଚାରି ପାରନ୍ତି ନାହିଁ । ଶିକ୍ଷାର ଆଭିଜାତ୍ୟ ତାଙ୍କର କଣ୍ଠରୁଦ୍ଧ କରିଦିଏ ।

ଆଜି ସେହି କେଇ ଦିନର ମଧୁର ସ୍ମୃତି ପ୍ରାଣରେ ସଞ୍ଚାରି ଦେଇଛି ଉଦ୍ଦାମ ଉଲ୍ଲାସ, ବ୍ୟସ୍ତତାର ଚାଟି । ଅଧୀର ମନକୁ ଶାନ୍ତ କରିବା ପାଇଁ ବଂଶୀରେ ଦେଲେ ସ୍ୱର -

"ରସିକାମଣି ସେ ନାୟିକା ଫୁଲେଇ ତିଳଫୁଲେ
କଲା ଧିକାର

ବିରହ ଆନନ୍ଦ ପ୍ରଜ୍ଜ୍ୱଳ ହେବାକୁ
ଯନ୍ତ୍ରଣାର ଦେଲା ପ୍ରଖର
କୁଟିଳ, କୁନ୍ତଳ କିଶୋଭା ଦିଶୁଛି ...''
କଳିକା ମଲ୍ଲିକା ମାଳିକା କବରୀ
ଘନ ଶର୍ବରୀକି ହସୁଛି ''

ସଙ୍ଗୀତପ୍ରିୟ ଅଭ୍ୟସ୍ତ ବଂଶୀବାଦକ ଲକ୍ଷ୍ମଣବାବୁ କେତେ ସମୟଧରି ସ୍ୱପ୍ନବିଭୋର ଚିତ୍ତରେ ବଂଶୀ ବଜେଇ ଚାଲିଛନ୍ତି । ପାର୍ଶ୍ୱସ୍ଥ ରେଳ ଷ୍ଟେସନର ସମୟ ଘଣ୍ଟିରେ ନଅଟା ବାଜିଲା । ଆତ୍ମସ୍ଥ ହେଲେ ସେ । ରାତ୍ରିଭୋଜନର ବ୍ୟବସ୍ଥା କରିବାକୁ ହେବ, ସକାଳ ପାଞ୍ଚଟାରେ କାଲି ଡିଉଟି । ତାପର ଦିନ ରବିବାର । ମନେମନେ ସ୍ଥିର କରିନେଲେ ସେହି ଝିଅଟିର ସନ୍ଧାନ ନେବେ ଛୁଟିଦିନ, ରବିବାର ।

- - -

ରବିବାରର ସକାଳ । ପ୍ରଭାତର କାକଳି ସତେ ଯେମିତି ଦେଇଯାଉଥାଏ ନୂତନ ବାର୍ତ୍ତା, କାହାର ମଧୁର ଆବେଦନ । ଲକ୍ଷ୍ମଣବାବୁଙ୍କ ମନ ଉଚ୍ଛନ, ଅନବଦ୍ୟ ଉତ୍ସୁକତାରେ ଆଲୋଡିତ । ଚଞ୍ଚଳ ରନ୍ଧାବଢା କରି କଲିକତା ଯିବାପାଇଁ ପ୍ରସ୍ତୁତ ହୋଇଗଲେ । ଆରିସିରେ ଦେଖିନେଲେ ନିଜ ମୁହଁକୁ । ଗଜୁରି ଉଠୁଥିବା କଅଁଳା ନିଶ ଅଙ୍କୁରିତ ତାରୁଣ୍ୟର ନିଶାନ । ଗୌରବର୍ଣ୍ଣ ଚିକ୍କଣ ମୁହଁରେ ଢାବର ତଡାଗ କୂଳରେ କୁଞ୍ଜଲତା ଭଳି ଶୋଭା ପାଉଥାଏ । ଆଖିରେ ଆଖିଏ ସ୍ୱପ୍ନ ନାଚିଯାଉଥାଏ । ଲଜ୍ଜାମିଶା ଆନନ୍ଦରେ । ଇସ୍ତ୍ରୀକରା ସ୍ୱଚ୍ଛିକଧଳା ସାର୍ଟ ପେଣ୍ଟଟି ବେଶ୍ ମାନୁଥାଏ । ଆଭାସ ଦେଉଥାଏ ସ୍ମାର୍ଟ ନିର୍ଭୀକ ନିଷ୍କଳଙ୍କ ତାରୁଣ୍ୟର ।

ଏକୁଟିଆ ଗଙ୍ଗାନଦୀରେ ଲଞ୍ଚପାର ହୋଇ ପହଞ୍ଚିଲେ କଲିକତାରେ । କଲିକତାସ୍ଥ ଲଞ୍ଚ ଘାଟଠାରୁ ହାଡକଟା ଲେନ୍, ସେହି ଝିଅର ବାସସ୍ଥାନ, ତିନି ମାଇଲ ଦୂର । ସନ୍ଧ୍ୟା ଆଗମ ହେଲେ ପରୀରାଇଜର ପରୀମାନେ ମନ୍ଦିରର ମୁଖଶାଳାରେ ବାସକ ସଜ୍ଜାବେଶରେ ଠିଆ ହୋଇଯିବେ । ସେତେବେଳେ ସହଜରେ ଦେଖାମିଳିବ ସେହି ନବନୀତାକୁ । ସମୟ ଯଥେଷ୍ଟ ହାତରେ । ସହରର ବିପଣୀ ଦେଖି ଦେଖି ଧୀର ପାଦରେ ଚାଲିଲେ ଲକ୍ଷ୍ମଣବାବୁ । ଦେଖାହେଲେ କ'ଣ କହିବେ ତାକୁ । ଦେଖା ନହେଲେ କାହାକୁ ପଚାରିବେ ତା କଥା । ନାଁ ତ ଚାର ଜାଣିନାହାନ୍ତି । ରୂପଟି ସିନା ଛାପି ହୋଇରହିଛି ମନରେ । ନାଚି ଯାଉଥିବା ଆଖି ଫିସ୍ କରି ହସିଦେଉଥିବା ସ୍ଫୁରିତ ଅଧର ଲାଜରଙ୍ଗା ମୁହଁଟି ମନଦର୍ପଣରେ ପ୍ରତିବିମ୍ବିତ । ଏହି ଛବିଟିକୁ କ'ଣ ଅନ୍ୟ ଆଗରେ ଠିକ୍ ରୂପେ ଥୋଇ ପାରିବେ ? ମନରେ ସଂଭ୍ରମ, ଶିକ୍ଷିତ ଯୁବକ, କର୍ମଚାରୀ, ଦୋଖାଯାଉଛନ୍ତି ଜଣେ ବଙ୍ଗାଳି ବାବୁ ଭଳି । କିମିତି ସେ କୁଖ୍ୟାତ ଗଳିରେ ସଂଧାନ ନେବେ ମାନସୀର ? ଭାବନାରେ ମନ ଆଚ୍ଛନ୍ନ । ସହରୀ ଜୀବନ ଚଞ୍ଚଳ । ଚାଲିଛି ଟ୍ରାମ୍, ମଟର, ରିକ୍ସା, ସାଇକଲ ନିଜ ନିଜ ଗନ୍ତବ୍ୟ ପଥରେ ସମସ୍ତେ ଧାଇଁଛନ୍ତି । ବଉବଜାର ଆସିଗଲାଣି । ପାଖରେ ହାଡକଟା ଗଳି । ଗଳିମୋଡରେ ପହଞ୍ଚିବା କ୍ଷଣି ପାଦ ତାଙ୍କର ସ୍ଥିର

ହୋଇଗଲା । କିଏ ଭାବିବକି 'ନଷ୍ଟ ଚରିତ୍ର ଯୁବକଟି କାହା ପାଖକୁ ଯାଉଛି ?' ମନର ଆବେଗତ ପ୍ରବଳ, ପ୍ରବଳ ଆବେଗ ଆଣି ଦେଲା ସାହସ, ବିକଳ୍ପ ଚିନ୍ତା "କଲିକତା ସହରରେ କିଏ କାହାକୁ ଚିହ୍ନୁଛି ? ଏ ମୋଡରେ ଯୋଚା ମାଡଖାଉ ଆଉ ମୋଡରେ ଫୁଲ୍‌ବାବୁ, କେହି କାହା କଥା ମନେ ରଖେନି । କିଏ ବା ମୋର ପରିଚିତ ଏଠାରେ ?" ମନରେ ସାହସ ବାନ୍ଧି ଗଳିଭିତରେ ଚାଲିଲେ ତାଙ୍କର ପୂର୍ବ ପରିଚିତ ଘରପାଖକୁ । କାହିଁ ସେ ବିଦଗ୍ଧ ଯୋଷା ? ପ୍ରିୟ ତା'ର ଫେରି ଆସିଛି ଶୁଣିବାକୁ ନୀରବିତ ସ୍ୱାଗତ ଗିତିକା, ପାଇବାକୁ ମୁଗ୍ଧ ଚାହାଣୀର ପ୍ରଲୁବ୍ଧ ଆମନ୍ତ୍ରଣ । ଗଳି ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଦୁଇଚାରିଥର ପରିକ୍ରମା କରିଗଲେ ଧୀର ପାଦରେ । ଅବଲୀଳାକ୍ରମେ, ସାବଧାନତା ସହକାରେ କଣେଇ କଣେଇ ଚାହୁଁଥାନ୍ତି ପରୀ ନିବାସର ପ୍ରତ୍ୟେକ ଦ୍ୱାରକୁ । ଦେହଳିରେ କେତେଯେ ଲାବଣ୍ୟ ମୂର୍ତ୍ତି, କେତେଯେ ରଙ୍ଗୀନ ଫୁଲ, କିନ୍ତୁ କାହିଁ ସେଇଛି ଧବଳ ଅନାଘ୍ରାତ ମଲ୍ଲିକା ? ପଚାରି ପାରନ୍ତି ନାହିଁ କାହାକୁ ତା ବିଷୟରେ । ଭାଗ୍ୟକୁ ନିନ୍ଦି ମନ ଦୁଃଖରେ ଫେରିଆସନ୍ତି ସାଲିମାର । ପରବର୍ତ୍ତୀ ରବିବାରକୁ ବ୍ୟାକୁଳ ଅପେକ୍ଷା ।

ସାଥୀହରା ବ୍ୟଥିତ ଅନୁସନ୍ଧାନୀର ଚକ୍ଷୁରେ ଖୋଜିବୁଲିଲେ କେତେ ରବିବାର ଲକ୍ଷ୍ମଣବାବୁ ସେହି ଶାନ୍ତମଧୁର ସରଳା ଝିଅଟିକୁ, ଯିଏ ଅଜାଣତରେ ତାଙ୍କ ହୃଦୟକୋଣରେ ମାଡିବସିଥିଲା ଏକ ସ୍ଥାନ । ଥରାଇ ଦେଉଥିଲା ତାଙ୍କ ଜୀବନବୀଣାର ସୂକ୍ଷ୍ମତନ୍ତ୍ରୀକୁ । ରଚି ଚାଲିଥିଲା ମିଳନର ଦୁର୍ବାର ପିପାସା ।

ଏକ ରବିବାର ଶୀତଳ ସନ୍ଧ୍ୟାରେ ହାଡକଟା ଲେନ୍‌ର ଦୁଇକଡର ଘର ଦ୍ୱାରକୁ ଚାହିଁ ଚାହିଁ ଯାଉଥିଲାବେଳେ, ହଠାତ୍ ଆଖି ପଡିଗଲା ଗୋଟିଏ ବାଳକ ଉପରେ । ଲକ୍ଷ୍ମଣବାବୁ ଟେଲିଗ୍ରାଫ ପରୀକ୍ଷା ଦେବାକୁ ଆସିଥିଲାବେଳେ ଯୋଉଁ ବସାରେ ରହୁଥିଲେ ବାଳକଟି ସେହି ବସାରେ ରହି ନିକଟସ୍ଥ ଚାହା ଦୋକାନରେ 'ବୟ' କାମ କରୁଥିଲା । ପାଖର ସବୁ ଘରକୁ, ସବୁ ବେଶ୍ୟାଳୟକୁ ଚାହା ନେଇ ଯାଏ । ସମସ୍ତଙ୍କ ସହ ପରିଚିତ, ଆବାଳ ବୃଦ୍ଧ ବନିତା ସମସ୍ତଙ୍କୁ ସେ ଚିହ୍ନେ । ବାଳକଟି ତାଙ୍କୁ ଚିହ୍ନିପାରି ଦୌଡି ଆସି ନମସ୍କାର କରି ପଚାରିଲା "ବାବୁ କୁଆଡେ ଆସିଥିଲେ ଏବେ କେଉଁଠି ଅଛନ୍ତି ?" ଲକ୍ଷ୍ମଣବାବୁ ପିଲାଟିକୁ ପଚାରିବାକୁ କୁଣ୍ଠାବୋଧ କଲେ ନାହିଁ । କହିଲେ "ଏହି ସାଲିମାର ଷ୍ଟେସନରେ ଅଛି ସେଇଠି ଚାକିରି, ପୁରୁଣା ପରିଚିତ ଲୋକଙ୍କୁ ଭେଟିବାକୁ ଆସିଥିଲି । ଏହି ଦିବର୍ଷ ଭିତରେ ସେମାନେ ସବୁ ବସା ବଦଳେଇ ଦେଲେଣି ବୋଧହୁଏ । କେହି ଚିହ୍ନା ଲୋକ ଦିଶୁ ନାହାନ୍ତି" । ବାଳକଟି ଉତ୍ତର ଦେଲା "ହଁ ବାବୁ ସେତେବେଳେକାର ଅନେକ ଲୋକ ବସା ଛାଡିଦେଲେଣି । ଆମ ଅଞ୍ଚଳର ଯେତେଲୋକ ଏଠାରେ ଥିଲେ ସେମାନଙ୍କ ଭିତରୁ ଅଧିକାଂଶ ଅନ୍ୟ ଆଡେ ଚାଲିଗଲେଣି" । ପିଲାଟିର ଘର ଭଦ୍ରଖରେ । କଥାର ଖିଅଧରି ଲକ୍ଷ୍ମଣବାବୁ ସହଜଭାବରେ ପଚାରିଲେ "ମୁଁ ଏଠାରେ ଥିଲା ବେଳେ ଭଦ୍ରଖରୁ ଯେଉଁ ଅଳ୍ପବୟସୀ ଝିଅଟି ଆସି ଆମ ବସା ସାମ୍ନେ କୋଠାଘରେ ରହୁଥିଲା ସେ ଅଛି, ନା କୁଆଡେ ପଳାଇଲାଣି ?" ବାଳକଟି ଉତ୍ସାହରସହ ଉତ୍ତର ଦେଲା "ବାବୁ ଶୁଣି ନାହାନ୍ତି ? ସେ ଝିଅଟି

ପାଇଁ କେତେ କାଣ୍ଡକାରଖାନା ହୋଇଗଲା । ଭଦ୍ରଖର ଜଣେ କୋଇଲା କଣ୍ଟ୍ରାକ୍ଟର ଆସି ସେ ଝିଅକୁ ନେଇ ଯିବାକୁ ଅଡି ବସିଲା । କୋଠାଘରର ଲିଜ୍ ମାଲିକ ତାକୁ ଛାଡିବାକୁ ନାରାଜ । ଝିଅଟି କିନ୍ତୁ ତା ସଙ୍ଗରେ ଚାଲିଯିବାକୁ ପ୍ରସ୍ତୁତ । ଅନେକ ଝଗଡାଝାଟି ପରେ କଣ୍ଟ୍ରାକ୍ଟରଟି ମାଲିକକୁ କିଛି ଟଙ୍କା ଦେଇ ଝିଅଟିକୁ ଏଠାରୁ ନେଇଗଲା'' । ସେ କୋଇଲା କଣ୍ଟ୍ରାକ୍ଟରଟି ଲକ୍ଷ୍ମଣବାବୁଙ୍କ ସାଙ୍ଗର ବାପାଙ୍କର (ଯାହା ବସାରେ ରହି ପରୀକ୍ଷା ଦେଉଥିଲେ) ପରିଚିତ । ତାଙ୍କ ପାଖକୁ ବେଳେବେଳେ ଆସୁଥିଲା । ଲକ୍ଷ୍ମଣବାବୁ କଣ୍ଟ୍ରାକ୍ଟରଟିକୁ ଭେଟିଥିଲେ ସେହି ବସାରେ । କଣ୍ଟ୍ରାକ୍ଟରଟିର କୋଇଲା ବ୍ୟବସାୟ ଥିଲା ଖିଦିରପୁରସ୍ଥ ବାବୁବଜାରରେ ।

ଝିଅଟିକୁ ଭେଟିବା ପାଇଁ ଲକ୍ଷ୍ମଣବାବୁ ବହୁବାର ଚାଲିଚାଲି ଖିଦିରିପୁର ବାବୁବଜାର ଯାଆନ୍ତି । ଦୋକାନ ଘରର ନମ୍ବର ସଠିକ୍ ଜଣାନଥାଏ । ଲୋକଟି ସହ ଭେଟ ନହୋଇ ଫେରିଆସନ୍ତି ନିରାଶ ମନରେ । ଦିନେ ସନ୍ଧାନ ମିଳିଲା ସେହି କଣ୍ଟ୍ରାକ୍ଟର ସର୍ଦ୍ଦାରର ବସା । ସର୍ଦ୍ଦାର ଥାଏ ବସାରେ । ସେ ଲକ୍ଷ୍ମଣବାବୁଙ୍କୁ ସେଠାରେ ଅଚାନକ ଦେଖି ବିସ୍ମିତ । ତେବେ ଭଦ୍ରଖ ଅଞ୍ଚଳର ଜଣେ ପାଠୁଆ ବାବୁ । ନିଜ ଅଞ୍ଚଳର ଲୋକଙ୍କୁ ଦେଖି ମନରେ ସ୍ୱାଭାବିକ ଆନନ୍ଦ । ଖୁବ୍ ଆଦରରେ ଅତିଥି ଚର୍ଚ୍ଚା କଲା । ଜଳଖିଆ ଖାଉଁ ଖାଉଁ ସର୍ଦ୍ଦାର ପଚାରିଲା ''କୁଆଡେ ଆସିଥିଲେ ବାବୁ, ଏଠାରେ କିଛି କାମ ଥିଲା କି'' ଲକ୍ଷ୍ମଣବାବୁ ଶଙ୍କିତ ଓ ସଙ୍କୁଚିତ ଚିତ୍ତରେ ଉତ୍ତର ଦେଲେ 'ନା ସେମିତି କିଛି କାମ ନଥିଲା, ଏକୁଟିଆ ତ, ରବିବାର ଛୁଟିଦିନ ସାଲିମାର ବସାଘରେ ବସି ବସି ବିରକ୍ତ ଲାଗେ । ଚିହ୍ନା ଜଣାଲୋକଙ୍କ ସହ ମିଳିଲେ ମନ ଖୁସିହୁଏ । ଆପଣଙ୍କୁ ଦେଖା କରିବାକୁ ଖୁସିରେ ଚାଲିଆସିଥିଲି'' ।

''ଖୁବ୍ ଭଲ ହେଲା, ଆମ ଅଞ୍ଚଳର ଆପଣ ଜଣେ ଶିକ୍ଷିତ ଯୁବକ, ପ୍ରବାସୀ ଓଡିଆଙ୍କର ଗର୍ବ । କେତେଜଣ ଓଡିଆ କଲିକତାରେ ବାବୁଚାକିରି କରୁଛନ୍ତି ? ଆପଣ ଏତେ ବାଟ ମୋର ଖୋଜଖବର ନେଇ ଆସିଛନ୍ତି । ମୁଁ ନିଜକୁ ଧନ୍ୟ ମଣୁଛି ।'' ଘରର ବାରଣ୍ଡାରେ ବସି ଦୁହେଁ କଥାବାର୍ତ୍ତା କରୁଥାନ୍ତି । ଜଳଖିଆ ଖାଇବା ଚାଲିଛି । ପାଖ ଘରଭିତରୁ ଭାସି ଆସୁଛି କାଚର ଝୁମ୍‌ଝୁମ୍ ନୂପୁରର ରୁଣଝୁଣ୍ ଶବ୍ଦ । ଅପୂର୍ବ ଶିହରଣ ଖେଳିଯାଉଛି ହୃଦୟରେ । ଅଦମନୀୟ ଔତ୍ସୁକ୍ୟ ଜାଗୁଛି ମନରେ । 'ବାରେ ଯଦି ମିଳନ୍ତା ଚାରି ନୟନ' । ଲାଜରେ ଭୟରେ କିଛି ପଚାରି ପାରୁନାହାନ୍ତି ପରିବାରର ଅନ୍ୟମାନଙ୍କର କଥା । ଚାପିରଖିଛନ୍ତି ମନର ଉତ୍କଣ୍ଠା । ସର୍ଦ୍ଦାର ଡାକଦେଲେ ବାରଣ୍ଡାରୁ, ''ଚାହା ଦି କପ୍ ଆଣ, ଆମ ଗାଁର ବାବୁ ଜଣେ ଆସିଛନ୍ତି'' ଛବି । ପ୍ରତୀକ୍ଷିତ ଲକ୍ଷ୍ମଣବାବୁଙ୍କ ମାନସୀ ସେହି ଝିଅଟି । ଏବେ ସର୍ଦ୍ଦାର ଘରଣୀ, ଦିକପ୍ ଚା ନେଇ ନୃତ୍ୟଛନ୍ଦରେ ଆସିଗଲା ବାରଣ୍ଡାକୁ । ଟି ପୟ ଉପରେ ଚା' କପ୍ ଦି'ଟି ଥୋଇଦେଇ ଆଗନ୍ତୁକଙ୍କୁ କଲା ନମସ୍କାର । ଚକିତ ବିସ୍ଫାରିତ ନୟନ ତାର ହଠାତ୍ ହୋଇଗଲା ନିମୀଳିତ, ଲାଜ, ଅଭିମାନ କି ଦୁଃଖରେ, କିଏ କହିବ ? ବୁକୁର କୋହ ଚାପିଧରି ଚଞ୍ଚଳ ପାଦରେ ଫେରିଆସିଲା ଛବି ଘରଭିତରକୁ । ଚକିଆରେ ମୁହଁ ଚାପି ମିଶିଗଲା ଅନ୍ଧାରରେ ପଛକରି ଜ୍ୱାଳାମୟ ବାହାର ଆଲୋକକୁ । ଛୋଟ ଏକ ପ୍ରତିନମସ୍କାର, ଦୃଷ୍ଟି ପଡେ ଲକ୍ଷ୍ମଣବାବୁଙ୍କର ସୀମନ୍ତରେ

ଦାଉଦାଉ ସିନ୍ଦୂରଗାର ଉପରେ । କାହିଁସେ ସଜଳ ଆଖି, ସୁଟ୍ମୋନ ମଲ୍ଲୀହସ ? ଅଗ୍ନିର କଣିକା ବନ୍ଧକରା ଶିଶୁପାଳବକ୍ଷ । ସର୍ଦ୍ଦାରଙ୍କ ଠାରୁ ବିଦାୟ ନେଇ ଲକ୍ଷ୍ମଣବାବୁ ଫେରିଆସିଥିଲେ ହତାଶ ଗମ୍ଭୀର ମନ ଓ ବ୍ୟଥା-ବିଧୂର ହୃଦୟରେ ।

- - -

(ପାଂଚ)

'ବକ୍ଷଭରାଏ ପ୍ରଣୟ ମୁଁ କାରେ ଦେବି ଗୋ'-

ସାଳିମାରର ଛୋଟ ରେଳ କ୍ୱାର୍ଟର ଭିତରେ ହାତରେ ବଂଶୀଟିଏ ଧରି କିମ୍ବା ହାରମୋନିୟମଟି ବଜାଇ ଆବେଗମୟସ୍ୱର ଟାଳୁଥିବେ ତରୁଣ ଲକ୍ଷ୍ମଣ । ଭୁଲିଯାଉଥାନ୍ତି ସନ୍ଧ୍ୟାଦୀପ ଜାଳିବାକୁ, ଘରର ବିଜୁଳି ଆଲୁଅଟି ଜଳାଇଦେବାକୁ । ସହକର୍ମୀ ନନ୍ଦକୁମାର ଜେନା ଓ ବାଞ୍ଛାନିଧି ଦାସ ଡାକଦିଅନ୍ତି ''ହୋ ଲକ୍ଷ୍ମଣବାବୁ, ଅନ୍ଧାରରେ କା ପାଇଁ ଏ ବିରହ ସଙ୍ଗୀତ ବୋଲୁଛ, ଆସ ତାଆସ ଖେଳିବା'', ଲକ୍ଷ୍ମଣବାବୁଙ୍କ ଲୟ ଭାଙ୍ଗି ଯାଏ । ଉଠିପଡି ଲାଇଟ୍ ଜଳେଇ ଦିଅନ୍ତି । କହନ୍ତି ଆସ ଭାଇ ଏଇଠି ଖେଳ ହେଉ । ଖେଳ ଆରମ୍ଭ ହୁଏ । ଲକ୍ଷ୍ମଣବାବୁଙ୍କ ମନ ବିଷଣ୍ଣ, ଉଦାସ, ଖେଳରେ ମନ ନଥାଏ । ଆଉ ଦି'ଜଣ ବନ୍ଧୁ ଆସି ଯାଆନ୍ତି । ସେମାନେ ଖେଳରେ ଯୋଗ ଦିଅନ୍ତି । ଲକ୍ଷ୍ମଣବାବୁ ଖେଳରୁ ଉଠି ଆସି ହାରମୋନିଅମ ବଜାନ୍ତି । ମନର ଅବ୍ୟକ୍ତ ବେଦନା ଗୀତରେ କରୁଣ ମୂର୍ଚ୍ଛନା ସହିତ ଭାସିଯାଏ । ଦିନପରେ ଦିନ ଗଡିଚାଲେ । ଖିଦିରିପୁର ବ୍ୟଥାଭରା ସ୍ମୃତି ଲିଭି ଲିଭି ଆସେ । ମାତ୍ର ଏକୁଟିଆ ଏକୁଟିଆ ଭାବ ତାଙ୍କୁ ଆଚ୍ଛନ୍ନ କରି ରଖେ ସବୁବେଳେ । ଗୁଣୁଗୁଣୁ ହୋଇ ଗାଆନ୍ତି,

''ପିଆଲା ଉବୁରି ଉଚ୍ଛୁଳେ ମମ ଜୀବନ
କାହା କର-ପୁଟେ ଢାଳିଦେବି ସୋହାଗେ''

ଚାହୁଁ ଚାହୁଁ ଚାଲିଗଲା ଗ୍ରୀଷ୍ମ, ବର୍ଷା, ଆସିଛି ଶରତ, ଆସିବ ହେମନ୍ତ, ଆସିଯିବ ପୁଣି ଶୀତ । ଶରତର ଜ୍ୟୋତ୍ସ୍ନା-ସ୍ନାତ ରଜନୀ ଏକ ଆଣିଦେଲା ତାଙ୍କ ଜୀବନରେ ଆନନ୍ଦ-ଆଲୋକ । ବି.ଏନ୍.ଆର୍.ର ଏ.ଏସ୍.ଏମ୍. ପଦକୁ ତାଙ୍କର ପ୍ରମୋସନ ହୋଇଛି । ଅବସ୍ଥାପିତ ହେବେ ମେଦିନୀପୁର ନିକଟସ୍ଥ ଟଟାଗଡିଆ ରେଳଷ୍ଟେସନରେ ।

- - -

କଂସାଇ ନଦୀର ଦୁଇପଟେ ଦୁଇଟି ବୁକହଟ୍ ଷ୍ଟେସନ, ମେଦିନୀପୁର ରେଳଷ୍ଟେସନ ପାଖ ଟଟାଗଡିଆ ଷ୍ଟେସନ-କେବିନ, ଏହି ଦୁଇଟିରୁ ଗୋଟିଏ । ଚାରିପାଖେ ବିସ୍ତୀର୍ଣ୍ଣ ପ୍ରାନ୍ତର । ଗୋଡିପଥର ଭରା ପାହାଡିଆ ଯାଗା । ନିକଟରେ କୁଳୁକୁଳୁ ହୋଇ ବହିଯାଉଛି କଂସେଇ ନଦୀ ।

ଲକ୍ଷ୍ମଣବାବୁ ପାଇଛନ୍ତି କ୍ୱାର୍ଟରଟିଏ, ଦୁଇବଖରା ରହିବା ଘର, ଆଗରେ ବାରଣ୍ଡା । ଛାମ୍ପ୍ରି

ଲାଗିଛି ଭିତରେ, ଅଛି ରୋଷେଇ ଘର, ଷ୍ଟୋର ଘର । ନିଜ ହାତେ ସେ ରନ୍ଧାବଢ଼ା କରନ୍ତି । ଫାଙ୍କା ଫାଙ୍କା ଲାଗେ କ୍ୱାର୍ଟରଟା ।

ଦିନେ ମଝିଆ ମାମୁଁ ଆସି ଶୁଭଖବର ଦେଲେ । ଝିଅଟିଏ ଠିକ୍ କରିଛନ୍ତି । ଅପର ପ୍ରାଇମେରୀ ପାଶ୍ କରିଛି ଗୋରୀ, ସୁନ୍ଦରୀ, ସୁଲକ୍ଷଣା, ବାହାନଗା ନିକଟସ୍ଥ ଗାଁର କୃଷ୍ଣମୋହନ ବେହେରାଙ୍କ ଭଉଣୀ । ଖାନ୍‌ଦାନୀ ଘର, ବଡ଼ଚାଷୀ, ଧାନମହାଜନ । ସେ ବିବାହ ଦେବାକୁ ରାଜି । ସର୍ତ୍ତ କେବଳ ଗୋଟିଏ, ବରପକ୍ଷକୁ କନ୍ୟାକୁ ସୁନାହାରଟିଏ ଦେବାକୁ ହେବ । ମାମୁଁ ରେମୁଣାରେ ଯାତ୍ରାଦଳ ସଜାନ୍ତି । ରୁଚି ତାଙ୍କର ଆଧୁନିକ, ପରିଚ୍ଛନ୍ନ । ନିଃସଙ୍ଗ ଲକ୍ଷ୍ମଣବାବୁଙ୍କର ମାମୁଁଙ୍କ ଉପରେ ଗଭୀର ଆସ୍ଥା । ତାଙ୍କ ଘରେ ରହି ପଢୁଥିଲେ ମାଇନର । ଲକ୍ଷ୍ମଣବାବୁ ପ୍ରସ୍ତାବରେ ରାଜି ହୋଇଗଲେ । ଗାଁରେ ବଡ଼ଭାଇ ଅଳ୍ପ କେତେ ମାଣ ଜମି ଚାଷକରନ୍ତି । ବିଭାଘରର ସବୁ ବୋଝ ନିଜକୁହିଁ ବହନ କରିବାକୁ ପଡ଼ିଲା । ବରଯାତ୍ରୀ ଭାବରେ ଯାଇଥିଲେ, ମାମୁଁ, ହରି ବେହେରା, ଭିଣୋଇ ଗୁରୁ ବେହେରା, ଓଳୁଣ ଦାସ, ହଗୁରୁ, ଓଳୁଣ, କୃଷ୍ଣ ମୋହନଙ୍କ ଘରେ ଅନ୍ନ ସ୍ପର୍ଶ କଲେ ନାହିଁ । କାରଣ କୃଷ୍ଣମୋହନ ଜାଳେ ଦକ୍ଷୀଣୀ ତେଲି, ଳୁଣ ଓ ଗୁରୁଙ୍କ ଠାରୁ ଛୋଟ ଜାତି ।

ବିବାହର ଆଠଦିନ ପରେ ନବବିବାହିତା ସ୍ତ୍ରୀ ଛବିରାଣୀ ଓ ସାନଭଉଣୀ ରେବତୀକୁ ଧରି ଲକ୍ଷ୍ମଣ ବାବୁ ଚାଲିଆସିଲେ ଚନ୍ଦ୍ରାଗଡ଼ିଆ ।

ଶୋଇବାକୁ ଟିକେ ବିଛଣା ଖଟ ନାହିଁ । କେବଳ ଗୋଟେ ଛୋଟ ଫିଟା ଖଟିଆ ପଡ଼ିଥାଏ ଆର ଘରେ । ସେଥିରେ ଶୁଏ ସାନଭଉଣୀ । ଜାଳେଣୀ ପାଇଁ ଲାଇନରୁ ଅଣାଯାଇଥିବା କାଠସ୍ଲିପର ଥାକ ହୋଇ ରଖାଯାଇଥାଏ କ୍ୱାର୍ଟରସ ଭିତରେ । ସେଥିରୁ ବାଛି ବାଛି ଭଲ ସାଗୁଆନ ସ୍ଲିପର କାଟି ଗୋଟେ ଖଟ ତିଆରି କରାଗଲା । ଆରମ୍ଭ ହେଲା ନୂତନ ସଂସାର, ସମ୍ପୂର୍ଣ୍ଣ ନିଜର । ସୃଷ୍ଟିର ମାୟାଜାଲରେ ଛନ୍ଦି ହୋଇଗଲେ ଲକ୍ଷ୍ମଣବାବୁ । ବୁଢ଼ୀଆଣି ପରି ସ୍ୱପ୍ନର ଜାଲ ବୁଣି ଅପେକ୍ଷା କରି ରହିଲେ, ସୁଖ ସ୍ୱାଚ୍ଛନ୍ଦ୍ୟ ସୌଭାଗ୍ୟର ଦିନକୁ ।

- - -

ମାମୁଁ ଭଣଜା ଦି ଜଣ ଚାଲିଛନ୍ତି । ବାହାନଗା ଷ୍ଟେସନରୁ ବରଖୋଜି । ମାମୁଁ ହରି ବେହେରାଙ୍କ ଝିଆରୀ । ଭଣଜା ଲକ୍ଷ୍ମଣଙ୍କ ସାନଭଉଣୀ ପାଇଁ ଉପଯୁକ୍ତ ପାତ୍ର । ବଣଜଙ୍ଗଲ ଅପଡରା ବିଲବାଡ଼ି ପାହାଡ଼ ମୁଣ୍ଡିଆ ଦେଇ ମାଇଲ ମାଇଲ ଚାଲିଛନ୍ତି ଦିହେଁ । କନ୍ୟାଦାୟୀ ଲୋକର କି କଷ୍ଟ ବୁଲେଇ ବିକିଲେ ମାଣିକ ଭେଣ୍ଡି । ଏତେ ସୁନ୍ଦର ଝିଅ ଦିଟା ଦିଘରେ । ରୂପରେ ଯିମିତି ଗୁଣରେ ସିମିତି, ଏଇ ବୟସରୁ ଝିଅ ଦିଟା ସମ୍ଭାଳି ନେଇଛନ୍ତି ଦିଟା ପରିବାରର ଦାୟିତ୍ୱ । ରନ୍ଧାବଢ଼ା ଘରବାଡ଼ିର ଯତ୍ନ ନେବାରେ ନିପୁଣା । କିଏ ଚିହ୍ନୁଛି ଗୁଣ । ଝିଅ ତ ଝିଅ । ପୁରୁଷର ଆଶ୍ରିତା । ସମାଜ ଦିଏନା ନାରୀର ସେବା ସ୍ନେହର ମୂଲ୍ୟ । କେତେ ମାଇଲଦୂରରେ ପାଟପୁର ପରେ ଅଳସୁଆ, ସେ ଗାଁରେ ଏକ

ଥିଲାବାଲା ବେହେରା ଘର । ଘରର କର୍ତ୍ତା ରେବତୀର ଅର୍ଥାତ୍ ଲକ୍ଷ୍ମଣବାବୁଙ୍କ ଭଉଣୀର ବିବାହ ପ୍ରସ୍ତାବକୁ ବିଚାର କରିବାକୁ ପ୍ରତିଶ୍ରୁତି ଦେଲେ । ଆଶା ନେଇ ଫେରିଲେ ଦୁହେଁ ।. କଣ୍ଟାବଣିଆ ଜଣେିକ ସ୍କୁଲ ମାଷ୍ଟର, ଜାତିର ମୁଖିଆ ପ୍ରସ୍ତାବ ଦେଲେ ହରି ମାମୁଁଙ୍କ ଝିଆରୀ ପାଇଁ । କଣ୍ଟାବଣିଆରେ ରାତିରେ ରହି ପରଦିନ ସକାଳେ ବାଲିଗୋହିରୀ ଦେଇ ମାମୁଁ ଭଣଜା ଚାଲିଲେ ନୀଳଗିରି । ସବୁଠି ନିରାଶାର ସଙ୍କେତ । ଫେରିବା ବାଟରେ ପଡେ ପଞ୍ଚୁଆପାଟଣା ଗ୍ରାମ । ପଙ୍କ ଦାସ ଘର । ପିତୃମାତୃହୀନ ଯୁବକ ପଙ୍କ ଦାସ । ଅଭିଭାବକ ହେଉଛନ୍ତି କକା । ସେବି ଅବିବାହିତ । ଲକ୍ଷ୍ମଣବାବୁଙ୍କ ଭଉଣୀ ରେବତୀ ପାଇଁ ପଙ୍କ ଦାସ ସହିତ ବିବାହ ପ୍ରସ୍ତାବ ଦିଆଗଲା । ସୌଭାଗ୍ୟତଃ ପ୍ରସ୍ତାବରେ ସେମାନେ ରାଜିହେଲେ । ଶୁଭଦିନ ଠିକ୍ କରି ବିବାହ ସମ୍ପନ୍ନ କରାଗଲା । ଆନନ୍ଦରେ କଟିଗଲା ଦି ବର୍ଷ ସେମାନଙ୍କ ଦାମ୍ପତ୍ୟ ଜୀବନ । ରେବତୀ ଜୀବନ ଆକାଶରେ ଘୋଟିଆସିଲା କଳାବାଦଲ । ହଇଜାରେ ପଙ୍କ ଦାସଙ୍କର ହେଲା ଅକାଳ ବିୟୋଗ ।

ଗରିବ ଓଡିଶା, ନାହିଁ କଳକାରଖାନା, ନାହିଁ ବଡଧରଣର ବାଣିଜ୍ୟ ବ୍ୟବସାୟ । ଧାନ ଚାଷ କରି ଗାଁରେ ରହୁଥିବା ଓଡିଶାର ପ୍ରାୟ ୯୫ ଭାଗ ଲୋକ ଜୀବିକା ନିର୍ବାହ କରନ୍ତି । ଅଳ୍ପ କେତେଙ୍କ ମଧ୍ୟମ ଓ ବଡଚାଷୀଙ୍କୁ ଛାଡିଦେଲେ ଅଧିକାଂଶ ଛୋଟଚାଷୀଙ୍କର ଧାନ ଅମଳ ବର୍ଷର ଛଅ ସାତମାସ ପାଇଁ ଖାଦ୍ୟ ଯୋଗାଏ । ବାକି କାଳ ପାଇଁ ମହାଜନର ଦ୍ୱାରସ୍ଥ ହେବାକୁ ପଡେ । ଓଡିଶାର ଏକତୃତୀୟାଂଶ ଲୋକ କ୍ଷେତମୂଲିଆ । ବର୍ଷରେ ଛ' ସାତ ମାସ କାମ ମିଳିଲେ ବଡ ଭାଗ୍ୟର କଥା । ବନ୍ୟା, ମରୁଡି ତ ଲାଗି ରହିଥାଏ ଦି ତିନି ବର୍ଷରେ ଥରେ । ଫସଲ ହାନି ହୁଏ ବ୍ୟାପକ । ଲୋକଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ହୁଏ । ଦିନରେ ଦିଓଳି ଖାଇବାକୁ ମିଳେନା । ଅଗଣିତ ଗରିବ ଲୋକଙ୍କୁ ଖାଦ୍ୟ ଅଭାବରେ ବଣର ଫଳମୂଳ, ଶାଗମୁଗ, ମାଣ୍ଡିଆ ଖାଇ ବଞ୍ଚିବାକୁ ହୁଏ । ଅପୁଷ୍ଟିକର ଖାଦ୍ୟ । ଶରୀର ରୁଗ୍ଣ । ଗାଁରେ ନଥାଏ ପରିଷ୍କାର ପାନୀୟ ଜଳ । ସାରା ଗାଁଟାରେ ଗୋଟେ ଦିଟା କୂଅ ଥିବ କି ନାହିଁ । କେତେ ଗାଁରେ ବିଲକୁଲ କୂଅ ନଥାଏ । ନଈ, ପୋଖରୀ ପାଣିରେ ସବୁ କାମ ଗାଧୋଇବା, ପିଇବା, ରାନ୍ଧିବା, ଦୂଷିତ ଜଳର ବ୍ୟାପକ ବ୍ୟବହାର । ମେଲେରିଆ ଆମାଶୟ ରୋଗତ ଲୋକଙ୍କର ଚିର ସହଚର । ତା ସାଙ୍ଗକୁ ବେଳେବେଳେ ଆବିର୍ଭାବ ହୁଅନ୍ତି ମା ଠାକୁରାଣୀ, ବୁଢୀ ଠାକୁରାଣୀ, ବସନ୍ତ-ହଇଜା । କେଉଁ ଏକ ଗାଁରେ ଆରମ୍ଭ ହୋଇ ପବନ ବେଗରେ ମାଡିଯାଏ ପାଖ ଆଖ ଗାଁକୁ । ଶ୍ମଶାନରେ ଭରିଯାଏ ମଡା, ଶାଗୁଣା ଚିଲଙ୍କ ଆଡ୍ଡା । ରାତିଦିନ କାନ୍ଦବୋବାଳି । ମନରେ ଦମ୍ଭ ଆଣିବାକୁ ବାଜେ ଘଣ୍ଟା, ଝାଞ୍ଜ, ଢୋଲ, ମୃଦଙ୍ଗ, ଲାଗେ କାକିସୀ, ଜଳାଯାଏ ପଣା, ଯୋଗିନୀ ମାଆ କ'ଣ ଏତେ ସହଜେ ଶାନ୍ତ ହେବେ । ମନଭରି ମୁଣ୍ଡ ଗୋଟାଇ ବିଦାୟ ନିଅନ୍ତି ତାଙ୍କ ମର୍ଜିରେ । ଗାଁରେ ନଥାଏ ସ୍କୁଲ ବା ଡାକ୍ତରଖାନା, ସ୍ୱାସ୍ଥ୍ୟରକ୍ଷା ନିୟମ କ'ଣ ଜଣାନଥାଏ କାହାକୁ । ଗାଁ ବଇଦ ବା ହୋମିଓପାଥି ଡାକ୍ତର ବୋଲାଉଥିବା ଲୋକଟି ସାହାଭରସା । ରୋଗ ଭଲହେବା ନହେବା ସବୁ ସେହି ଠାକୁରଙ୍କ କରୁଣା । ଜାତକ ବିଚାର ଦେବଦେବୀ ପୂଜା ଗାଁ ମଙ୍ଗଳା ମାର୍ଜନା, ଶିବପୂଜା ଲୋକଙ୍କ ରକ୍ଷାକବଚ । ଭାଗ୍ୟର ନିୟାମକ ।

ଏପରି ଏକ ଅନ୍ଧାରୀ ଯୁଗରେ ଗରିବମୂଳକରେ ସେଥର ଲାଗିଲା ହଇଜା । ଲକ୍ଷ୍ମଣବାବୁଙ୍କ ଅତିପ୍ରିୟ ମାମୁଁ ହରିବାବୁ ହେଲେ ତାର ଶିକାର । ପାଞ୍ଚଦିନ କାଳ ଅଦମ୍ୟ ସେବା, ଶୁଶ୍ରୂଷା । ସୋରର ସୁରଞ୍ଜନ ଚକ୍ରବର୍ତ୍ତୀ ଓ ତାଙ୍କ ଭାଇ ଅମର ଚକ୍ରବର୍ତ୍ତୀ ହୋମିଓ ଚିକିତ୍ସା କରି ବିଫଳ ହେଲେ । ମାମୁଁଙ୍କର ଜୀବନଦୀପ ଲିଭିଗଲା । ମାମୁଁ ଥିଲେ ଲକ୍ଷ୍ମଣବାବୁଙ୍କର ଜଣେ ଅତ୍ୟନ୍ତ ସ୍ନେହୀ ହିତୈଷୀ ଅଭିଭାବକ । ତାଙ୍କର ସାହାଯ୍ୟ ଓ ପ୍ରେରଣାରେ ଲକ୍ଷ୍ମଣବାବୁଙ୍କ ପାଠପଢ଼ା । ତାଙ୍କ ବିୟୋଗରେ ସେ ଦୁଃଖରେ ଭାଙ୍ଗି ପଡ଼ିଲେ । ଭଲମନ୍ଦରେ ଠିକ୍ ପରାମର୍ଶ ଓ ସାହସ ଦେବାକୁ କେହି ସେପରି ନିଜର ଲୋକ ନାହାଁନ୍ତି । ଏଣିକି ଏକଲା ଭାବିଚିନ୍ତି ଯାହା କିଛି କରିବାକୁ ହେବ । ଭଉଣୀ ରେବତୀର ବୈଧବ୍ୟ ଓ ମାମୁଙ୍କ ଦେହାନ୍ତ ଦୁଇଟି ବଡ ଧକ୍କା ଅଳ୍ପ କେତେମାସ ବ୍ୟବଧାନରେ ସହିବାକୁ ପଡ଼ିଥିଲା ଲକ୍ଷ୍ମଣବାବୁଙ୍କୁ । ଦୃଢ଼ଆତ୍ମବିଶ୍ୱାସ ଦୁର୍ଦ୍ଦିନ ଅତିକ୍ରମ କରିଯିବାକୁ ଦେଇଥିଲା ତାଙ୍କୁ ମଦତ୍ ।

## (ଆଠ)

'ସବିତା କିରଣ ପରଶେ ପ୍ରଜ୍ୱଳଇ,
ଚେତନା ରହିତ ସୂର୍ଯ୍ୟକାନ୍ତ ମଣି'
(ଭର୍ତ୍ତୃହରି)

କଲିକତାର ସେହି ଅନାମିକା ଯୁବତୀର ଚିତ୍ତ ମଧୁର ସ୍ମୃତି ଧୀରେ ଧୀରେ ଅପସରି ଯାଉଥାଏ ନବବଧୂର ସରସ କଥା, ସଲ୍ଲଜ ଚାହାଣୀରେ । ବାହାନଗା ଷ୍ଟେସନର ସହକାରୀ ଷ୍ଟେସନ ମାଷ୍ଟର । ଶ୍ୱଶୁର ଘର ଗାଁ ନିକଟରେ । ସ୍ତ୍ରୀ ଛବିରାଣୀଙ୍କ ମନ ଉତ୍ଫୁଲ୍ଲ । ବିବାହିତା ଜୀବନର ପ୍ରଥମ ଦୁଃଖ, ବାପା ମାଆ ଭାଇ ଭାଉଜ ସାଙ୍ଗସାଥୀଙ୍କ ଠାରୁ ଦୂରେଇ ରହିବାର ବ୍ୟଥା ଉଭେଇ ଗଲା । ପ୍ରତ୍ୟେକ ଦିନ ତ ମାଆ ଭାଇ ଆସୁଛନ୍ତି ଆଦରଣୀୟା ଭାଉଜଙ୍କ ହାତରନ୍ଧା ସୁଆଦିଆ ତିନି ତରକାରି, ହରେକ ରକମର ପିଠା ଆସି ପହଞ୍ଚି ଯାଉଛି । ମାଆର ସ୍ନେହ ଆଦର ମିଳୁଛି । ଶାଶୂ ନାହାନ୍ତି କି ଶ୍ୱଶୁର ନାହାନ୍ତି । ସୁକୁମାରୀ ଗେହ୍ଲେଇ ସାନ ନଣନ୍ଦ । ଗୋଡ ଟେକୁଛି ଶାଶୂଘରକୁ ଯିବାକୁ । ବର ଠିକ୍ ହୋଇଛି । ଅଳ୍ପଦିନରେ ବାହାଘର । ଗଞ୍ଜଣା ଦେବାକୁ କେହି ନାହିଁ । ବେଶ୍ ବଡ କ୍ୱାର୍ଟରଟିଏ ମିଳିଛି । ଦୁଇଟି ଶୋଇବା ଘର । ଜାଫ୍ରିଲଗା ବାରଣ୍ଡା, ସ୍ୱତନ୍ତ୍ର ରୋଷେଇ ଓ ଷ୍ଟୋର ଘର । ସରଳ କିନ୍ତୁ ରୁଚିପୂର୍ଣ୍ଣ ଭାବରେ ସଜାଇ ରଖନ୍ତି ଘରଟିକୁ । ଦରଦୀ ଉଦାରମନା ସ୍ନେହମୟୀ, ଆଖପାଖ ଅଞ୍ଚଳର ଲୋକମାନେ ନୂଆ ଷ୍ଟେସନ ମାଷ୍ଟରଙ୍କୁ ଖୁବ୍ ଭଲପାଆନ୍ତି, ସମ୍ମାନ ଦେଖାନ୍ତି । ସ୍ୱାମୀର ପ୍ରଶଂସା ଶୁଣି କେଉଁ ସ୍ତ୍ରୀ ଗର୍ବିତ ନହେବ ? ଆନନ୍ଦରେ କଟିଯାଏ ଦିନ ।

ସଂଧ୍ୟାରେ ଲକ୍ଷ୍ମଣବାବୁଙ୍କର ନଥାଏ ଡିଉଟି । ଡିଉଟି ରାତି ୧୦ଟାରୁ ଆରମ୍ଭ ହୁଏ । ଏହି ଦିନଗୁଡ଼ିକରେ ସଂଧ୍ୟାରେ ଆସର ବସେ ତାଙ୍କ ବସାରେ । ଆସରରେ ଯୋଗ ଦିଅନ୍ତି ଶଳା କୃଷ୍ଣ ମୋହନ, ତାଙ୍କର ଅନ୍ତରଙ୍ଗ ବନ୍ଧୁ ଜମିଦାର ବଂଶୀୟ ରାଧାଗୋବିନ୍ଦ ବାବୁ । ଏ ସଭିଏଁ ସଙ୍ଗୀତ ପ୍ରିୟ । ଲକ୍ଷ୍ମଣବାବୁଙ୍କ ବସାରେ ଥାଏ ହାରମୋନିଅମ, ତବଲା, ବଂଶୀ ବଜାଇ ଗୀତ ବୋଲନ୍ତି ଲକ୍ଷ୍ମଣବାବୁ

କିମ୍ବା କୃଷ୍ଣମୋହନ ବାବୁ । ତବଲା ବଜାନ୍ତି ରାଧାଗୋବିନ୍ଦ ବାବୁ । 'ଗଲାଣିତ ଗଲା କଥାରେ ସଙ୍ଗୀତ' ଠାରୁ ଆରମ୍ଭ କରି 'ସୀମାର ମାଝେ ଅସୀମ ତୁମି ବାଜାଓ ଆପନ ସ୍ୱର' ବୋଲାଯାଏ । ସଙ୍ଗୀତର ପ୍ରେମରେ ବିଭୋର ହୋଇଯାନ୍ତି ତିନିବନ୍ଧୁ । ଛବିରାଣୀ ଆଣିଦିଅନ୍ତି ଘରେ ତିଆରି ବରା ପକୁଡ଼ି, କିମ୍ବା ବାପଘରୁ ଆସିଥିବା ମଣ୍ଡା କାକରା । ତାହାପର୍ବ ସରେ ଆନନ୍ଦ କୌତୁକ ଭିତରେ । ବିଦାୟ ପୂର୍ବର ପର୍ବ ପାଳିତ ହୁଏ ସୁରାପାନରେ । ବିଦେଶୀ ସୁରା କାହୁଁ ମିଳିବ ମଫସଲ ଷ୍ଟେସନରେ ? ଦୁଇବନ୍ଧୁ ସଙ୍ଗରେ ଆଣିଥାନ୍ତି ଖଜୁରୀରସର ତାଡ଼ି । ଚୋଷ୍ଠ ପିଅନ୍ତି ରାଧାଗୋବିନ୍ଦ ବାବୁ, କୃଷ୍ଣମୋହନ ବାବୁ । ୧୦ଟା ପରେ ଡିଉଟି, ସଚେତନ ଲକ୍ଷ୍ମଣବାବୁ । ସାବଧାନତାର ସହ ବନ୍ଧୁଙ୍କ ଅନୁରୋଧରେ ଅଧଗିଲାସେ ଢୋକି ଦିଅନ୍ତି । ସେହି ଅଧଗିଲାସ ରସ ମଧ୍ୟ ବେଳେ ବେଳେ ବିପଦ ସୃଷ୍ଟି କରେ ।

ଦିନକର ଘଟଣା । ସନ୍ଧ୍ୟା ଆସରରେ ତାଡ଼ି ପିଇ ଦେଇଥିବା ହେତୁ ରାତିରେ ଡିଉଟି ସମୟରେ ଲକ୍ଷ୍ମଣବାବୁଙ୍କୁ ନିଦ ଘାରିଯାଉଛି । ଏଣେ ହାଓଡ଼ାରୁ ମାଡ୍ରାସ ମେଲ ଆସି ବାହାନଗାରେ ଆଉଟର ସିଗନାଲ ପାଖରେ ଅଟକି ଯାଇଛି । ସିଗନାଲ ଦିଆହୋଇ ନାହିଁ । ଗାଡ଼ି ଅଟକିଛି ଏକ ଘଣ୍ଟାକାଳ । ନିଦ ଭାଙ୍ଗିଛି ଲକ୍ଷ୍ମଣ ବାବୁଙ୍କର । ସିଗନାଲ ଦିଆଯାଇଛି । ମାଡ୍ରାସ ମେଲ ତା ଗତି ପଥରେ ଆଗେଇ ଯାଇଛି । କି ଦୁର୍ଘଟଣା । କର୍ତ୍ତୃପକ୍ଷ କୈଫତ ମାଗିଲେ କି ଉତ୍ତର ଦିଆଯିବ ? ଲକ୍ଷ୍ମଣବାବୁଙ୍କ ଛାତି ଧଡ ଧଡ । କୈଫତ ମଗାଯାଇନି, ବଞ୍ଚିଯାଇଛନ୍ତି ଷ୍ଟେସନ ମାଷ୍ଟ୍ରେ । ଆଉ ଦିନେ ସୋରରୁ ଏକ ଲାଇଟ ଇଞ୍ଜିନ ଆସି ବାରିକପୁର ଆଉଟର ସିଗନାଲ ପାଖରେ ଅଟକିଛି ଏକ ଘଣ୍ଟାକାଳ । ଡିଉଟିରେ ଥିବା ଲକ୍ଷ୍ମଣବାବୁ ଶୋଇ ପଡ଼ିଥିବାରୁ ଠିକ୍ ସମୟରେ ସିଗନାଲ ଦେଇନାହାନ୍ତି । ଡିଉଟିରେ ଏତେ ବଡ ତ୍ରୁଟି ବିଚ୍ୟୁତି । ମାତ୍ର ଈଶ୍ୱରଙ୍କ କୃପାରୁ କିଛି ବିପଦ ଆସିନି, କର୍ତ୍ତବ୍ୟରେ ଗୁରୁତ୍ୱର ଅବହେଳା ଯୋଗୁ । ଆସର ଚାଲିଛି ଯଥାରୀତି । ତେବେ ସତର୍କ ହୋଇ ଯାଇଛନ୍ତି ଲକ୍ଷ୍ମଣ ବାବୁ ।

୧୯୩୮-୩୯ ମସିହା । ଓଡ଼ିଶା ଇତିହାସର ସ୍ମରଣୀୟ କାଳ । ଏହି ସମୟରେ ଓଡ଼ିଶା ଗଡ଼ଜାତ ମାନଙ୍କରେ ପ୍ରଜା ଆନ୍ଦୋଳନର ସୂତ୍ରପାତ ହେଲା । କୃଷକ ଆନ୍ଦୋଳନ ମୁଣ୍ଡ ଟେକିଲା । ଏହି ସବୁ ଆନ୍ଦୋଳନର ଅଗ୍ରଭାଗରେ ଥିଲେ କଂଗ୍ରେସ ସୋସାଲିଷ୍ଟ ଗ୍ରୁପର ନେତାଗଣ । ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀ ପାଣିଗ୍ରାହୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ ଇତ୍ୟାଦି । କଂଗ୍ରେସ ସୋସାଲିଷ୍ଟର କେତେକ ନେତା କମ୍ୟୁନିଷ୍ଟ ପ୍ରତି ପ୍ରବଳ ଭାବେ ଆକୃଷ୍ଟ ଥିଲେ । ପରବର୍ତ୍ତୀ କାଳରେ ସେମାନେ ହେଲେ କମ୍ୟୁନିଷ୍ଟ । ଭିତରେ ଥାଇ ସୋସାଲିଷ୍ଟ ଦଳକୁ ହାତ କରି ନେବାପାଇଁ ସେମାନେ ପ୍ରବଳ ଉଦ୍ୟମ କରୁଥିଲେ । ଏହା ପୂର୍ବରୁ କୃଷକ ସଂଘ ଗଠିତ ହୋଇଥିଲା । କିଛି ମାସ ପୂର୍ବେ ଧର୍ମଶାଳା ଥାନାର ଏକ ଗ୍ରାମରେ କୃଷକ ସଂଘର ଶିବିର ହୋଇଥିଲା । ଗଡ଼ଜାତର ପ୍ରଜାଆନ୍ଦୋଳନ ତୀବ୍ର ହୋଇଥିଲା ତାଳଚେର, ଢେଙ୍କାନାଳ ଓ ନୀଳଗିରିରେ । ତାଳଚେର ରାଜାଙ୍କ ଉତ୍ପୀଡ଼ନର ପ୍ରତିବାଦ କରି ସହସ୍ର ପ୍ରଜା ପିଲାଛୁଆ ଧରି ଆସି ଅନୁଗୁଳର ପାଖ ଗାଁ ମାନଙ୍କରେ ତାଳପତ୍ର ପଲାମାରି ରହିଥିଲେ । ପ୍ରଜା ଆନ୍ଦୋଳନ ମଧ୍ୟ ତେଜୀୟାନ ହୋଇଥିଲା ଢେଙ୍କାନାଳରେ ।

ଆନ୍ଦୋଳନକୁ ବାହାରୁ ପ୍ରୋତ୍ସାହିତ କରୁଥିଲେ ରବି ଘୋଷ ଓ ଗୌରାଙ୍ଗ ବାବୁ । ଢେଙ୍କାନାଳ ଆନ୍ଦୋଳନ ଭିତରେ ବ୍ରାହ୍ମଣୀ ନଈର ଭୁବନଘାଟିରେ ପୁଲିସଙ୍କୁ ନଈ ପାର ହେବାରେ ସହଯୋଗ କରିବାକୁ ମନା କରିଦେବାରୁ ବାଜିରାଉତ ସମେତ ସାତଜଣ ଲୋକ ପୁଲିସ ଗୁଳିରେ ପ୍ରାଣ ଦେଲେ । ସେମାନଙ୍କର ଶବକୁ ଜେନାପୁର ପର୍ଯ୍ୟନ୍ତ ଅଣାଯାଇ ସେଠୁ ଟ୍ରେନରେ କଟକ ନିଆଗଲା । କଟକରେ ଏସବୁ ଶବକୁ ଏକ ଶୋଭାଯାତ୍ରାରେ ଶ୍ମଶାନକୁ ନିଆଗଲା । କଟକ ସହରରେ ସୃଷ୍ଟି ହେଲା ତୀବ୍ର ଉତ୍ତେଜନା । ଅଭୂତପୂର୍ବ ତ୍ୟାଗ ଓ ଦେଶପ୍ରେମରେ ଅଭିଭୂତ ହୋଇ ସଚି ରାଉତରାୟ ଲେଖିଲେ ଉଦ୍ଦୀପନାମୟ ଆଗ୍ନେୟ କବିତା 'ବାଜିରାଉତ' :

"ଏ ଦେଶ ତିମିର ତଳେ
ଏ ଅଲିଭା ମୁକତି ସଳିତା
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳି ପୋଡ଼ି
ଦବାକୁ ଧସାଇ"

ପ୍ରଜାଆନ୍ଦୋଳନର ସ୍ଫୁଲିଙ୍ଗ ବ୍ୟାପିଯାଇଥିଲା ନୀଳଗିରି ରାଜ୍ୟରେ । ନୀଳଗିରି ଗଡଜାତଟି ଖନ୍ତାପଡା ବାହାନଗାର ନିକଟବର୍ତ୍ତୀ । ପ୍ରଜାଆନ୍ଦୋଳର ପ୍ରମୁଖ ଲୋକନେତା ବନମାଳୀ ଦାସ, କଂଗ୍ରେସ ସୋସାଲିଷ୍ଟ ଦଳର ସଭ୍ୟ ସୁବାସଚନ୍ଦ୍ର ବୋଷଙ୍କ ସମର୍ଥକ । ବାମପନ୍ଥୀ ଚିନ୍ତାଧାରା ମାର୍କ୍ସଙ୍କ ଦର୍ଶନ ଦ୍ୱାରା ଆକୃଷ୍ଟ । ନୀଳଗିରି ରାଜାଙ୍କ ଅକଥନୀୟ ଅତ୍ୟାଚାରର ପ୍ରତିରୋଧ କରି ଚାଲିଥାଏ ପ୍ରଜାମେଳି । ନୀଳଗିରି ପୋଲିସ ପ୍ରଜାଆନ୍ଦୋଳନର ନେତା ଓ କର୍ମୀମାନଙ୍କୁ ଗିରଫ କରିବାକୁ ତତ୍ପର । ପୋଲିସ ଆଖିରେ ଧୂଳି ଦେଇ ଆତ୍ମ ଗୋପନ କରୁଥାନ୍ତି ନେତାମାନେ । ଗଡଜାତ ଅଞ୍ଚଳରୁ ମୋଗଲ ବନ୍ଦୀ ଅଞ୍ଚଳକୁ ଖସି ପଳାଇ ଆସିଲେ ଅପେକ୍ଷାକୃତ ନିରାପଦ । ତଥାପି ନିୟମ ନମାନି କିମ୍ବା ମୋଗଲବନ୍ଦୀ ଲୋକଙ୍କ ସହାୟତାରେ ସନ୍ଧାନ ପାଇଲେ ଆନ୍ଦୋଳନକାରୀମାନଙ୍କୁ ଧରି ନିଅନ୍ତି ମୋଗଲବନ୍ଦୀ ଅଞ୍ଚଳରୁ । ତେଣୁ ଆନ୍ଦୋଳକାରୀମାନେ ମୋଗଲବନ୍ଦୀ ଅଞ୍ଚଳର ଚିହ୍ନାପରିଚୟ ବନ୍ଧୁବାନ୍ଧବଙ୍କ ଘରେ ଆତ୍ମଗୋପନ କରନ୍ତି । ପୁଲିସ ହାଙ୍ଗାମା କମିଗଲେ ଆନ୍ଦୋଳନ ଜୋରଦାର କରିବା ପାଇଁ କ୍ଷେତ୍ର ଉପରକୁ ଯାଆନ୍ତି । ଆନ୍ଦୋଳନରେ ଯୋଗଦେଇଥାନ୍ତି ପଙ୍କ ଦାସ । ଲକ୍ଷ୍ମଣ ବାବୁଙ୍କ ସାନଭଉଣୀ ରେବତୀର ସ୍ୱାମୀ । ଲକ୍ଷ୍ମଣବାବୁଙ୍କ ସହ ପରାମର୍ଶ କରି ପଙ୍କ ଦାସ ଓ ବନମାଳୀ ଦାସ ଆତ୍ମଗୋପନ କରନ୍ତି ଖନ୍ତାପଡାସ୍ଥ ଲକ୍ଷ୍ମଣବାବୁଙ୍କ ଘରେ । ଦିନ ତମାମ୍ ଆଟୁ ଉପରେ ଲୁଚି ରହନ୍ତି, ରାତି ହେଲେ ଆସନ୍ତି ତଳକୁ । ଏହି ଆତ୍ମଗୋପନ ସମୟରେ ସାକ୍ଷାତ ହୁଏ ଲକ୍ଷ୍ମଣବାବୁଙ୍କର ବନମାଳୀ ଦାସଙ୍କ ସହିତ । ଚିର ସହଚର ତାଙ୍କ ଝୁଲାଟି ଭିତରେ ଥାଏ ମାର୍କ୍ସଙ୍କ କମ୍ୟୁନିଷ୍ଟ ମେନିଫେଷ୍ଟୋ ଓ ଜୟପ୍ରକାଶଙ୍କ Why Socialism । ବହି ଦୁଇଟି ବନମାଳୀବାବୁଙ୍କ ଚିର ସହଚର । ମାର୍କ୍ସଙ୍କ ଚିନ୍ତାର ନିଗୂଢ଼ କଥା । ଭାରତରେ ସମାଜବାଦର ଅନିବାର୍ଯ୍ୟତା ପ୍ରାଞ୍ଜଳ ଭାବେ ବୁଝାଇ ଦିଅନ୍ତି ବନମାଳୀବାବୁ ଲକ୍ଷ୍ମଣବାବୁଙ୍କୁ । ବହି ଦୁଇଟି ଆଣି ଲକ୍ଷ୍ମଣ

ବାବୁ ଗୋପନରେ ପଢ଼ିଦେଲେ । "Workers of the World, Unite" ବାକ୍ୟଟି ସ୍ପର୍ଶ କଲା ଲକ୍ଷ୍ମଣବାବୁଙ୍କ ହୃଦୟକୁ । ଅନ୍ତର ଭିତରେ ଚାପି ହୋଇରହିଥିବା ସ୍ୱଦେଶପ୍ରୀତି ଉଜ୍ଜୀବିତ ଓ ପ୍ରସାରିତ ହୋଇ ଉଠିଲା । ଦେଶପ୍ରେମ ରୂପାନ୍ତରିତ ହେଲା ସମଗ୍ର ମାନବଜାତିର ପ୍ରେମରେ । 'ଦୁନିଆର ମଜ୍‌ଦୂର ଏକଜୁଟ୍ ହୁଅ' ଅନୁରଣିତ ହେଲା ତାଙ୍କ ହୃଦୟର ଗଭୀର କୋଣରେ । ଚାଷୀ ମୂଲିଆ, କଳକାରଖାନାର କୁଲି, ଶ୍ରମିକ, ସ୍ୱଳ୍ପବେତନଭୋଗୀ କର୍ମଚାରୀ ସମସ୍ତେ ତ ମଜଦୂର ଶ୍ରେଣୀର। ଏମାନଙ୍କୁ ସଂଗଠିତ କରି ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ପତନ ଘଟାଇବାକୁ ହେବ । ସାମ୍ୟବାଦ ସ୍ଥାପନ କରିବାକୁ ହେବ । ସାମ୍ୟବାଦୀ ଚିନ୍ତାଧାରା ଅଭିଭୂତ କଲା ଲକ୍ଷ୍ମଣବାବୁଙ୍କୁ । କିଶୋର ବୟସରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଦାରିଦ୍ର୍ୟର ତାଡ଼ନାରେ ସ୍ୱାଧୀନତା ସଂଗ୍ରାମରୁ ଓହରି ଆସିଥିବାର ମାନସିକ ଗ୍ଲାନି ପୋଛି ଦେବାକୁ ସେ ପାଇଲେ ଏକ ଉପାୟ । ଲକ୍ଷ୍ମଣବାବୁ ଠିକ୍ କଲେ ଚାକିରିରେ ଥାଇ ମଧ୍ୟ ଶ୍ରମିକ ସଂଗଠନ ମାଧ୍ୟମରେ ସାମ୍ୟବାଦୀ ଆନ୍ଦୋଳନକୁ ଆଗେଇ ନେବାରେ ସାହାଯ୍ୟ କରିବେ । ଲକ୍ଷ୍ମଣବାବୁଙ୍କ ଅନ୍ତରାତ୍ମା ନୂତନ ଆଲୋକରେ ଉଦ୍‌ଭାସିତ ହୋଇଉଠିଲା ।

(ନଅ)

'ବୈକୁଣ୍ଠ ସମାନ ଆହା ଅଟେ ସେହିଘର'

ବେଶ୍ ଖାତିର୍, ଲକ୍ଷ୍ମଣବାବୁଙ୍କର, ଆଖାପାଖ ଅଞ୍ଚଳର ଲୋକଙ୍କ ମୁହଁରେ ପ୍ରଶଂସା । ବି.ଏନ୍.ଆର୍.ର ଟିକେଟ ବାବୁ, କିନ୍ତୁ ହେଟ ନଜର କି ଲୋଭୀ ନୁହଁନ୍ତି । ଦରଦୀ ବାବୁଟିଏ, ରେଳ ଯାତ୍ରୀଙ୍କ ସହ ସଦ୍‌ଭାବ, ଦୁଃଖସୁଖ ଆଳାପ ଆଲୋଚନା, ସତେ ଯେମିତି ଯାତ୍ରୀଗୁଡ଼ିକ ତାଙ୍କର କ୍ଷଣିକ ଅତିଥି । ଓଡ଼ିଆବାବୁ, ସେ ସମୟରେ ବିରଳ, ଘର ଏହି ନିକଟସ୍ଥ ଖଣ୍ଡାପଡ଼ାରେ । ଜଣାଶୁଣା ନାମକରା ଘରର ପୁଅ ହୋଇଥିବେ । ନିଷ୍ଠୁର ବାସ୍ତବତା ଥିଲା ଅନ୍ୟପ୍ରକାର, ବିଲ୍‌କୁଲ୍ ଅଜଣା ଅଖ୍ୟାତ ଗରିବ ଚାଷୀ ପରିବାର ଘର ? ମାଟି ଚାଳଘର, ଛଣଛପର, ଛୋଟ ପୁରଟିଏ, ବଖରେ ଦିବଖରା ଘର । ବାହାର ଲୋକେ ଲକ୍ଷ୍ମଣ ବାବୁଙ୍କୁ ସେ ଘରେ ଦେଖିଲେ କ'ଣ ଭାବିବେ ? ନିଜ ଘର ବୋଲି ଗର୍ବ ଆନନ୍ଦ କରିତ ହେବନି । ନିଜ ଘରକୁ ଭଦ୍ରଲୋକଙ୍କୁ ବା ଅଫିସ ସାଙ୍ଗସାଥୀମାନଙ୍କୁ ନେଇ ହେବନି । ସେଥିପାଇଁ ମନରେ ତାଙ୍କର କ୍ଷୋଭ, ସାମାନ୍ୟ ସଙ୍କୋଚ ! ପୋଷାକ ପରିଚ୍ଛଦ ପରି ନିଜ ବାସ ଘରଟି ସୁଷମ ସଦୃଶ୍ୟ ହେଲେ ଏକ ଅବ୍ୟକ୍ତ ସନ୍ତୋଷ ମିଳେ । ସମୟ ଭିତରେ ଆଧୁନିକ ଘରଟିଏ କରିବାକୁ ହେବ । ସାମାଜିକ ସ୍ଥିତି ସହ ଯେମିତି ଖାପ ଖାଇଯିବ । କିମିତି କରିବେ ଘର ? ପୈତୃକ ଭିଟାମାଟି, କଳାବାଡ଼ି ତ ଅତି ଛୋଟ । ଛୋଟ ପିଲା ଥିଲାବେଳେ ଏହି ଛୋଟ ଯାଗାଟି କେଡେ ସୁନ୍ଦର ଶାନ୍ତିଦାୟକ ମନେ ହେଉଥିଲା । ଛୋଟ ଘରକୁ ଲାଗି ପିଜୁଳି ଗଛରେ ଚଢ଼ି ପାଚିଲା ପିଜୁଳି ପେଟଭରି ଖାଇବାର ସ୍ମୃତି ଆଜିବି ମନରେ ତାଙ୍କର ଆନନ୍ଦ ଭରି ଦେଉଛି । ଘରଠୁ କେଇ ହାତ ଦୂରରେ ଛୋଟ ଶାଗପଟାଳିଟିରେ ଛନଛନ ଶାଗ ବୁଢ଼ୀମା ପାଛିଆଟିରେ ତୋଳୁଥିବାର ଦୃଶ୍ୟ, ମାଆ ଠାକୁର ପୂଜା ପାଇଁ ବାଡ଼ି ଟଗର ଗଛରୁ ଫୁଲ ତୋଳୁଥିବା ଛବି ଆଜିବି ତାଙ୍କ ମାନସପଟରେ ଜୀବନ୍ତ ହୋଇ ରହିଛି ।

ଦୁଃଖସୁଖର ରୋମାଞ୍ଚକର ସ୍ମୃତି ଘେରି ରହିଛି ବହୁକାଳରୁ ରହିଆସଥିବା ବେହେରା ପରିବାରର ଏହି ଛୋଟ ଘରବାଡ଼ିକୁ । ଏହାର ପବିତ୍ର-ମାଟି ଉପରେ ତୋଳିବାକୁ ହେବ ନୂତନ ପିଢ଼ି ପାଇଁ ନୂଆଘର-ଆନନ୍ଦ ନିକେତନ ।

ପାଖ ପଡ଼ୋଶୀଙ୍କ ଠାରୁ ଯାଗା କିଣି ମିଶାଇ ଦେବାକୁ ହେବ ନିଜର ପୈତୃକ ଯାଗା ସହିତ । ପଡ଼ିଶାଙ୍କ ଘରବାଡ଼ିରୁ କିଛି ଅଂଶ କିଣିବାର ନିଶା ଘାରିଲା ଲକ୍ଷ୍ମଣବାବୁଙ୍କୁ । ଚାଲିଲା ମନ୍ତ୍ରଣା, ପ୍ରଥମେ ପଡ଼ୋଶୀ ସମନ ଦାଶର ବାଡ଼ିକିଣା ଗଲା । ମାତ୍ର ନିଜ ବାଡ଼ିରୁ ସେ ବାଡ଼ିକୁ ଯିବାକୁ ବାଟ ନାହିଁ । ମଝିରେ ଲୋକାଦାଶ ବାଡ଼ି । ସେ ଟିକିଏ ସ୍ୱଚ୍ଛଳ । ଅନ୍ତତଃ ସମନ ଦାଶ ପରି ଗରିବ ନୁହେଁ । ଗରଜ ନାହିଁ ତାର ବାଡ଼ି ବିକିବାକୁ । ବହୁତ କୁହାପୋଛା କରି ଉଚ୍ଚଦରର ପ୍ରଲୋଭନ ଦେଖାଇ ଲୋକାଦାଶ ଠାରୁ ଦୁଇଗୁଣ୍ଠ ଜାଗାବାଡ଼ି କିଣାଗଲା । ବାଡ଼ି ଭିତରେ ଥାଏ ବାଉଁଶ ବୁଦା । ଘର ସାମନେ ପଞ୍ଚୁ ପଣ୍ଡା ଘରବାଡ଼ି । ଲକ୍ଷ୍ମଣବାବୁଙ୍କ ବାଡ଼ିକୁ ଲାଗିଛି । ଘରମାଲିକଙ୍କୁ ପଟାପଟି କରି ଚଢ଼ା ଦରରେ ସେ ବାଡ଼ି ଖଣ୍ଡିକ ମଧ୍ୟ ହସ୍ତଗତ କରାଗଲା । ବର୍ତ୍ତମାନ ଘରକରିବାକୁ ଓ ଚଳପ୍ରଚଳ ହେବା ପାଇଁ ଯଥେଷ୍ଟ ଜାଗାବାଡ଼ି ।

ଜମି, ପୁଣି ଜାଗାବାଡ଼ି, ଅନ୍ୟଠାରୁ ଆହରଣ କରିବା ପାଇଁ ଅନେକ କଷ୍ଟ, ଉଭୟ ମାନସିକ ଓ ଆର୍ଥିକ, ସହିବାକୁ ପଡ଼ିଥିଲା ଲକ୍ଷ୍ମଣବାବୁଙ୍କୁ । ବେଳେ ବେଳେ ମନଭିତରେ ଏକ ଅପରାଧବୋଧ ଜାଗୁଥାଏ ! ଅଭାବ ଅସୁବିଧାର ସୁଯୋଗ ନେଇ ଜମି ବିକ୍ରେତାକୁ ସେ ଶୋଷଣ କରୁଛନ୍ତି କି ? ଜମି, ବିଶେଷତଃ ଘରବାଡ଼ି ପ୍ରତି ଗାଁ ଲୋକଙ୍କ କେତେଯେ ପ୍ରଗାଢ଼ ମମତା ! ଟଙ୍କା ଲୋଭରେ ହେଉ ବା ପରିବାରର ଗୁଜୁରାଣ ମେଣ୍ଟାଇବାର ବାଧ୍ୟବାଧକତାରେ ଜାଗାବାଡ଼ି ହସ୍ତାନ୍ତର କରୁଥିଲାବେଳେ କି ଗଭୀର ଦୁଃଖ ଓ ସାମାଜିକ ଲଜ୍ଜା ଆପମାନ ବିକ୍ରେତା ଅନୁଭବ କରୁନଥିବ ! ସ୍ୱଭାବତଃ ସମ୍ବେଦନଶୀଳ ସାମ୍ୟବାଦୀ ଚିନ୍ତାଧାରାର ବଶୀଭୂତ ଲକ୍ଷ୍ମଣବାବୁଙ୍କ ମନକୁ ଏହି ଉପଲବ୍ଧି ବେଳେ ବେଳେ ଦଂଶନ କରୁଥାଏ । ପର ମୂହୂର୍ତ୍ତରେ ନିଜ ପରିବାର, ଯୌଥ ପରିବାରର ସ୍ୱଚ୍ଛନ୍ଦ ଚଳାଚଳ ଓ ତାର ସାମାଜିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ପ୍ରବଳ ଆଗ୍ରହ ତାଙ୍କ ମନରୁ ଏ ଗ୍ଲାନି ପୋଛି ଦେଉଥାଏ ।

ଅର୍ବାନ କୋ ଅପରେଟିଭ ବ୍ୟାଙ୍କ ଋଣ ଆଣି ଘର ତିଆରି ଆରମ୍ଭ କଲେ ଲକ୍ଷ୍ମଣ ବାବୁ ନିଜ ଜନ୍ମମାଟି ନହଙ୍ଗରାରେ । ବାହାନଗାରୁ ରେଳ ଲାଇନ କଡ଼େ କଡ଼େ ଛଅ ମାଇଲ୍ ପ୍ରତ୍ୟେକଦିନ ସକାଳୁ ଚାଲିଚାଲି ଯାନ୍ତି ନହଙ୍ଗରା, ଘର ତିଆରିର ପ୍ରାରମ୍ଭିକ କାମ ତଦାରଖ୍ କରି ନିଜେ ମଧ ଶାରୀରିକ ପରିଶ୍ରମ କରି ସଂଧ୍ୟା ଟ୍ରେନରେ ବାହାନଗା ଫେରିଆସନ୍ତି । ରାତି ୧୦ଟାରୁ ସକାଳ ଛଟା ପର୍ଯ୍ୟନ୍ତ ରେଳଡ଼ିଉଟି କରନ୍ତି, ପ୍ରାୟ ଗୋଟିଏ ବର୍ଷ ଏହିପରି କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । କ୍ଲାନ୍ତଶ୍ରାନ୍ତ ସ୍ୱାମୀଙ୍କୁ ଦେଖି ଛବିରାଣୀ ଦୁଃଖିତ ହୁଅନ୍ତି "କାହିଁକି ଏତେ ପରିଶ୍ରମ କରୁଛ ?" କହନ୍ତି । ଉତ୍ତର ମିଳେ "ତୁମ ପିଲାଙ୍କ ପାଇଁ ପରା ଆମେ ବାସଘର ତିଆରି କରୁଛୁ ।" ସନ୍ତାନସମ୍ଭବା ଛବିରାଣୀ ଲାଜେଇ ରୋଷେଇଘରକୁ ଚାଲିଯା'ନ୍ତି । ହସିହସି ଆଣି ଦିଅନ୍ତି କଡ଼ା ଚା ଓ ବିସ୍କୁଟ୍ କିମ୍ବା ପିଠାକାକରା । ଦିନ

ସାରା ପରିଶ୍ରମରେ ଥକିଯାଇଥିବା ଦେହରେ ନୂଆ ପ୍ରାଣ ସଞ୍ଚାର ହୁଏ । ସ୍ତ୍ରୀ ପଚାରନ୍ତି "କାମ ଭିତରେ କିଛି ଖାଉଥିଲ ନା ?" । "ହଁ ନୂଆ ଭାଉଜଙ୍କ ତିଆରି ସୁନ୍ଦର ଚା, ରନ୍ଧାଭାତ" "ହଁ, ନୂଆ ତ, ନିଜେ ଛାଡିଦେଇଛ ବଡଭାଇଙ୍କ ହାତରେ, ତାଙ୍କ ଚା, ତରକାରୀ ସୁନ୍ଦର ହେବନି ?" ଈର୍ଷା ଅଭିମାନ ମିଶା ସ୍ୱରରେ ପରିହାସ କରି କହିଲେ ସ୍ତ୍ରୀ । ଶାନ୍ତ କରିବା ପାଇଁ ସଙ୍ଗେ ସଙ୍ଗେ ଲକ୍ଷ୍ମଣ ବାବୁ ଉତ୍ତର ଦିଅନ୍ତି "ସୁନ୍ଦର ଯେ, କିନ୍ତୁ ତୁମଠାରୁ ସୁନ୍ଦରତର ନୁହେଁ" ମୁରୁକି ହସି ରୋଷେଇ କରିବାକୁ ଚାଲିଯାଆନ୍ତି ଛବିରାଣୀ ।

ଗାଁର ପଦୁ ପଧାନର ଠିକାଦାରୀ ଓ ସାହାଯ୍ୟରେ ଅକ୍ଳାନ୍ତ ପରିଶ୍ରମ ଓ ସାଧ୍ୟାତୀତ ଅର୍ଥ ବ୍ୟୟରେ ଆଠ ଦଶ ମାସ ଭିତରେ ଗଢାହେଲା ପ୍ରଶସ୍ତ ଏକ ନୂଆଘର । ଲୋକା ଦାଶ ଠାରୁ କିଣାଯାଇଥିବା ବାଡିର ବାଉଁଶ ବୁଦା କଟା ଯାଇ ଘରର ପରିସର ପ୍ରଶସ୍ତ କରାଯାଇଥିଲା । ଘର ତିଆରିରେ ବଡଭାଇଙ୍କ ସହଯୋଗ ଥିଲା ଶୂନ । ନାଁ ଶ୍ରମରେ ନାଁ ଅର୍ଥରେ ସେ ସାହାଯ୍ୟ କରିଥିଲେ । ଭାଇ ପ୍ରତିଦିନ ସକାଳୁ ରେଲରେ ଚୋରା ଚାଉଳ ବେପାର କରି ଯାଆନ୍ତି । ରାତିରେ ଫେରନ୍ତି । ସେ ବର୍ଷ ବଙ୍ଗଳାକୁ ବାତ୍ୟା ମରୁଡି ଭୀଷଣ ରୂପେ ଆକ୍ରାନ୍ତ କରିଥାଏ । ରାଜ୍ୟରେ ଉତ୍କଟ ଖାଦ୍ୟାଭାବ । ଖଡଗପୁର କଲିକତା ସହରର ଅଧିବାସୀମାନେ ହନ୍ତସନ୍ତ । ପଇସା ଥିଲେ ବି ଖାଦ୍ୟ ମିଳେନା । ଓଡିଶାରୁ ରେଳରେ ଚୋରା ଚାଉଳ ବେପାର କରି ଅନେକ ଲୋକ ବେଶ୍ ଦି ପଇସା ରୋଜଗାର କରୁଥାନ୍ତି । ଲକ୍ଷ୍ମଣବାବୁଙ୍କ ଭାଇଙ୍କର ଦୁର୍ଭାଗ୍ୟ । ବାରମ୍ବାର ଚୋରି ଓ ପୁଲିସ ଧରାଯୋଗୁ ବିଶେଷ କିଛି ଲାଭ ହେଉନଥାଏ ।

ଜ୍ୟେଷ୍ଠମାସ । ବାସଗୃହ ନିର୍ମାଣ ଶେଷ, ଛପର ପଡିଲାଣି । କୋଠା ବିଛା ସରିଲାଣି । ଭାଇ ଆସି ରହିଲେ ନୂଆ ଘରେ । ପ୍ରଥମ ସ୍ତ୍ରୀ ମରିଯାଇଥିଲା ନିଃସନ୍ତାନ ଥାଇ । ନୂଆଘର, ନୂଆ ଦ୍ୱିତୀୟ ସ୍ତ୍ରୀ, ଶୁଭଙ୍କରୀ ଏହି ନୂଆଘର ଆଣିଦେଲା ଭାଇଭାଉଜଙ୍କୁ ପୁଅଝିଅ । ଚାଷବାସ କରି ରହିଲେ ଆନନ୍ଦରେ । ନୂଆଘର, ଜମିଜମା ଉପରେ ବଢିଚାଲିଲା ଭାଇଙ୍କର ଅଦଉତି । ଚିରପ୍ରବାସୀ, ଚାକିରିଆ, ଲକ୍ଷ୍ମଣବାବୁ ଚିରଦିନ ରହିଗଲେ ଘରଠାରୁ ଦୂରରେ । ବର୍ଷକେ ଥରେ ଅଧେ ଆସନ୍ତି ଜନ୍ମମାଟିକୁ । ଅତିଥି ଭଳି ଦିନେ ଦୁଇଦିନ ରହି ଫେରି ଯାଆନ୍ତି କର୍ମସ୍ଥଳୀକୁ । ଟିକିଏ ଅବଶୋଷ ନଥିଲା ତାଙ୍କ ମନରେ । ନିଜର ଜନ୍ମମାଟିର ପୂର୍ବପୁରୁଷଙ୍କ ସ୍ମୃତିଭିଜା ମାଟି ଉପରେ ନୂତନ ଘରଟିଏ କରିବାର ଇଚ୍ଛା ପୂର୍ଣ୍ଣ ହୋଇଥିଲା, ମିଳିଥିଲା ଉପଯୁକ୍ତ ଦାୟାଦ ହେବାର କିଛିଟା ଆନନ୍ଦ ଓ ଗର୍ବ । ଏହାହିଁ ଯଥେଷ୍ଟ ।

କିଛି ବର୍ଷ ପରେ ବଡଭାଇଙ୍କ ସଂପ୍ରସାରିତ ପରିବାର ସହିତ ତାଙ୍କ ନିର୍ମିତ ଘରେ ନିଜର ବର୍ତ୍ତମାନ ପରିବାର ଏକ ସଙ୍ଗେ ରହିବା ଅସୁବିଧା ଅନୁଭବ କରି ଲକ୍ଷ୍ମଣବାବୁ ଖଡାପଡା ଷ୍ଟେସନ ପାଖ ଘର ବାଡିଟା (ପୈତୃକ ସମ୍ପତ୍ତି) ନେଇ ନିଜ ପରିବାରର ନିମିତ୍ତ ଏକ ସ୍ୱତନ୍ତ୍ର ଘର କରିବାକୁ ଚାହିଁଥିଲେ। ଷ୍ଟେସନ ପାଖ ଯାଗାରେ ଦୋକାନ କରିବା ଲୋଭ ହେତୁ ବଡଭାଇ ଏ ଯାଗାଟି ଦେବାକୁ ଅରାଜି ହୋଇଥିଲେ । ବଡ ଭାଇଙ୍କ ସହ ଜମିବାଡି ପାଇଁ ମନୋମାଳିନ୍ୟ ବା କଳିତକରାଳ କରିବା

ଲକ୍ଷ୍ମଣବାବୁଙ୍କ ସ୍ୱଭାବ ବିରୁଦ୍ଧ ଥିଲା । ଜନ୍ମମାଟି ଖନ୍ତାପଡାରେ ଶେଷ ଜୀବନ କାଟିବାର ଇଚ୍ଛା ଅପୂର୍ଣ୍ଣ ରହିଗଲା ।

(ଦଶ)

"ଭର୍ତ୍ତୁ ବିପ୍ରକୃତାପ, ରୋଷଣ ତୟା ମାସ୍ମ ପ୍ରତୀପଂ ଗମଃ
ଭୂୟିଷ୍ଠଂ ଭବ ଦକ୍ଷିଣା ପରିଜନେ, ଭୋଗା ଷ୍ୱନୁତ୍ ସେକିନୀ"

(କାଳିଦାସ)

(ସ୍ୱାମୀ ଅବହେଳା କଲେ ମଧ୍ୟ ତୁ ରାଗିଯାଇ ପ୍ରତିକୂଳ ଆଚରଣ କରିବୁ ନାହିଁ । ପରିଜନ ମାନଙ୍କ ପ୍ରତି ଉଦାର ଭାବ ଦେଖାଇବୁ, ସୌଭାଗ୍ୟରେ ଗର୍ବିତା ହେବୁ ନି)

ସୁଖଦୁଃଖର ଜୀବନସଂଗିନୀ ଛବିରାଣୀ ହାସ୍ୟମୟୀ ଆହ୍ଲାଦିନୀ ଅତିଥିପରାୟଣା । ଲକ୍ଷ୍ମଣବାବୁଙ୍କ ସ୍ୱପ୍ନ ତିଆରି ନୂତନ ଘରେ ସୁଯୋଗ ପାଉନାହାନ୍ତି ମନଭରି କିଛିଦିନ ରହିବାକୁ । ସ୍ୱାମୀଙ୍କର ତ ବାହାନଗା ଷ୍ଟେସନରେ ସବୁଦିନ ଡିଉଟି । ପରିଚୟ ସୁଖ୍ୟାତି ବଢ଼ିବା ସଙ୍ଗେ ସଙ୍ଗେ ପ୍ରିୟ ପରିଜନ ଅତିଥି ଅଭ୍ୟାଗତ ଯିବା ଆସିବା ସଦାସର୍ବଦା । କେତେବେଳେ ଏ ସବୁ ଧନ୍ଦା ଛାଡି ନିଶ୍ଚିନ୍ତରେ କିଛି ଦିନ ବିଶ୍ରାମ ନେବାକୁ ଯିବେ ନହଞ୍ଜରା ଗାଁ ଘରକୁ ?

ବାହାନଗା, ବି.ଏନ୍.ଆର୍. ଛୋଟ ଷ୍ଟେସନ, ଯାତ୍ରୀମାନଙ୍କ ବସିବା ପାଇଁ ନଥାଏ ଚେୟାର ବେଞ୍ଚ । ଷ୍ଟେସନ ପିଣ୍ଡାରେ ପଡିଥାଏ ଖଣ୍ଡିଏ ବେଞ୍ଚ, ସେଟା ପୁଣି ଷ୍ଟେସନ ମାଷ୍ଟର ବାବୁଙ୍କର । ଷ୍ଟେସନ ମାଷ୍ଟର ଲକ୍ଷ୍ମଣବାବୁ ସ୍ଥାନୀୟ ଲୋକ, ସମସ୍ତଙ୍କର ପ୍ରିୟ । ଅଞ୍ଚଳର ଭଦ୍ର ଲୋକମାନେ ଆକୃଷ୍ଟ ହୋଇ ତାଙ୍କ ପାଖକୁ ଆସନ୍ତି । ଗାଡି ଆସିବା ବିଳମ୍ବ ଥିଲେ ସେହି ବେଞ୍ଚରେ ବସିବାକୁ ଷ୍ଟେସନମାଷ୍ଟର କୁହନ୍ତି । ଯାତ୍ରୀ କୃତଃକୃତଃ । ଆତ୍ମୀୟତା ବଢିଯାଏ ଯାତ୍ରୀ ଓ ଷ୍ଟେସନ ମାଷ୍ଟରଙ୍କ ଭିତରେ । ବୟସ୍କ ଏବଂ ଅଞ୍ଚଳର ସମ୍ମାନାସ୍ପଦ ଲୋକ ହୋଇଥିଲେ ଲକ୍ଷ୍ମଣବାବୁଙ୍କ ଇଙ୍ଗିତରେ ଘରୁ ସ୍ତ୍ରୀ ଛବିରାଣୀ ପଠାଇଦିଅନ୍ତି ଚା, ସରବତ । ସନ୍ଧ୍ୟା ସମୟରେ, ବାବୁଙ୍କର ଚା ପିଇବା ବେଳେ ଅନ୍ୟ କେହି ଲୋକ ତାଙ୍କ ସହ ଗପସପ କରୁଥିଲେ ବିନା ନିର୍ଦ୍ଦେଶରେ ମଧ୍ୟ ଆସିଯାଏ ଚା' ପାନ । ପ୍ରଶଂସା ଅଜାଡି ପଡେ ବାବୁ, ବାବୁଆଣୀଙ୍କ ପ୍ରତି ।

ଦିନ ଗଡିଚାଲେ । ଦିନେ ସୋରୋ-ମଙ୍ଗଳପୁରର ଜନୈକ ଜମିଦାର ଅପେକ୍ଷା କରିଥାନ୍ତି ବାହାନଗା ଷ୍ଟେସନରେ ବାଲେଶ୍ୱର ଯିବାପାଇଁ ଗାଡିକୁ । ଗାଡି ଆସିବା ବିଳମ୍ବ ଅଛି । ବେଞ୍ଚ ଉପରେ ବସାଇ ଲକ୍ଷ୍ମଣବାବୁ ତାଙ୍କ ସହ ଦୁଃଖସୁଖ କଥାବାର୍ତ୍ତା ହେଲେ । ଘରଦ୍ୱାର ଜମିବାଡି କଥା ପଡିଲା । ପରିଚିତ ଲୋକ । କଥା ପ୍ରସଙ୍ଗରେ ଭୂୟାଂ ବାବୁ କହିଲେ "ବଡ ଗାଁ ଉତ୍ତର ପଟେ ଗାଁ ପାଖରେ ଏଗାର ଏକର ଜମି ଅଛି । ଗାଁକୁ ଲାଗି କରି ଗୋଟେ ଚକ ପାଞ୍ଚମାଣ, ଟିକିଏ ଦୂରରେ ଉତ୍ତରପଟେ ଆଉ ଏକ ଚକ, ଛଅ ମାଣ । ବିକ୍ରି କବଲା ହୋଇ ପାରିବ ନାହିଁ କିନ୍ତୁ ଇସ୍ତମରାରୀ ପଟ୍ଟା ହୋଇ

ପାରିବ । ଜମିଦାରୀ ଉଚ୍ଛେଦ ପରେ ସରକାର ନିଜ ଚାଷ ଜମିକୁ ବିକ୍ରି କରିବାକୁ ବାରଣ କରିଛନ୍ତି । କିନ୍ତୁ ଜମିଦାର ଚିରଦିନ ପାଇଁ ପଟ୍ଟା ଦେଇ ପାରିବ । ସମସ୍ତ ଜମିର ମୂଲ୍ୟ ସତର ଶହ ପଚାଶ ଟଙ୍କା । ଏକାବେଳେକେ ନେବେ। ''ଆପଣ ରଖିବେ କି ? ପଚାରିଲେ ଭୂୟାଂ ବାବୁ । ଲକ୍ଷ୍ମଣବାବୁ କହିଲେ ''ହାତଲେଖା କାଗଜପତ୍ର ମୁଁ ନେବି ନାହିଁ, ଚିରସ୍ଥାୟୀ ପଟ୍ଟା ରେଜେଷ୍ଟ୍ରୀ କରି ଦେଲେ ଜମି ନେବାକୁ ରାଜି'' । ଜମିଦାର ମହାଶୟ ରାଜି ହେଲେ । ସମସ୍ୟା ହେଲା, ଏତେ ଟଙ୍କା କେଉଁଠୁ ଆସିବ ? ସ୍ତ୍ରୀ ଅଣି ଦୋଅଣି ଆଦି ସଞ୍ଚୟ କରି ପ୍ରାୟ ଦୁଇଶହ ଟଙ୍କା ରଖିଥିଲେ । ଅକୁଣ୍ଠିତ ଚିତ୍ତରେ ସେତକ ସେ ଦେଇଦେଲେ । ବାକି ଶ୍ୱଶୁର ଘରର ବିଶ୍ୱସ୍ତ ପଡୋଶୀ ଋଣ ଆକାରରେ ଦେବାକୁ ରାଜି ହେଲେ । ପଡୋଶୀ ଉଜମନ ସିଂ କେବଳ ଟଙ୍କା ଦେଲେ ନାହିଁ । ଲକ୍ଷ୍ମଣବାବୁଙ୍କ ସଙ୍ଗରେ ନେଇ ସୋରୋ ଷ୍ଟେସନରୁ ମଙ୍ଗଳପୁର ଭୂୟାଂ କଚେରୀକୁ ପାଦରେ ଚାଲିଚାଲି ଯାଇ ପଟ୍ଟା ରେଜିଷ୍ଟ୍ରୀ କରିବାଦିନ ସ୍ଥିର କରିଦେଲେ । ସ୍ଥିରୀକୃତ ଦିନରେ ସମସ୍ତ ଟଙ୍କା ଗାମୁଛାରେ ବାନ୍ଧି ନେଇ ରେଜିଷ୍ଟ୍ରୀ ହେଲା । ଶ୍ୱଳା କୃଷ୍ଣମୋହନଙ୍କ ଦାୟିତ୍ୱରେ ଜମି ବଖରା ଚାଷର ବ୍ୟବସ୍ଥା ଲାଗୁରହିଲା ପ୍ରାୟ ଦଶବର୍ଷ । ଧୀରେ ଧୀରେ ଅର୍ଜୁନ ସିଂଙ୍କ ଋଣ ପରିଶୋଧ ହୋଇଗଲା । ଏତେଗୁଡିଏ ଜମିର ମାଲିକ ହେବାର ଗୌରବ ଅନୁଭବ କରୁଥିଲେ ଲକ୍ଷ୍ମଣବାବୁ । ମାତ୍ର ଜମିରୁ ଆଶାନୁରୂପ ଫସଲ ପାଉନାହାନ୍ତି । ଭାଗଚାଷ, ପୁଣି ଦୂରରେ ମାଲିକ । ଚାଷୀ ନିଜର ବିବେଚନାରେ ଯାହା ଦେବ ।

ଭୂମିକନ୍ୟା ଭାଗ୍ୟେ ପ୍ରାପ୍ତି । ସୁନ୍ଦରୀ ସ୍ନେହମୟୀ ସ୍ତ୍ରୀ ପାଇଥିଲେ, ପାଇଲେ ଏକଯାଗାରେ ଏତେଗୁଡିଏ ଜମି, ଶସ୍ତା ଓ ସୁବିଧାରେ । ନିଜ ଜନ୍ମମାଟି ନହଞ୍ଜରା ନୂଆଘରେ ନିଜେ ସସ୍ତ୍ରୀକ ସିନା ରହିପାରିଲେ ନାହିଁ । ଉତ୍ତର ଦାୟାଦ ପାଇଁ ଘର କରୁଛନ୍ତି ବୋଲି ଯାହା ସେ ପରିହାସରେ ସ୍ତ୍ରୀଙ୍କୁ କହିଥିଲେ ତାର ସମ୍ଭାବନା ଉଜ୍ଜ୍ୱଳ କରି ଦେଇଥିଲେ ଛବିରାଣୀ । ଅଳ୍ପ ସମୟ ବ୍ୟବଧାନରେ ଦୁଇଟି ପୁଅ ଓ ଦୁଇଟି ଝିଅର ମାଆ ହୋଇ ସେ ନିଜ ଦେହକୁ କ୍ଷୀଣ କରିଦେଇଥିଲେ । ଦୁର୍ବଳତା କ୍ରମଶଃ ବଢିଚାଲିଲା, ରୁଗ୍ଣଶରୀର, ରକ୍ତଶୂନ୍ୟତା, ସ୍ଥାନୀୟ ସମସ୍ତ ପ୍ରକାର ଚିକିତ୍ସା ନିଷ୍ଫଳ । ଅନନ୍ୟୋପାୟହୋଇ ଲକ୍ଷ୍ମଣବାବୁ ସ୍ତ୍ରୀଙ୍କୁ ନେଇଗଲେ କଟକ ବଡଡାକ୍ତରଖାନାକୁ ।

ଦୀର୍ଘ ୧୦ ବର୍ଷର ସଂସାର ବାହାନଗା ଷ୍ଟେସନ୍ କ୍ୱାଟରରେ, ବିବାହିତ ଜୀବନର ରୋମାଞ୍ଚକରଦିନ, ମାତୃତ୍ୱର ଅମୃତମୟୀ ଆସ୍ୱାଦନ ମିଳିଛି ଏହି ବସାରେ । ହର୍ଷଆନନ୍ଦ ପ୍ରଶଂସାର ମଧୁବାତା ପୁଲକ ଭରିଦେଇଥିଲା ଏହିଘରେ । ସେହିଘରୁ ଆଜି ନିସ୍ତେଜ ଶରୀରରେ ଆଶଙ୍କାଭରା ମନରେ ଯାଉଛନ୍ତି କଟକ ଚିକିତ୍ସା ପାଇଁ । ଆଉ ଫେରିବେ କି ନାହିଁ ଭଗବାନ ଜାଣନ୍ତି । ବଡପୁଅ ଓ ବଡଝିଅ ବିଷାଦମୟ ପରିବେଶକୁ ଅନୁଭବ କରି କଇଁ କଇଁ କାନ୍ଦୁଛନ୍ତି, ସାନପୁଅ ସୁରକ୍ଷିତ, ସାନଝିଅ ସସ୍ମିତା ଅବସ୍ଥାର ଗୁରୁତ୍ୱ ବୁଝିପାରୁନାହାନ୍ତି । ବଡଭାଇ ଓ ନାନୀଙ୍କ କାନ୍ଦଣା ଦେଖି କାନ୍ଦୁରା କାନ୍ଦୁରା ମୁହଁରେ ବିସ୍ମୟଭରା ଚକ୍ଷୁରେ ଚାହିଁ ରହିଛନ୍ତି । ପୁରୀ ପାସେଞ୍ଜର ଟ୍ରେନ୍ ଆସିବା ଘଣ୍ଟି ବାଜିଲାଣି । ଏ ଅଂଚଳର ଆଦରର ଝିଅ ଛବି, ଅତିପ୍ରିୟ ଷ୍ଟେସନ ବାବୁଆଣୀ, କଟକ ଯିବେ ଚିକିତ୍ସା ପାଇଁ, ରୋଗ

ନିଷ୍ପୟ ସାଂଘାତିକ । ଶୁଭମନାସିବାକୁ ଏବଂ ଆଶୀର୍ବାଦ ଦେବାକୁ ଆସିଛନ୍ତି ପ୍ରିୟ ପରିଜନ ସାଙ୍ଗସାଥୀ । ପୁରୀ ପାସେଞ୍ଜର ଆସି ପହଞ୍ଚିଗଲାଣି । ଭାଇ କୃଷ୍ଣମୋହନ, ନଣନ୍ଦ ରେବତୀ, ଭାଉଜ ଛବିରାଣୀଙ୍କୁ ଧରି ଡବା ପାଖକୁ ନେବାକୁ ଉଦ୍ୟତ । ରୋଗଗ୍ରସ୍ତ ମାଆ କ୍ରନ୍ଦନରତ ପିଲାଚାରିଟିଙ୍କୁ ଜାବୋଡି ଧରି କାନ୍ଦକାନ୍ଦ ସ୍ୱରରେ କହିଲେ "ଦୁଷ୍ଟ ହେବନିରେ, ପିଉସୀ ନାନୀ କଥା ମାନି ଚଳିବ । ମୁଁ ଶୀଘ୍ର ଫେରି ଆସୁଛି" । ସମବେତ ହିତୈଷୀ ନରନାରୀମାନଙ୍କୁ ଦୁର୍ବଳ ହାତଦିଟା ଯୋଡି ପ୍ରଣାମ କଲେ । ବିଦଗ୍ଧ ନୟନରେ ଚାହିଁଲେ ବସାଘର ଦ୍ୱାରକୁ । ଆଖିରୁ ଝରି ପଡିଲା ଦି ଟୋପା ଲୁହ ।

'ଘଲାପୁଟ ବାହୁଡି ନଇଲା' । କିଛି ଦିନପରେ ଜୀବନ ସଂଗିନୀକୁ କଟକରେ ବିସର୍ଜନ ଦେଇ ଲକ୍ଷ୍ମଣବାବୁ ଫେରି ଆସିଥିଲେ କର୍ମସ୍ଥଳୀ ବାହାନଗା ଷ୍ଟେସନକୁ ।

## (ଏଗାର)

"ଦୁଃଖତାପ ବ୍ୟଥିତ ଚିତ୍ତେ ନାହିଁ ଦୀ ଦିଲେ ସାନ୍ତ୍ୱନା
ଦୁଃଖଯେନ କରିତେ ପାରି ଜୟ"

ପତ୍ନୀହରା ଲକ୍ଷ୍ମଣବାବୁଙ୍କୁ ଖାଁ ଖାଁ ଲାଗୁଛି ବାହାନଗାର କ୍ୱାର୍ଟରସ୍ । ଚାରିଟି ମାଆ ଛେଉଣ୍ଡ ପିଲା । ସବା ବଡ ସାତ ବର୍ଷର ସବା ସାନ ଦେଢବର୍ଷର । ସେମାନଙ୍କର ବୋଝ ଅନେକ ସମ୍ଭାଳି ନେଇଛି ଭଉଣୀ ରେବତୀ । ନିଜେ ମଧ୍ୟ ଘରକାମରେ ଓ ପିଲାଙ୍କ ସେବାରେ ସାହାଯ୍ୟ କରନ୍ତି ଭଉଣୀକୁ । କ୍ୱାର୍ଟରସ୍‌ରେ ଛୁଆପିଲା ମିଶି ଛ ଜଣ । ତଥାପି ଲାଗୁଛି ଶୂନ୍‌ଶାନ । ଷ୍ଟେସନ ଡିଉଟି କରୁଛନ୍ତି, କିନ୍ତୁ ମନ ଲାଗୁ ନାହିଁ କାମରେ । ମନରେ ଧୈର୍ଯ୍ୟ ସାହସ ଆଣିବାକୁ ପଢୁଛନ୍ତି ଗୀତା, ସାଂସାରିକ ଚିନ୍ତାରୁ ମନଟାକୁ ଦୂରେଇ ରଖିବାକୁ ପଢୁଛନ୍ତି କମ୍ୟୁନିଜିମ୍ ଓ ସୋସାଲିଜିମ୍ ଲିଟରେଚର । ସାମ୍ୟବାଦୀ ଆନ୍ଦୋଳନ ଓ ଶ୍ରମିକ ଆନ୍ଦୋଳରେ ଲିପ୍ତ ରହି ଭୁଲିଯିବାକୁ ଚାହୁଁଛନ୍ତି ପତ୍ନୀ ବିଚ୍ଛେଦ ଜ୍ୱାଳା । ସ୍ୱାଧୀନତା ଆସି ଯାଉଛି । କଂଗ୍ରେସ ସରକାର । ଜମିଦାରୀ ଉଚ୍ଛେଦ ହୋଇଛି । ମାତ୍ର ଜମିଦାର ମାନେ ନିଜ ପରିବାର ଓ ଆତ୍ମୀୟ ସ୍ୱଜନଙ୍କ ନାମରେ ବିଭିନ୍ନ କିସମର ଜମିକୁ ଚାଷ ଜମି ରୂପେ ଦର୍ଶାଇ ନିଜ କର୍ତ୍ତୃତ୍ୱରେ ରଖୁଛନ୍ତି । ଏହି ପ୍ରକ୍ରିୟାରେ ଅନେକ ଭାଗଚାଷୀଙ୍କଠାରୁ ଜମି ଛଡାଇ ଅଣାଯାଉଛି । ବିରୋଧ କରୁଛନ୍ତି ଭାଗଚାଷୀମାନେ । ପୋଲିସ ଓ ଆଇନ ବିଭାଗ ତ ଧନୀ ଜମିଦାରଙ୍କ ହାତରେ ପୁତ୍ତଳିକା । ଭାଗଚାଷୀ ଆଇନ ହୋଇନି । ଠାବେଠାବେ ଚାଷୀମାନେ ମେଳିବାନ୍ଧି ସାହୁକାର ଜମିଦାରମାନଙ୍କୁ ବାଧା ଦେଉଛନ୍ତି । କୃଷକ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି ସୋସାଲିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ପାର୍ଟି । ହିଂସାତ୍ମକ କାର୍ଯ୍ୟାନୁଷ୍ଠାନ ମଧ୍ୟ ହେଉଛି କେଉଁଠି କେଉଁଠି । କଂଗ୍ରେସ ସରକାର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ କରିଦେଇଛନ୍ତି । ତଥାପି କମ୍ୟୁନିଷ୍ଟମାନେ ଗିରଫ ପରୱାନାକୁ ବା ଜେଲ ଦଣ୍ଡକୁ ଭ୍ରୁକ୍ଷେପ ନକରି କୃଷକ ଆନ୍ଦୋଳନକୁ ତୀବ୍ରତର କରିଛନ୍ତି ଉତ୍ତର ବାଲେଶ୍ୱରରେ । ଲକ୍ଷ୍ମଣବାବୁଙ୍କ କମ୍ୟୁନିଷ୍ଟ ସାଥୀମାନେ ତାଙ୍କ ଷ୍ଟେସନ୍ ବସାଘରକୁ ଆସନ୍ତି । ପରାମର୍ଶ କରନ୍ତି । ଦେଶର ଭବିଷ୍ୟତ, ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ବିଷୟରେ ଆଲୋଚନା ହୁଏ । ଏସବୁଥିରେ ଲିପ୍ତ ରହିଲେ ମନ ତାଙ୍କର ଟିକିଏ ଉପଶମ ଲଭେ । ହାଲୁକା ହୋଇଯାଏ ।

୧୯୪୮ ମସିହା । ଦେଶବ୍ୟାପୀ ରେଳ ଧର୍ମଘଟ । ମାସାଧିକ କାଳ ରେଳ କର୍ମଚାରୀମାନେ କାର୍ଯ୍ୟ ବନ୍ଦ କଲେ । ଧର୍ମଘଟର ପୋଷ୍ଟର ଖଣ୍ଡେ କିଏ ମାରିଦେଲା ବାହାନଗା ଷ୍ଟେସନ ମୁସାଫିରଖାନାରେ । କର୍ତ୍ତୃପକ୍ଷଙ୍କ ସନ୍ଦେହ ଦୃଷ୍ଟିରେ ପଡିଲେ ଷ୍ଟେସନମାଷ୍ଟର ଲକ୍ଷ୍ମଣବାବୁ । କମ୍ୟୁନିଷ୍ଟ ବୋଲି ତାଙ୍କୁ ସନ୍ଦେହ କଲେ କର୍ତ୍ତୃପକ୍ଷ । ମାତ୍ର କିଛି ପ୍ରମାଣ ପାଇଲେ ନାହିଁ । ତଥାପି ବଦଳି କରିଦେଲେ ମାର୍କୋଣା ଷ୍ଟେସନକୁ । କୌଣସି ବିପଦ ଏକୁଟିଆ ଆସେନା । ଅଳ୍ପ କିଛି ଦିନ ମାର୍କୋଣା ଷ୍ଟେସନରେ କାମ କରିଛନ୍ତି । ଅଗଷ୍ଟ ୧୫ ତାରିଖରେ ଅନ୍ୟ ଜଣକ ଛୁଟିରେ, ଡିଉଟି କରୁଛନ୍ତି । ଏକ 'ବନ୍ଧୁକ' ଥିବା ପାର୍ଶଲକୁ ଷ୍ଟେସନରେ ଗାଡି ପହଞ୍ଚିବା ପୂର୍ବରୁ ବାଟରେ କିଏ ଓହ୍ଲାଇ ନେଇଗଲା । ଅସ୍ତ୍ରଶସ୍ତ୍ର ପାର୍ଶଲ ଚୋରି । ଲକ୍ଷ୍ମଣବାବୁଙ୍କୁ ଏଥିପାଇଁ ସିଧାସଳଖ ଦାୟୀ ନକଲେ ମଧ୍ୟ ସନ୍ଦେହର ଘେରରେ ରଖିଲେ । ପୁଲିସ ତଦନ୍ତସାରେ କ'ଣ ରିପୋର୍ଟ ଦେଲା । ଲକ୍ଷ୍ମଣବାବୁଙ୍କୁ ଉପକୂଳ ଅଞ୍ଚଳରେ ଅବସ୍ଥାପିତ କରିବା ନିଷେଧ କରାଗଲା । ତାଙ୍କୁ କର୍ତ୍ତୃପକ୍ଷ ବଦଳି କରିଦେଲେ ଟିଟିଲାଗଡକୁ । ରିଲିଭିଂ ସହକାରୀ ଷ୍ଟେସନ ମାଷ୍ଟର ଭାବେ ।

ଛୋଟଛୋଟ ଛୁଆଙ୍କ ଯତ୍ନ ଓ ସେମାନଙ୍କ ଭବିଷ୍ୟତ ଚିନ୍ତା କରି ଅନ୍ତରଙ୍ଗ ବନ୍ଧୁମାନେ ଲକ୍ଷ୍ମଣବାବୁଙ୍କୁ ଦ୍ୱିତୀୟ ବିବାହ କରିବାକୁ ପରାମର୍ଶ ଦେଲେ । ସାବତ ମାଆର ଅତ୍ୟାଚାର ଲୋକାପବାଦ ତଥା ଆଶଙ୍କା ତାଙ୍କୁ ସତର୍କ କରିଦେଉଥାଏ । ସ୍ତ୍ରୀ ଛବିରାଣୀର ମଧୁର ସ୍ମୃତି ମଧ୍ୟ ମନରୁ ଯାଉ ନଥାଏ । ଲକ୍ଷ୍ମଣବାବୁ ଦ୍ୱନ୍ଦରେ । ଠିକ୍ କରିପାରୁନଥାନ୍ତି ଦ୍ୱିତୀୟ ବିବାହ କରିବେ କି ନାହିଁ । ବନ୍ଧୁ କୃଷ୍ଣମୋହନ ବାବୁ ଅନେକ ବୁଝାଇଲେ, ନିଜର ସମ୍ପର୍କୀୟ ଏକ ଭଉଣୀକୁ ବିବାହ କଲେ ସେ ପିଲାମାନଙ୍କୁ ନିଜର ସନ୍ତାନ ରୂପେ ଗ୍ରହଣ କରିନେବ ବୋଲି ଯୁକ୍ତି ବାଢିଲେ । ମାଆ ଅଧା ମାଉସୀ । ଝିଅଟି କାଳେ ଶାନ୍ତସୁନ୍ଦର ସରଳ ନିଷ୍କପଟ । ତାଙ୍କ କଥାରେ ବିଶ୍ୱାସ କରି ଦ୍ୱିତୀୟ ପତ୍ନୀ ଗ୍ରହଣ କଲେ ଲକ୍ଷ୍ମଣବାବୁ । ନୂତନ ସାଥୀ ସବିତା ପ୍ରକୃତରେ ସରଳ ନିଷ୍କପଟ ସ୍ନେହୀ ।

ରିଲିଭିଂ ଷ୍ଟେସନ ମାଷ୍ଟର ରୂପେ ବଦଳି । ହେଡକ୍ୱାର୍ଟରସ ଟିଟିଲାଗଡ । ପୂର୍ବତନ ଗଡଜାତ ବଲାଙ୍ଗୀର କଳାହାଣ୍ଡି ଜିଲ୍ଲାର ମିଳନ ବିନ୍ଦୁରେ । ନୂଆ ସ୍ତ୍ରୀ, ପିଲା ଓ ଭଉଣୀକୁ ନେଇ ଚାଲିଲେ ଟିଟିଲାଗଡ । ପରିବାର ରହିଲେ ସେଠାରେ । କ୍ୱାର୍ଟରସ୍ ନାହିଁ, ଭଡାଘର, ଭଠା ପାଇଖାନା, ଚଳିବାକୁ ଅସୁବିଧା । ସେ ଅଞ୍ଚଳର ବିଭିନ୍ନ ରେଳଷ୍ଟେସନର ଅଫିସର ଛୁଟି ନେଲେ ତା ସ୍ଥାନରେ ଡିଉଟି । ପରିବାରକୁ ଟିଟିଲାଗଡରେ ଛାଡି ଏକଲା ଡିଉଟି କରିବାକୁ ଯିବାକୁ ପଡେ । ସବାସାନ ଝିଅଟି ତାଙ୍କର ଅତି ଆଦରର । ସେ ବାପାଙ୍କୁ ଦଣ୍ଡେ ନଦେଖିଲେ କାନ୍ଦେ । ଯୁଆଡେ ଯାଆନ୍ତି ଲକ୍ଷ୍ମଣବାବୁ ସଙ୍ଗରେ ନିଅନ୍ତି ଏହି ଝିଅଟିକୁ । ଦୂର ପ୍ରବାସୀ ବାରବୁଲା ଜୀବନରେ ଝିଅଟିର ଖଣ୍ଡି ଖଣ୍ଡି କଅଁଳ କଥା ଓ ମମତାମୟ ସାହଚର୍ଯ୍ୟ ବେଶ୍ କିଛି ଆନନ୍ଦ ଦିଏ । ପଶ୍ଚିମ ଓଡିଶାର ଏହିସବୁ କର୍ମସ୍ଥଳୀରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ କେହି ନଥିଲେ । ସମୟ ବିତିଯାଏ ଡିଉଟି ଛଡା ବହିପତ୍ର ପଢାପଢିରେ, ଟ୍ରେଡ ୟୁନିୟନ କାମରେ । ଏ.ଆଇ.ଟି.ୟୁ.ସି.ର ତୁଙ୍ଗ ନେତା ପ୍ରଖ୍ୟାତ କମ୍ୟୁନିଷ୍ଟ କମ୍ରେଡ ଡାଙ୍ଗେ ରେଳକର୍ମଚାରୀଙ୍କ

ଅପ୍ରତିଦ୍ୱନ୍ଦୀ ନେତା । ୧୯୪୮ର ରେଳ ଧର୍ମଘଟ ପରିଚାଳିତ ହୋଇଥିଲା ତାଙ୍କରି ନେତୃତ୍ୱରେ । ଏହା ସରକାରଙ୍କୁ ଦୋହଲାଇ ଦେଇଥିଲା । ଶ୍ରମମନ୍ତ୍ରୀ -ଆଇ.ଏନ୍.ଟି.ୟୁ.ସି.ର ପ୍ରାକ୍ତନ ସଭାପତି ସମ୍ବେଦନଶୀଳ ଭି.ଭି.ଗିରିଙ୍କ ଉଦ୍ୟମରେ ସରକାର ଧର୍ମଘଟକାରୀଙ୍କ ମଧ୍ୟରେ ଆପୋଷ ଆଲୋଚନା ହୋଇ ଧର୍ମଘଟ ପ୍ରତ୍ୟାହୃତ ହୋଇଯାଇଥିଲା । ଧର୍ମଘଟ ପରେ ରେଳକର୍ମଚାରୀମାନଙ୍କର ଆର୍ଥିକ ଅବସ୍ଥା ଓ ଚାକିରି ସର୍ତ୍ତାବଳୀରେ ପ୍ରଭୂତଃ ଉନ୍ନତି ଘଟିଛି । ତେଣୁ ରେଳକର୍ମଚାରୀମାନେ କମ୍ରେଡ ଡାଙ୍ଗେ ଓ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ ହୋଇ ପଡିଛନ୍ତି । ଲକ୍ଷ୍ମଣବାବୁଙ୍କ ପ୍ରାଣରେ ନୂଆ ଉଦ୍ଦୀପନା ଓ ପ୍ରତ୍ୟୟ ଜାଗିଛି । ଓଡିଶା ଓ ପଡୋଶୀ ରାଜ୍ୟର ପ୍ରମୁଖ କମ୍ୟୁନିଷ୍ଟ ନେତୃବୃନ୍ଦଙ୍କ ସହ ସେ ସମ୍ପର୍କ ସ୍ଥାପନ କରିବାକୁ ଆଗ୍ରହୀ ହୋଇପଡିଛନ୍ତି । ଚିଠିପତ୍ର ଆଦାନପ୍ରଦାନରେ କେତେକଙ୍କ ସହ ନିବିଡ ସମ୍ପର୍କ ଗଢିଉଠିଛି । ପ୍ରତ୍ୟକ୍ଷ ଓ ପରୋକ୍ଷରେ ରାଜ୍ୟରେ ସାମ୍ୟବାଦୀ ଆନ୍ଦୋଳନକୁ ଆଗେଇ ନେବା ପାଇଁ ସେ ଜୀବନରେ ବ୍ରତ କରିଛନ୍ତି ।

ଦୁଃଖେ ସୁଖେ ଟିଟିଲାଗଡରେ କଟିଗଲା ପ୍ରାୟ ତିନିବର୍ଷ । ପ୍ରମୋସନ ପାଇ ଲକ୍ଷ୍ମଣବାବୁ ବଦଳି ହେଲେ ଖୋର୍ଦ୍ଧା ରୋଡକୁ ରେଷ୍ଟ ଗିଭିଂ ଅଫିସର ଭାବେ । କେତେବେଳେ କଟକ ତ କେତେବେଳେ ଭଦ୍ରଖ । ପରିବାର ଖୋର୍ଦ୍ଧାରୋଡରେ । ଅପରିଷ୍କାର, ଅତି ସଂକୀର୍ଣ୍ଣ ଭଡାଘର, ଉଠା ପାଇଖାନା । କଷ୍ଟେମଷ୍ଟେ ଚଳି ଯାନ୍ତି ପରିବାର ଲୋକେ । ଦୁଇ ବର୍ଷରେ ଖାର୍ଦ୍ଧାରୋଡରୁ ଗଙ୍ଗାଧରପୁର ଷ୍ଟେସନକୁ ବଦଳି । ସେଠାରୁ ତିନିବର୍ଷପରେ ବଦଳି ନିରାକାର ପୁରକୁ ।

ବାହାନଗାରୁ ନିରାକାରପୁର - ଦୀର୍ଘ ସାତବର୍ଷର ବ୍ୟବଧାନ । ସମୟ ଯେପରିକି ମୁଣ୍ଡଉପରେ ବୋଝ ପରି ଲଦି ହୋଇ ଯାଇଥାଏ । ନାନା ଦୁର୍ଘଟଣା । ମାନସିକ ଅଶାନ୍ତି । ଚାକିରିରେ ଅଘଟଣ ଆର୍ଥିକ ଦୁରବସ୍ଥା- ସବୁ ଭିତରେ କର୍ତ୍ତବ୍ୟର ତାଡନାରେ ଠେଲି ହୋଇ ଆଗେଇଛନ୍ତି ଲକ୍ଷ୍ମଣ ବାବୁ । ଦ୍ୱିତୀୟ ପତ୍ନୀ ଗର୍ଭରୁ ଦୁଇଟି ସନ୍ତାନ, ଗୋଟିଏ ଅତି ରୁଗ୍ଣ- ଏଥିସହ ପ୍ରଥମ ସ୍ତ୍ରୀର ଚାରିଟି ସନ୍ତାନଙ୍କୁ ନେଇ ସ୍ୱଳ୍ପବେତନଭୋଗୀ ରେଳ କର୍ମଚାରୀଟି କି ଯେ ଅଭାବ ଅନାଟନ ଭିତରେ ଜୀବନ ଯାପନ କରୁଥିବେ, ତା କେବଳ ଅନୁଭବୀମାନେ ହିଁ ଉପଲବ୍ଧି କରିପାରିବେ । ତା ସାଙ୍ଗକୁ ଘନଘନ ବଦଳି, ହେଡକ୍ୱାର୍ଟରସ ଗୋଟେ ଯାଗାରେତ ଡିଉଟି ଅନ୍ୟ ଏକ ଯାଗାରେ । ରେଳ କର୍ତ୍ତୃପକ୍ଷଙ୍କ ସନ୍ଦେହ ଦୃଷ୍ଟି, ଘୃଣ୍ୟ କମ୍ୟୁନିଷ୍ଟଙ୍କ ସମର୍ଥକ ଲକ୍ଷ୍ମଣବାବୁ । ଅବଜ୍ଞା ହତାଦର । ବିବ୍ରତ ହୁଅନ୍ତି, ମାତ୍ର ଭାଙ୍ଗି ପଡନ୍ତି ନାହିଁ। ଲକ୍ଷ୍ମଣବାବୁ ଦାସ କ୍ୟାପିଟାଲ, କମ୍ୟୁନିଷ୍ଟ ମେନିଫେଷ୍ଟୋ ବହି ଦିଟିରୁ ପାଆନ୍ତି ଅଶେଷ ପ୍ରେରଣା। ସଂଗ୍ରାମର ପ୍ରଚୋଦନା । ମାର୍କ୍ସ ଏଙ୍ଗେଲସ୍-ଲେନିନ୍‌ଙ୍କ ବୀରତ୍ୱପୂର୍ଣ୍ଣ ଚାହାଣୀର ଅଭୟ ଇଙ୍ଗିତକୁ ଦେଖି ଭୁଲି ଯାନ୍ତି ସବୁ । ବେଳେବେଳେ ଦୟା ଆସେ ରେଳର ବଡ ବଡ ଅଫିସର ଓ ସମାଜ ଓ ଶାସନର ସ୍ୱାର୍ଥନ୍ୱେଷୀ ଅହଂକାରୀ ବଡପଣ୍ଡାଙ୍କ ପ୍ରତି, ସେମାନଙ୍କର ଅଜ୍ଞତା ପ୍ରତି । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ, ସମାଜ ବିବର୍ତ୍ତନର ନିଗୂଢ ତଥ୍ୟ ଏମାନଙ୍କ ମୁଣ୍ଡରେ ପଶନ୍ତା କି, ମାର୍କ୍ସ, ଲେନିନ୍‌ଙ୍କ ସ୍ୱପ୍ନର କାଉଁରୀ ସ୍ପର୍ଶ ଏମାନଙ୍କୁ ଟିକିଏ ସ୍ପର୍ଶ କରନ୍ତା କି ? ସମାଜ ହୋଇଯାନ୍ତା ସୁନା, ''ସର୍ବେ ସୁଖୀନଃ ଭବନ୍ତୁ'' ନିଅନ୍ତା ବାସ୍ତବ ରୂପ ।

(ବାର)

'ଗରିବ ଝିଅରହେ ଚିର ବିଶ୍ୱାସୀ,
ଏଇ କଥା ଭାବି ଜୀବନ ସାଥୀ ବାଛି ନିଅ'
(ଚୀନାକବିତା)

ଚାରିଟି କନ୍ୟା ସନ୍ତାନ, ଦୁଇଟି ପୁଅ । ବଡପୁଅର ପାଠ ହୁଏ ନାହିଁ, ମୁଣ୍ଡରେ ଛିଟ୍‌କା, ଚଗଲାଟିଏ, ସାଙ୍ଗପିଲା କଥାରେ କିଛି ନ ଭାବି ଭଲମନ୍ଦ ବିଚାର ନକରି ମାତିଯାଏ । ପରକୁ କଳି ଡାକିଆଣେ । ତା ପାଇଁ ବ୍ୟସ୍ତ ହୋଇ ପଡନ୍ତି ବାପା । ହେତୁ ଆସିଯାଇଥିବା ଭଉଣୀମାନେ ବୁଝାନ୍ତି । ପିଉସୀ ନାନୀ ଅବସ୍ଥା ସମ୍ଭାଳି ନିଅନ୍ତି । ସାନପୁଅ ଭଲପାଠ ପଢେ । ଆଇ.ଏସ୍.ସି. ପଢିଲାଣି । ପରିବାରର ଭବିଷ୍ୟତ ଏହି ପିଲାଟି । ତାକୁ କେନ୍ଦ୍ରକରି ଲକ୍ଷ୍ମଣବାବୁ ସ୍ୱପ୍ନଦେଖନ୍ତି । ସମାଜରେ ପ୍ରତିଷ୍ଠିତ ହୋଇପାରିଲା ଭଳି ଉଚଶିକ୍ଷା ଦେବାକୁ ସେ ପ୍ରସ୍ତୁତ, ଦୁଃଖକଷ୍ଟ ଆଦରି ନେଇ ଚଳିବେ ପଛକେ । ଚିନ୍ତାହୁଏ ଝିଅମାନଙ୍କ ପାଇଁ, ପ୍ରଥମସ୍ତ୍ରୀର ଦିଝିଅ ସାଂଗକୁ ଦ୍ୱିତୀୟର ଦି'ଟି । ସେମାନେ ଅବଶ୍ୟ ସୁନ୍ଦର, ପାଠ ବି ଭଲ ପଢୁଛନ୍ତି । ତିନିଝିଅ ଗୋରୀ, ଗୋଟିଏ ଶ୍ୟାମଳୀ, ଗଠନ ସୁନ୍ଦର । ହେଲେ ହେଁ ଆଜିକାର ଶିକ୍ଷିତ ସମାଜର ଯେଉଁ ମନୋଭାବ, ଯୌତୁକ ବ୍ୟାଧି ଘାରିଯାଇଛି ସମାଜକୁ । ବରପିତା ଶିକ୍ଷିତ ପୁଅର ଶିକ୍ଷାପାଇଁ କରିଥିବା ଖର୍ଚ୍ଚ ସୁଧମୂଳସହ ଆଦାୟ କରିନେବାକୁ ଚାହେଁ କନ୍ୟାପିତାଠାରୁ । କନ୍ୟାର ରୂପଗୁଣ ବିଚାର ଗୌଣ । ଶିକ୍ଷାପ୍ରାପ୍ତ ଉଚଚାକିରି କରିଥିବା ତରୁଣମାନଙ୍କର ମଧ ଦୃଷ୍ଟିକୋଣ ବଦଳି ନାହିଁ । ଜୀବନସାଥୀ ହେବାର ଯୋଗ୍ୟତା ବିଚାର କରି ପାତ୍ରୀ ବାଛୁନାହାନ୍ତି । ଧନଦଉଲତ କେତେ ଶଶୁର ଘରୁ ପାଇଛନ୍ତି ଏହି ବାହାଦୁରି ଦେଖାଇବା ପାଇଁ ଉତ୍ସୁକ ।

ସଂଚୟ ତ କିଛିନାହିଁ । ପିଲାଙ୍କ ପାଠପଢା ଖର୍ଚ୍ଚ ଓ ପରିବାର ଦୈନନ୍ଦିନ ଗୁଜୁରାଣ ମେଣ୍ଟାଉ ମେଣ୍ଟାଉ ନାକେଦମ । ଚାରିଟି ଝିଅଙ୍କୁ ଭଲପାତ୍ରରେ କିପରି ଦାନ କରିବେ, ଏହି ଚିନ୍ତା ଏବେ ଲକ୍ଷ୍ମଣବାବୁଙ୍କୁ ବିବ୍ରତ କରୁଛି । ବେଳେବେଳେ ସେ ଭାବନ୍ତି ସତ୍ୟପଥରେ ଚାଲୁଥିଲେ, ଈଶ୍ୱର ଠିକ୍ ସମୟରେ ସହାୟ ହେବେ । ଗୀତାର ଉପଦେଶ 'କର୍ତ୍ତବ୍ୟ କରିଯାଅ, ଫଳ ବିଷୟରେ ଚିନ୍ତା କରନି' ମାନି ଏପର୍ଯ୍ୟନ୍ତ ଜୀବନ ନାଆ ବାହି ଆସିଲେଣି ।

ଗାଁ ଗଣ୍ଡାରେ ଡାକ୍ତରଖାନା ଖୋଲିଛି । ଅନେକ ନର୍ସ, ହେଲ୍‌ଥ ଭିଜିଟର ଦରକାର ହେବ । ଏହି ଚାକିରି ପାଇଁ ଆବଶ୍ୟକ ଟ୍ରେନିଂ ନେବାକୁ ସରକାର ବୃତ୍ତି ଦେଉଛନ୍ତି । ବଡଝିଅ ସରିତା ମେଟ୍ରିକ ପାସ୍ କରିଛି । ହେଲ୍‌ଥ ଭିଜିଟରେ ଟ୍ରେନିଂ ନେବାକୁ ଯୋଗ୍ୟା । ଟ୍ରେନିଂ ପରେ ନିଶ୍ଚିତ ଚାକିରି । ନର୍ସ ବା ତଦ୍ରୂପ ହେଲ୍‌ଥ ଭିଜିଟରେ ଚାକିରି କରୁଥିବା ଝିଅଙ୍କ ବିଷୟରେ ସାଧାରଣ ଲୋକଙ୍କ ଭଲ ଧାରଣା ନାହିଁ, ଜାଣି ମଧ୍ୟ ଲକ୍ଷ୍ମଣବାବୁ ଝିଅକୁ ଟ୍ରେନିଂ ପାଇଁ ଦିଲ୍ଲୀ ପଠାଇ ଦେଲେ । ନାରୀ ରୋଜଗାରକ୍ଷମ ହେଲେ ପୁରୁଷର ସମକକ୍ଷ ହେବ । ନିଜର ସ୍ୱାଧିକାର ସେ ଉପଭୋଗ କରିପାରିବ । ନାରୀ ଶିକ୍ଷା ହେଉଛି ସମାଜ ବିକାଶର ଚାବି । ସାମ୍ୟବାଦୀ ଲକ୍ଷ୍ମଣବାବୁଙ୍କର ଦୃଢ ଧାରଣା ।

ଦ୍ୱିତୀୟ ଝିଅ ସସ୍ମିତା, ସରଳ ସୁନ୍ଦର ଶାନ୍ତସ୍ନିଗ୍ଧ । ଗୋଲାପପରି ମୁହଁ, ହରିଣ ଆଖି ପରି ନିରୀହ ଚାହାଣି, ଆସାମୀୟା ବଙ୍ଗଳା ରମଣୀଙ୍କ ରୂପର ଏକ ଫେଣ୍ଟାଫେଣ୍ଟି ପ୍ରତିଛବି । ତୃତୀୟ ଝିଅ ବୁଦ୍ଧିମତୀ, ଦେହର ଗଠନ କୋଣାର୍କର ମୂର୍ତ୍ତିପରି । ଦାକ୍ଷିଣାତ୍ୟ ନାରୀର ପ୍ରତିବିମ୍ବ । ଚତୁର୍ଥ ଝିଅ ସବୁଠୁଁ ସୁନ୍ଦର, ତୀକ୍ଷ୍ଣ ନାକ, ଆୟତଚକ୍ଷୁ, ଦେବୀମୁହଁ ଭଳି ମୁହଁ, ଚମ୍ପା ଗୋରୀ, ଟିକିଏ ଫୁଲେଇ, ଗେହ୍ଲେଇ ଫେସନପ୍ରିୟ । ମନେହୁଏ ବୟସହେଲେ ହେବ 'ରୂପଗରବେ ଗରବୀ'- ଏ ସବୁ ଗୁଣ କ'ଣ ଧନାଭାବର ପ୍ରତିବନ୍ଧକ ଏଡାଇ ଦେଇ ପାରିବ ? ଲକ୍ଷ୍ମଣବାବୁଙ୍କ ମନରେ ଏହି ପ୍ରଶ୍ନ ଉଠେ । ଉତ୍ତର ମିଳେନା, ଭବିଷ୍ୟତକୁ ଅପେକ୍ଷା କରି ରହନ୍ତି ।

ବାଉଦପୁର ଷ୍ଟେସନରେ ଅବସ୍ଥାପିତ ଲକ୍ଷ୍ମଣବାବୁ । ଷ୍ଟେସନରୁ ବାଗୁରାଇ ସ୍କୁଲ ଦୁଇ କିଲୋମିଟର ଦୂର । ଦି ଝିଅ ଓ ଭଣଜା ମେଟ୍ରିକ ପଢିଯାଆନ୍ତି ସେହି ସ୍କୁଲକୁ । ଦ୍ୱିତୀୟ ଝିଅ ସସ୍ମିତା ପଢେ ଏକାଦଶ ଶ୍ରେଣୀରେ । ସୁନ୍ଦର ଶାନ୍ତଶିଷ୍ଟ ନିମୀଳିତ ଆଖି, ଖାତା ବହି ହାତରେ ଧରି ଧୀରେ ଧୀରେ ଯାଏ ସ୍କୁଲକୁ । ପ୍ରତିଦିନ ଦଶଟାରେ ବରପଦା ଇଞ୍ଜିନିୟର ସ୍କୁଲର ଛାତ୍ର ଅଧ୍ୟାପକମାନେ ଏହି ସମୟରେ ଯାଆନ୍ତି ଭଦ୍ରଖ ସହରରୁ ବରପଦା । ଏହି ଝିଅଟି ଦୃଷ୍ଟି ଆକର୍ଷଣ କରେ ସେମାନଙ୍କର ।

ଇଞ୍ଜିନିୟରିଂ ସ୍କୁଲର ଅଧ୍ୟାପକ ଅକ୍ଷୟ ଜେନା । ଅଧ୍ୟାପକ ସହଦେବ ବାବୁଙ୍କର ଅନ୍ତରଙ୍ଗ ବନ୍ଧୁ । ତାଙ୍କଠାରୁ ଏକ ଚିଠି ପାଇଛନ୍ତି । ଚିଠିରେ ବିଶେଷ ଅନୁରୋଧ "ଅକ୍ଷୟବାବୁ ମୋ ପାଇଁ ଏକ ଶିକ୍ଷିତା ସୁନ୍ଦରୀ ସାଥୀ ଖୋଜି ଦେବେ । ଯୌତୁକର ପ୍ରଶ୍ନ ନାହିଁ । ଏକମାତ୍ର ମାପକାଠି ରୂପ ଓ ଗୁଣ" । କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ ଅକ୍ଷୟବାବୁ ଓ ସହଦେବ ବାବୁଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଗଢିଉଠିଥିଲା । ଅକ୍ଷୟବାବୁ ପଢୁଥିଲେ ଉଚ୍ଚ ଶ୍ରେଣୀରେ । ସେ ବିବାହିତ । ତେଣୁ ତାଙ୍କ ଉପରେ ପାତ୍ରୀ ମନୋନୟନର ଦାୟିତ୍ୱ । ଅକ୍ଷୟବାବୁ ତାଙ୍କର ଜଣେକ ଛାତ୍ରଙ୍କ ମାଧ୍ୟମରେ ସନ୍ଧାନ ପାଇଲେ ସସ୍ମିତାର । ବାଉଦପୁର-ବାଗୁରାଇ ରାସ୍ତାରେ ଦେଖିନେଲେ ଝିଅଟିକୁ । ଝିଅଟିର ସୌନ୍ଦର୍ଯ୍ୟରେ ହେଲେ ମୁଗ୍ଧ । ଚିଠି ଲେଖିଲେ ବନ୍ଧୁ ସହଦେବଙ୍କୁ । "ପ୍ରକୃତ ସୁନ୍ଦର ଝିଅଟିଏ ଅଛି । ଯୌତୁକ କିଛି ମିଳିବାର ସମ୍ଭାବନା ନାହିଁ । ଏବେ ମେଟ୍ରିକ ପରୀକ୍ଷା ଦେବ । ତୁ ରାଜି ହେଲେ ପ୍ରସ୍ତାବ ପକାଇବି" । ସହଦେବ ବାବୁ ସମ୍ପୂର୍ଣ୍ଣ ରାଜି ବୋଲି ପ୍ରତ୍ୟୁତ୍ତର ଦେଲେ । ଲକ୍ଷ୍ମଣବାବୁଙ୍କ ନିକଟରେ ପ୍ରସ୍ତାବ ଉପସ୍ଥାପିତ ହେଲା । ସସ୍ମିତା ଦ୍ୱିତୀୟ କନ୍ୟା, ପ୍ରଥମର ବିବାହ ପୂର୍ବରୁ କିପରି ଦ୍ୱିତୀୟର ବିବାହ କରାଯିବ ? ପ୍ରଥମଟି ଏଥିପାଇଁ ବାସନ୍ଦ ହୋଇ ପାରେ କେତେକଙ୍କ ଦୃଷ୍ଟିରେ । ଏହି କାରଣରୁ ପରିବାରର ମହିଳା ସଭ୍ୟମାନେ ପ୍ରସ୍ତାବ ପ୍ରତି ବିଶେଷ ଆଗ୍ରହୀ ନଥିଲେ । ଲକ୍ଷ୍ମଣ ବାବୁ ବାସ୍ତବବାଦୀ, ଦୂରଦୃଷ୍ଟି ସମ୍ପନ୍ନ । ଭାଗ୍ୟର ପ୍ରଥମ ଉନ୍ମେଷକୁ ହାତଛଡା ହେବାକୁ ଦେଲେ ନାହିଁ । ଅର୍ଥ ନୀତିର ଅଧ୍ୟାପକ ସହଦେବ ଅର୍ଥପ୍ରତି ଆକୃଷ୍ଟ ନହୋଇ ରୂପଗୁଣ ଓ ଶିକ୍ଷାପ୍ରତି ଯେ ଆକୃଷ୍ଟ ହୋଇଛନ୍ତି, ଏଥିରୁ ସେ ପାଇଥିଲେ ଭାବୀ ଜାମାତାର ପ୍ରଗତିଶୀଳ ସାମ୍ୟବାଦୀ ମନୋଭାବର ଆଭାସ । ସସ୍ମିତାର ମେଟ୍ରିକ ପାଶ ଠିକ୍ ପରେ ପରେ ବିବାହ ସମ୍ପନ୍ନ ହୋଇଗଲା ସହଦେବ ବାବୁଙ୍କ ସହିତ । ଲକ୍ଷ୍ମଣବାବୁ ଖୁବ୍ ଖୁସି । ପରିବାରର ପରିବେଶ ଆନନ୍ଦ ମୁଖରିତ ।

ସମୟ ଗଡିଚାଲିଲା । ବଡଝିଅ ସରିତା ଦିବର୍ଷ ପରେ ଟ୍ରେନିଂ ପାଶ୍ କରି ହେଲ୍ଥ ଭିଜିଟର ରୂପେ ଚାକିରି ପାଇଲା । ତଥାପି ଯୋଗ୍ୟ ପାତ୍ରର ସନ୍ଧାନ ମିଳୁନି । ଜ୍ୱାଇଁ ସହଦେବ ବାବୁଙ୍କ ଉଦ୍ୟମରେ ଓ ବିଜ୍ଞାପନ ମାଧ୍ୟମରେ ଗୋଟିଏ ବରପାତ୍ର ଠାବ କରାଗଲା । ବର ମୟୂରଭଞ୍ଜରେ ଚାକିରି କରେ । ମାଆ ନାହିଁ । ବାପା କଟକ ଜିଲ୍ଲାରେ ଏକ ମଫସଲରେ ଟୁକୁରା ବ୍ୟବସାୟ କରି ଏକାକୀ ଜୀବନ ଯାପନ କରନ୍ତି । ବରର କକା ଉଚ୍ଚ ଶିକ୍ଷିତ । ଶିକ୍ଷା ବିଭାଗର ପରିଦର୍ଶକ । ତାଙ୍କର ଅଭିଭାବକତ୍ୱରେ ପୁତୁରା ଲକ୍ଷ୍ମୀଧରଙ୍କ ସହ ସରିତାର ବିବାହ ସମ୍ପନ୍ନ ହେଲା ସରଳ ବୈଦିକ ରୀତିରେ । ଲକ୍ଷ୍ମଣବାବୁଙ୍କ ମୁଣ୍ଡରୁ ଏକ ବଡ ବୋଝ ଚାଲିଗଲା, ଚିନ୍ତାରେ ଭାରାକ୍ରାନ୍ତ ମନ ହେଲା ଉଶ୍ୱାସ ।

ନମିତା ସକାଳର ଆସାନସୋଲ ଗାଡିକୁ ଉତ୍ସୁକ ନୟନରେ ଚାହିଁ ରହିଛି । ସସ୍ମିତା ନାନୀ ଓ ସହଦେବ ଭାଇ ଆସିବେ ସମ୍ବଲପୁରରୁ । ପୂଜାଛୁଟି, କଲେଜ ବନ୍ଦ, ବେଶ୍ ମଜା ହେବ ବାଉଦପୁରରେ । ନୂଆ ଭିଣୋଇଙ୍କ ସହ ହସ କୌତୁକ ସିନେମା ଦେଖା, ବୁଲାବୁଲି କରି ।

ଗାଡି ଆସିଲା । ବାଉଦପୁର ଷ୍ଟେସନ । କାଁ ଭାଁ ଯାତ୍ରୀ । ରେଳ ଲାଇନର ଦୁଇକଡେ ଧାନକିଆରି । ଶରତର ଶୀତଳ ସକାଳ ପବନରେ ସତେଜ ଧାନଗଛଗୁଡିକ ନାଚୁଛନ୍ତି । ରେଳଲାଇନକୁ ଲାଗି ଦକ୍ଷିଣ ପଟରେ ଥିବା ଲମ୍ବା ନାଳରେ ସ୍ୱଚ୍ଛଜଳ ସୂର୍ଯ୍ୟ କିରଣରେ ଚିକ୍‌ଚିକ୍ ମାରୁଛି । ଉଲ୍ଲସିତ ମନରେ ଟ୍ରେନରୁ ଓହ୍ଲାଇ ପଡୁଛନ୍ତି ସହଦେବ ବାବୁ । ହାତରେ ଚମଡାର ସୁଟ୍‌କେସ୍‌ଟିଏ । ପଛେ ପଛେ ସସ୍ମିତା, ପିନ୍ଧିଛନ୍ତି ନୀଳ ରଙ୍ଗର ବାଙ୍ଗାଲୋର ସିଲ୍‌କ ଶାଢ଼ି, ଲାଲ ଚଉଡା ପାଢ଼ି, ଘନକୃଷ୍ଣ କେଶର ଜୁଡା, ସୀମନ୍ତରେ ସିନ୍ଦୁର ଗାର । ଦୂରରୁ ଦେବୀ ପ୍ରତିମାଟେ ଭଳି ଶୋଭାପାଉଛି । ନାନୀ ଭିଣୋଇକି ଦେଖି ଆନନ୍ଦରେ କୁରୁଳି ପଡିଲା ନମିତା । ତା ପଛରେ ଠିଆ ହୋଇଛି ଚନ୍ଦ୍ରକାନ୍ତା, ସବା ସାନ ଭଉଣୀ । ଅତି ଆହ୍ଲାଦରେ ଦୁହେଁ ସମସ୍ୱରରେ ଡାକଛାଡିଲେ, ମାଆ ନାନୀ, ସହଦେବ ଭାଇ ଆସିଗଲେଣି । ଜାଫ୍ରି ଭିତରୁ ରେଳ ଷ୍ଟେସନ ଆଡକୁ ଚାହିଁଲେ ମଧ୍ୟ ବୟସ୍କ ଦୁଇଟି ମହିଳା । ଜଣେ ହୃଷ୍ଟପୁଷ୍ଟ ଜଣେ ପତଳି । ରେଳରୁ ଓହ୍ଲାଇ ସହଦେବ ବାବୁଙ୍କ ପ୍ରଥମ ଦୃଷ୍ଟି ପଡିଲା ଶ୍ୱଶୁରଙ୍କ କ୍ୱାର୍ଟରସ୍ ସମ୍ମୁଖେ ବଡ ଆମ୍ବ ଗଛ ଓ ତା ପାର୍ଶ୍ୱସ୍ଥ ବେଦୀଟି ଉପରେ । କିଛି ମାସ ତଳେ ଏଇ ବେଦୀରେ ତାଙ୍କର ମଙ୍ଗଳକୃତ୍ୟ ସମାପନ ହୋଇଥିଲା । ବେଦୀ ଉପରେ ସସ୍ମିତାର ମୁହଁଟିକୁ ଦେଖିବାକୁ ଯେତେ ସାବଧାନତାର ସହ କଣେଇ ଚାହୁଁଥିଲେ ମଧ୍ୟ ଲମ୍ବା ଓଢଣା ଭେଦକରି ଦେଖିପାରୁନଥିଲେ । ହାତଗଣ୍ଠି ପଡିଲା ବେଳେ ବିବାହ ପୂର୍ବରୁ ଦେଖିଯାଇଥିବା ଚମ୍ପା କଢି ଆଙ୍ଗୁଳି ଓ ବର୍ତ୍ତୁଳ ନରମ ହାତରେ ଉଷ୍ଣସ୍ପର୍ଶ ପାଇ ନିବିଡତାର ମଦିର ଅନୁଭୂତି ପ୍ରଥମେ ଲଭିଥିଲେ । ଜୀବନ ବସନ୍ତର କୋକିଳ ଏଇଠି ମଧୁର ସ୍ୱରରେ ଗାଇଥିଲା କୁହୁକୁହୁ । ଏହି ଆମ୍ବ ଗଛଟି ବେଶ୍ ସହଦେବବାବୁଙ୍କର ଆକର୍ଷଣୀୟ ହୋଇଉଠିଛି । ବାପାଙ୍କ ଲଘୁ ମନ୍ତବ୍ୟ 'ଆମ୍ବ ଗଛମୂଳେ ବାହାଘର' ମନରେ ଟିକିଏ ବି ପରାସ ଦେଉନି । ସେହି ଆମଗଛ ମୂଳକୁ ଦଉଡି ଆସିଲେ ଦିଟି ଶାଳୀ, ଜଣେ କିଶୋରୀ ଚତୁରୀ, ଆନଟି ଚପଳ ଶିଶୁ । ମୁଣ୍ଡ ନୁଆଁଇ ଜୁହାର ହେଲେ । ପାଛୋଟି ନେଲେ ଘର ଭିତରକୁ । ସହଦେବ ବାବୁଙ୍କ ଦୁଷ୍ଟ ହାତ ଚିପିଦେଲା

ନମିତାର ଫୁଲୁକା ଗାଲକୁ । ଆଶିର୍ବାଦର ହାତ ବୁଲିଗଲା ଚନ୍ଦ୍ରକାନ୍ତା ମୁଣ୍ଡରେ । ରେଳ କ୍ୱାର୍ଟରସର ଛାଫ୍ରିଦିଆ ବାରଣ୍ଡାରେ ଦିଟି ଚେୟାର । ସହଦେବ ବାବୁ ଚେୟାରରେ ବସି ପାଦରୁ ଜୋତା ଖୋଲୁଛନ୍ତି । ଜୋତାର ଫିତା ଖୋଲି ଦେଉଛି ନମିତା । ସତେ ଯେମିତି ଉତ୍ସର୍ଗିତ ପରିଚାରିକା, ତାର ସମବୟସୀ ଆଉ ଏକ କିଶୋରୀ ଆସି ଜୁହାର ହେଲା, ଗୋରୀ, ପଦ୍ମମୁଖୀ, ସଲ୍ଲଜ ଚାହାଣି, ଯୌବନ ଉନ୍ମେଷର ସନ୍ଧିକ୍ଷଣରେ ରୂପର ଚମକ ବାରି ହୋଇ ପଡୁଥାଏ । ସହଦେବ ବାବୁ ଥଟ୍ଟାରେ ପଚାରିଲେ ଏ ସୁନ୍ଦରୀଟି କିଏ କିରେ ? ନମିତା ଗମ୍ଭୀର ସ୍ୱରରେ ଉତ୍ତର ଦେଲା 'ମୋ ମାମୁଁଙ୍କ ଝିଅ ଶୈଳଜା । ମେଟ୍ରିକ ପଢୁଛି ବାଲେଶ୍ୱର ଖ୍ରୀଷ୍ଟାନ ମିସନ ସ୍କୁଲରେ' । ଶ୍ୟାମଳୀ ନମିତାର ସ୍ଥିତି କନକଗୋରୀ ଶୈଳଜାର ରୂପ ଝଲକରେ ନିଷ୍ପ୍ରଭ ହୋଇଯାଉଥିବା ସୂଚନା ତାର ସ୍ୱରରୁ ଆଭାସ ମିଳୁଥାଏ । ପରିହାସ କରି କହିଲେ 'ଦୁର୍ଗାପୂଜା ପୂର୍ବରୁ ଘରେ ତ ଭରିଗଲାଣି ଏତେଗୁଡିଏ ସୁନ୍ଦର ଦୁର୍ଗାମୂର୍ତ୍ତି । ଏବର୍ଷ ଦୁର୍ଗାପୂଜା ବେଶ୍ ଆନନ୍ଦମୟ ହେବ' । ଶାଳିକା କଥା-ଚତୁରୀ ନମିତା ଯୋଗ ଦେଲା ''ହରପାର୍ବତୀତ ପହଞ୍ଚିଗଲେଣି । ଆନନ୍ଦ-ଉଲ୍ଲାସ ଉଛୁଳି ପଡିବ ଏଠି''। ଚନ୍ଦ୍ରକାନ୍ତା ଓ ଶୈଳଜା କିରି କରି ହସି ଉଠିଲେ । ଦୂରରେ ଶାଶୁ, ପିଉସୀ ଶାଶୁ ଛିଡା ହୋଇ ମୁରୁକି ମୁରୁକି ହସୁଥିଲେ । ଅମୃତମୟ ହୋଇଯାଇଥିଲା ପରିବେଶ ।

(ତେର)

'ନାହିଁ ସୁଖ ଏକା ଏକା ଭୋଗି ଆନନ୍ଦରେ
ଆସ ସଖି ଧୀରେ ମିଶି ପଛୁ ମୋ ସ୍କନ୍ଧରେ'
(ମାନସିଂହ)

ଅଶ୍ୱିଣର ଅଳସ ଦ୍ୱିପହର, ଷ୍ଟେସନ କ୍ୱାର୍ଟରସ୍‌ର ଆମ୍ବଗଛମୂଳେ ଥିବା ବେଦୀ ଉପରେ ବସି ଖୁସିଗପ ହେଉଛନ୍ତି ସହଦେବବାବୁ, ଶାଶୁ, ପିଉସୀ ଶାଶୁ, ଶାଳିକା, ଶୈଳଜା ଓ ଚନ୍ଦ୍ରକାନ୍ତା। ସରିତା ବିବାହର ଏକ ପ୍ରସ୍ତାବକୁ କେନ୍ଦ୍ରକରି ହସିଉଠିଲେ ସମସ୍ତେ । ଚୁପି ଚୁପି ହସୁଥାନ୍ତି ସବିତା ଦେବୀ ଓ ରେବତୀ ଦେବୀ । ଖିଲିଖିଲି ହସି ଗଡିଯାଉଥାନ୍ତି ଶୈଳଜା ଓ ଚନ୍ଦ୍ରକାନ୍ତା । ସମ୍ବଲପୁରର ଏକ ଉଚ୍ଚଶିକ୍ଷିତ ଯୁବକ ସହିତ ସରିତାର ବିବାହ ପ୍ରସ୍ତାବ ପଡିଥାଏ । ଯୁବକର ମାଆ ବାପା ସରିତାକୁ ଦେଖିବାକୁ ଆସିଥାନ୍ତି ସମ୍ବଲପୁରର ସହଦେବବାବୁଙ୍କ ବସାଘରକୁ । ନମିତା ଓ ସରିତା ଦୁହେଁ ଯାଇଥାନ୍ତି ସହଦେବବାବୁଙ୍କ ଚାକିରି ସ୍ଥଳକୁ । ହିରାକୁଦ ବନ୍ଧ ଦେଖିବେ ଓ ହସଖୁସିରେ କିଛି ଦିନ କଟାଇ ଦେବେ । ଏହି ଅବସରରେ ସରିତାକୁ ଭାବୀ ବରର ପିତାମାତା ଦେଖିବାକୁ ଆସିଥାନ୍ତି । ସହଦେବ ବାବୁଙ୍କ ବୋକାମି । ଦୁଇଟି ତରୁଣୀ କୁମାରୀ, ଦିଭଉଣୀଙ୍କୁ ପିଲାର ବାପା ମାଆ ସାମନାକୁ ଯିବାର ସୁଯୋଗ ଦେଇଥିଲେ । ପିଲାର ମାଆଟି ସରିତା ପରିବର୍ତ୍ତେ ନମିତାକୁ ପସନ୍ଦ କଲା । କାରଣ ସରିତା ଟିକେ ପାତଳି, ନମିତା ହୃଷ୍ଟପୁଷ୍ଟ ଏବଂ ମତ ଦେଲା ''ସାନ ଭଉଣୀ ବିବାହ ପାଇଁ ପ୍ରସ୍ତାବ ଦେଲେ ଆମେ ରାଜି'' । ବଡଭଉଣୀ ପାଇଁ ବିବାହ ପ୍ରସ୍ତାବ, କିନ୍ତୁ ପସନ୍ଦ ହେଉଛି ସାନକୁ । ବଡର ବିବାହ ବୟସ ଗଡିଯାଉଛି । ବଡ ଥାଉଁ ଥାଉଁ ସାନକୁ କିପରି ବାହା ଦେବେ ? ସହଦେବ ବାବୁ ପରେ ଜଣାଇବେ

ବୋଲି କହି ଅତିଥିଙ୍କୁ ବିଦାୟ ଦେଉଥିଲେ । ସହଦେବ ବାବୁ ଶାଶୂଙ୍କୁ ହସି ହସି କହୁଥାନ୍ତି : "ସେ ପିଲାର ବାପ ମାଆ ବରଗଡର ଲୋକ । ବନ୍ଧ ବା ପୋଖରୀରୁ ପାଣି ବୋହିବା, କିମ୍ବା ଦୂର କଳରୁ ପିଇବା ପାଣି ସଂଗ୍ରହ କରିବା, ଘରର ସ୍ତ୍ରୀ ଲୋକଙ୍କର ବଡକାମ । ବିଶେଷତଃ ଖରାଦିନେ ପାଣିର ଅଭାବ । ବୋହୂ ମଜବୁତ୍ ନହେଲେ ଏସବୁ କାମ କିପରି କରିବ ? ସେଇଥିପାଇଁ ବୁଢୀର ପସନ୍ଦ ହୋଇଥିଲା ନମିତା, ସରିତା ନୁହେଁ । ସରିତା ନାନୀ କଣ ସମ୍ବଲପୁରୀ ପିତଳ ଗରା କାଖେଇ ଗରା ଗରା ପାଣି ବୋହି ପାରିଥାନ୍ତେ । ହୃଷ୍ଟପୁଷ୍ଟ ନମିତା ଏକାମ କରି ପାରିଥାନ୍ତା" ସହଦେବ ବାବୁ ଘଟଣାଟି ବର୍ଣ୍ଣନା କରି ଟିପ୍ପଣୀ ଦେଉଥିଲେ "ଗୋଟିଏ ଭଉଣୀର ବିବାହ ପ୍ରସ୍ତାବ ସମ୍ପର୍କରେ ବରଘର ଲୋକ ଆସିଥିଲେ ଅନ୍ୟ ଭଉଣୀମାନଙ୍କୁ ଗୋଟିଏ ଘରେ ଲୁଚେଇ ରଖିବ ବା ପଡିଶା ଘରକୁ ପଠାଇ ଦେବ" । ଏହି କଥାରେ ହସି ଉଠିଥିଲେ ସମସ୍ତେ । ନମିତା ଅନ୍ୟ କୁଆଡେ ଯାଇଥିଲା ଧୀରେ ଧୀରେ ପଛଆଡୁ ଆସି ସହଦେବ ବାବୁଙ୍କ ଆଖି ଦିଟିକୁ ଜାବୋଡି ଧରିଲା । ସହଦେବ ବାବୁ ଚମକି ପଡି କିଏ ବୋଲି ହାତ ଅଣ୍ଡାଳି ଜାଣିପାରିଲେ । କବିସୁଲଭ ଭାଷାରେ କହିଉଠିଲେ "ଓ ନମିତା ଦେବୀ, ଆଲୋକର ପ୍ରଖରଣରେ ମୋତେ ଅନ୍ଧ କରିଦେଲ" ଏହାପରେ ନମିତାର ହାତ ଢ଼ୁଗୁଳିଗଲା, ପଚାରିଲା, ଏତେସବୁ ହସୁଥିଲ କାହିଁକି ? ସହଦେବ ବାବୁ କହିଲେ ତୋ ବିବାହ କଥା ପଡିଥିଲା, ମାଆ କହୁଥିଲେ ନମିତା ପାଇଁ ଭଲ ପାତ୍ରଟେ ଦେଖ । ମୁଁ କହୁଥିଲି "ନମିତାକୁ ଛାଡିବାକୁ ହୋଇଥିଲେ ତ ଦିବର୍ଷ ଚଳୁ ବରଗଡ ଯାଆନ୍ତାଣି, ସମ୍ବଲପୁରୀ ଶାଢୀ ପିନ୍ଧି ଉଚଚୂଡା ବାନ୍ଧି, ପିତଳ ଗରା କାଖେଇ ବନ୍ଧର ପାଣି ବୋହୁଥାନ୍ତା । ସେ ଚାଲିଗଲେ ଆପଣଙ୍କ ଘରକୁ ଆସିବାର ଆନନ୍ଦ ଯେ ଉଭେଇ ଯିବ । ଆମ ସେବା କିଏ କରିବ ?" ଛଳ ରାଗରେ ନାକ ଫୁଲେଇ ନମିତା କହିଲା "ହଁ ମୁଁ ସତେ ଯେମିତି ଆପଣଙ୍କର ଦାସୀ ପରିଚାରିକା, ସବୁବେଳେ ଜାଗ୍ରତ ଥିବି ଆପଣଙ୍କ ସେବା କରିବାକୁ" । ସହଦେବ ବାବୁ ପ୍ରତ୍ୟୁତ୍ତର ଦେଲେ "ନା ନା ତୁମେ ଦାସୀ କି ପରିଚାରିକା ନୁହଁ, ଶ୍ରୀରାଧାଙ୍କ ସଖି ଲଳିତା" ଶାଶୂ ପିଉସୀ ଶାଶୂ ଲାଜରେ କାମର ବାହାନା କରି ଘର ଭିତରକୁ ଚାଲିଗଲେ । ନମିତା ଏବେ ନିଜକୁ ଟିକିଏ ମୁକ୍ତ ଅନୁଭବ କରି କହିଲା "ସହଦେବ ଭାଇ ଆପଣ ବଡ ଦୁଷ୍ଟ, ସ୍ୱାର୍ଥପର" ସହଦେବ ବାବୁ କହିଲେ "ହଁ ମୁଁ ତୁମ ପାଖରେ ଦୁଷ୍ଟ ହୋଇପାରେ, କିନ୍ତୁ ସ୍ୱାର୍ଥପର ନୁହେଁ, ତୋର ସ୍ୱାର୍ଥ ସାଧନ ପାଇଁ ମୁଁ ଏବେ ଯତ୍ନଶୀଳ ହେବି । ମୋ ଭଳି ରସିକ କିନ୍ତୁ ଅଧିକ ବପୁମାନ ସାଥୀଟିଏ ତୋ ପାଇଁ ନିଶ୍ଚୟ ବ୍ୟବସ୍ଥା କରିଦେବି । ତୁ ଏବର୍ଷ ବି.ଏସ୍.ସି. ପାଶ୍ କର, ତେବେ ଗୋଟିଏ ସର୍ତ୍ତ, ବିବାହ ପରେ ମଧ୍ୟ ମୋର ପ୍ରାପ୍ୟ, ତୋ ସ୍ନେହସୋହାଗରୁ ମୋତେ ବଞ୍ଚିତ କରିବୁ ନାହିଁ ।" ଦି ତରୁଣୀ ହସିଉଠିଲେ । ଚନ୍ଦ୍ରକାନ୍ତା ସେମାନଙ୍କୁ ଅନୁସରଣ କଲା । । ବୀଣାଜିଣା ଦିଟି କଣ୍ଠରୁ ନିଃସୃତ ହେଲା "ସହଦେବ ଭାଇଙ୍କୁ କଥାରେ ପାରିହେବ ନାହିଁ" ।

ସହଦେବ ବାବୁ ତାଙ୍କର ପ୍ରତିଶ୍ରୁତି ରକ୍ଷା କରିଥିଲେ । ପରବର୍ଷ ତାଙ୍କର ପରିଚିତ ଜନୈକ ତରୁଣ ଅଧ୍ୟାପକଙ୍କ ସହିତ ନମିତାର ବିବାହ ସମ୍ପନ୍ନ ହେବାର ପ୍ରଧାନ ଭୂମିକା ନେଇଥିଲେ ।

ଅଳ୍ପ କେତୋଟି ବର୍ଷ ଭିତରେ ପରମ୍ପରା ତିନୋଟି ଝିଅଙ୍କର ବିବାହ, ଏକ ପ୍ରକାର ଆଦର୍ଶ ବିବାହ, ଯୌତୁକର ଚାପ ନଥିଲା, ଆର୍ଥିକ ବୋଝ ସହନୀୟ ହୋଇଥିଲା । ଏହା ଭିତରେ ପୁଅ ସୁରଜିତ ଇଞ୍ଜିନିୟରିଂ ପାଶ୍ କରି ରାଜ୍ୟ ସରକାରଙ୍କ ଅଧୀନରେ, ଚାକିରି ପାଇଛନ୍ତି । ଲକ୍ଷ୍ମଣବାବୁଙ୍କ ପରିବାରରେ ଆର୍ଥିକ ସ୍ୱଚ୍ଛଳତା ଆସି ଯାଇଛି । ଅର୍ଥଚିନ୍ତା ତାଙ୍କୁ ଆଉ ବିବ୍ରତ କରୁନାହିଁ । ପୁଅ ବାହାରେ ଅବସ୍ଥାପିତ । ଲକ୍ଷ୍ମଣବାବୁଙ୍କ ଅବସର ସମୟ ନିକଟ ହୋଇଆସିଲାଣି । ନିଜ ଚାକିରି ପ୍ରତି ମମତା, ଜାଣିଶୁଣି କମାଇ ଦେଇଛନ୍ତି । କର୍ତ୍ତବ୍ୟରେ ଏକ ପ୍ରକାର ନିର୍ଲିପ୍ତତା ଆସିଯାଇଛି । ଘରେ ଏକ ମାତ୍ର ସାନ ଝିଅ ଚନ୍ଦ୍ରକାନ୍ତା । ମାଆ ଛେଉଣ୍ଡ ବାପ ଛେଉଣ୍ଡ ଭଣଜା, ଯାହାକୁ ପାଠ ପଢେଇ ଚାକିରିଟିଏ ଯୋଗାଡ କରିଦେଇଛନ୍ତି । ସ୍ତ୍ରୀ ଓ ବିଧବା ଭଉଣୀ । ପରିବାରର କୋଳାହଳ କମିଯାଇଛି । ଏହା ସହିତ ଭଟା ପଡିଯାଇଛି ହସକାନ୍ଦର ଜୁଆର, ସୁଖି ଆସିଛି ପ୍ରାଣ ପ୍ରାଚୁର୍ଯ୍ୟର ଉସ, ପରିପୂର୍ଣ୍ଣ ଦୈନନ୍ଦିନ ଜୀବନଯାପନ କରିବାର ସୁଯୋଗ । ଲକ୍ଷ୍ମଣବାବୁ ଓ ତାଙ୍କର ଛୋଟ ପରିବାର ଚାହିଁ ରହିଥାନ୍ତି, ପୂଜାବକାଶ, ଗ୍ରୀଷ୍ମାବକାଶ ଓ ଅନ୍ୟାନ୍ୟ ସରକାରୀ ଦୀର୍ଘ ଛୁଟିକୁ । ସେତେବେଳେ ଦୂରନ୍ତ କର୍ମପୀଠରୁ ଆସନ୍ତି ଝିଅ ଜ୍ୱାଇଁ ନାତି ନାତୁଣୀ ପୁଅ । ଘର ତାଙ୍କର ପୂରିଉଠେ, ଆନନ୍ଦଉଲ୍ଲାସର ଢେଉ ବହେ । ସେ ଅନୁଭବ କରନ୍ତି ପ୍ରିୟ ପରିଜନ ସ୍ନେହ ପ୍ରତ୍ୟୟରେ ତାଙ୍କ ଘରଟି ବୈକୁଣ୍ଠ ପାଲଟି ଯାଇଛି ।

(ଚଉଦ)

'ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ
ହାତେ ଆସେ ହାତୁଁ ପଡିବା ପାଇଁ ସେ'

ସୁଖର ଦିନଗୁଡିକ ଅସ୍ଥାୟୀ, ଗତି ତାର ଦ୍ରୁତ । ଜାଣି ହୁଏନା ସମୟ କିମିତି ବହିଚାଲେ । ଅବସର ସମୟ ପାଖେଇ ଆସିଲାଣି । ଝିଅ ଜ୍ୱାଇଁଙ୍କ ପିଲାମାନେ ପାଠ ପଢା ଆରମ୍ଭ କରିଦେଲେଣି । ଆଉ ଶଶୁର ଘରେ ଆସି ବେଶୀ ଦିନ ରହିପାରୁ ନାହାନ୍ତି । ଦ୍ୱିତୀୟ ଝିଅ ଜ୍ୱାଇଁ ତ ଓଡିଶା ବାହାରେ । ଅଧ୍ୟାପନାରୁ ବ୍ୟାଙ୍କ ଅଫିସରକୁ ପରିବର୍ତ୍ତନ । ଛୁଟି କମ୍ । ସେମାନଙ୍କର ଓଡିଶା ଆସିବା ବିରଳ । ସର୍ବଦା କର୍ମ ତତ୍ପର ଲକ୍ଷ୍ମଣ ବାବୁ ଦୀର୍ଘ ବର୍ଷ କାଳ ନିଷ୍ଠା ଓ ସାଧୁତାର ସହ କର୍ତ୍ତବ୍ୟ କରି ଲୋକଙ୍କ ପ୍ରଶଂସା ପାଇଛନ୍ତି । କିନ୍ତୁ ସରକାରଙ୍କ ବିଷ ଦୃଷ୍ଟିରେ ପଡିଛନ୍ତି ଶ୍ରମିକ ସଂଗଠନରେ ସକ୍ରିୟ ଅଂଶ ନେଇଥିବା ଏବଂ କଂଗ୍ରେସବିରୋଧୀ ବାମପନ୍ଥୀ ଆନ୍ଦୋଳନ ପ୍ରତି ସମର୍ଥନ ଯୋଗୁଁ । ଚାକିରିରେ ତାଙ୍କର ଏହି କାରଣରୁ ଆଶାନୁରୂପ ପଦୋନ୍ନତି ହୋଇନି । ସେଥିପାଇଁ ତାଙ୍କର ତିଳେମାତ୍ର ଅବଶୋଷ ନାହିଁ । କର୍ତ୍ତବ୍ୟ ସମ୍ପାଦନରେ ସେ କେବେହେଁ ତ୍ରୁଟି କରି ନାହାନ୍ତି । ବିବେକାନୁସାରେ ସର୍ବଦା ସବୁଠି କାମ କରିଛନ୍ତି । ଏହି ସ୍ୱୀକୃତି ତାଙ୍କର ସବୁଠୁଁ ମୂଲ୍ୟବାନ ପୁରସ୍କାର ବୋଲି ସେ ମନେ କରନ୍ତି । ଚାକିରି ଜୀବନର ଦୈନନ୍ଦିନ ଜଟିଳତା, ତାର ସମାଧାନ, ବିଭିନ୍ନ ଲୋକଙ୍କ ସହ ମିଳାମିଶା ଯୋଗାଯୋଗ, କାମର ବୋଝ ଭିତରେ ମଧ୍ୟ ଦେଇଥାଏ ଏକ ଅନିର୍ବାଚନୀୟ ଆନନ୍ଦ, ଆତ୍ମସନ୍ତୋଷ ଓ ଜୀବନର ପରିପୂର୍ଣ୍ଣତା । ଅବସର ଜୀବନ ସାଧାରଣତଃ ନିଷ୍କ୍ରିୟ, ନିଃସଙ୍ଗ । ନୂତନ ପରିବେଶରେ ରହଣି ।

ପ୍ରତିବେଶୀମାନଙ୍କ ସହ ଆତ୍ମୀୟତା ଆସୁ ଆସୁ ଜୀବନ ଦୀପ ଲିଭିଆସୁଥିବା ଆଦ୍ୟ ଜୀବନର ପୁରାତନ ସାଥୀ ତ ଆଉ ମିଳିବନି । ଦ୍ରୁତ ପରିବର୍ତ୍ତନଶୀଳ ଦୁନିଆଁରେ ସମସ୍ତେ ଗତିଶୀଳ । କାଳର ପ୍ରବାହରେ କାହାର ଜୀବନ ନାଆ କେଉଁ ନଦୀରେ ଭାସିଭାସି କେଉଁ କୂଳରେ ଲାଗିଛି ତାର ଖବର ରଖି ହୁଏନା । ନିଜ ଜନ୍ମ ମାଟିର ପୈତୃକ ଓ ନିଜେ କିଣିଥିବା କଳାମାଟିରେ ସେ ଯେଉଁ ଘର ଗଢ଼ିଥିଲେ ଆଦ୍ୟଗୃହସ୍ଥ ଜୀବନର ଆବେଗ ନେଇ, ତାକୁ ତ ଆବୋରି ବସିଛନ୍ତି ବଡଭାଇ ଓ ତା'ର ପିଲାମାନେ । ସେହି ଗାଁର ଅନ୍ୟତ୍ର ଘର ଡିଅ ଖଣ୍ଡେ ପାଇବାର ପ୍ରଚେଷ୍ଟା ମଧ୍ୟ ନିଷ୍ଫଳ ହୋଇଯାଇଛି । ବର୍ତ୍ତମାନ ଆଖି ଅଛି ବାହାନଗା ଉପରେ । ଭୂୟାଁ ଜମିଦାରଙ୍କ ଠାରୁ କିଣିଥିବା ଜମି ସବୁ ମଝିଆଁ ଶଳା ଚାଷ କରୁଛନ୍ତି । ଅବସରପ୍ରାପ୍ତ ପରେ ନିଜ ହାତରେ ସେ ଜମିଗୁଡିକ ଚାଷକରି ସମୟ ବିତାଇ ହେବ ସହଜରେ । ବାହାନଗାରେ ତ ତାଙ୍କ ରୋମାଞ୍ଚିତ ବିବାହିତ ଜୀବନର ଘଟଣା ବହୁଳ ଦିନଗୁଡିକ ବିତିଥିଲା । ଏହି ମାଟି ସହିତ ପ୍ରାଣପ୍ରିୟ ପ୍ରଥମ ସ୍ତ୍ରୀର ମଧୁର ସ୍ମୃତି ବିଜଡିତ । ପୁରୁଣା ଯୌବନ ସାଥୀ ଏବେ ବି ଅନେକ ଅଛନ୍ତି । ପରିବେଶ ସୁପରିଚିତା ଜନ୍ମଭୂମି ଠାରୁ ଅଳ୍ପ ଦୂର । ସାମ୍ୟବାଦୀ ରାଜନୀତିର ଏକ ପୀଠ ମଧ୍ୟ ଏହି ଅଞ୍ଚଳରେ ଅତୀତରେ ହୋଇଥିବା ପ୍ରଜା ଆନ୍ଦୋଳନ ଓ ଭାଗଚାଷୀ ଆନ୍ଦୋଳନରେ ସେ ପ୍ରତ୍ୟକ୍ଷ ବା ପରୋକ୍ଷ ଅଂଶ ଗ୍ରହଣ କରିଥିଲେ । ସାମ୍ୟବାଦୀ ଆନ୍ଦୋଳନ ଓ ଭାବଧାରାର ସଂପ୍ରସାରଣରେ ସେ ଭାଗ ନେଇ ପାରିବେ ଅବସର ଜୀବନରେ । ମନସ୍ଥ କଲେ ବାହାନଗାରେ ବାସଗୃହ ଓ ବାଡିବଗିଚା ପୋଖରୀ ଆଦି କରି ଏକ ଶାନ୍ତ ସୁନ୍ଦର ପ୍ରାକୃତିକ ପରିବେଶରେ ଅବସର ଜୀବନ ଯାପନ କରିବେ । ବାସ୍ତବବାଦୀ ନିରଳସ ଲକ୍ଷ୍ମଣବାବୁ ମନର ଚିନ୍ତାକୁ ବାସ୍ତବ ରୂପ ଦେବା ପାଇଁ ତତ୍ପର ହୋଇଉଠିଲେ ।

ଏହି ସମୟରେ ମୁଣ୍ଡରେ ପଡିଲା ବଜ୍ର । ବଡପୁଅ, ଆଡପାଗଳିଆ, ଏ.ଆର.ସି.ରେ ଜଗୁଆଳି ଚାକିରି । ଦିନେ ସାଇକେଲରେ ଉପରଓଳି ଚାକିରି ଡିଉଟି ସାରି ଘରକୁ ଫେରୁ ଫେରୁ ବାଟରେ ସାଇକେଲରୁ ପଡି ମୃତ୍ୟୁବରଣ କଲା । ହାର୍ଟ ଫେଲ । ଗୁଣୀ ବା ଅଗୁଣୀ ହେଉ, ଦୁଷ୍ଟ ବା ଶାନ୍ତ ହେଉ, ପ୍ରଥମ ପୁଅତ ? କେତେ ରୋମାଞ୍ଚିତ ସ୍ୱପ୍ନ କେନ୍ଦ୍ର କରି ଗଢି ଉଠିନଥିବ ବଡପୁଅର ଶୈଶବାସ୍ଥାରେ । ମନେ ପଡିଯାଏ ବାତ୍ସଲ୍ୟର ପ୍ରଥମ ଶିହରଣ କି ପୁଲକ ନବ ଦମ୍ପତି ପ୍ରାଣରେ । ବାତ୍ସଲ୍ୟର ପ୍ରଥମ ଡୋରି ଆଜି ଛିଡିଲା । ବିଦାରି ଯାଉଛି ହୃଦୟତନ୍ତ୍ରୀ । ହତଭାଗ୍ୟ । ଭାଗ୍ୟର ବିଡମ୍ବନା, ପୁଅକୁ ମୁଖାଗ୍ନି ଦେବ ବାପ ।

ସ୍ଥିତପ୍ରଜ୍ଞ ଋଷି ଭଳି ଏ ଦାରୁଣ ଦୁଃଖ ସହିଗଲେ ଲକ୍ଷ୍ମଣବାବୁ । ଚାକିରିର ଶେଷ ଅବସ୍ଥାନ ଏପରି ବିପଦବାହକ ହେବ ବୋଲି ସେ ଧାରଣା କରିନଥିଲେ । ସ୍ଥାନଟି ପ୍ରତି ଆସିଗଲା ବିତୃଷ୍ଣା । ଜୀବନର ଶେଷ ଆଶ୍ରୟସ୍ଥଳ ସନ୍ଧାନରେ ଦିନେ ଯାତ୍ରା କଲେ ବାହାନଗା । ରେଳଷ୍ଟେସନରେ ଦେଖା ହେଲା ମୋହିନୀ ଉପାଧ୍ୟାୟ ପୁଅ ସହିତ । ସେ ତଳଧାଡି ଜମି କଥା କହିଲା । ଏ ଜମିଟି ସଡକ ପାଖରେ, ଚଉଡା, ଗୋଟିଏ ପଟ ପୂରାପୂରି ଗୋଚର, ଖୋଲା ଯାଗା, ମନକୁ ପାଇଲା

ଲକ୍ଷ୍ମଣବାବୁଙ୍କର । ରେଳଷ୍ଟେସନରୁ ସିଧା ଚାଲିଲେ କୃଷ୍ଣପୁର ମୋହିନୀ ଉପାଧ୍ୟାୟ ପାଖକୁ । ଜମି ଦର ହୋଇ ସାରିଛି ଏବଂ ଜଣେ ବଙ୍ଗାଳି ନେବ, ୧୧୦୦ ଟଙ୍କାରେ । ବଙ୍ଗାଳି ଭଦ୍ରଲୋକ ଗାଁକୁ ଯାଇଛନ୍ତି ଟଙ୍କା ସଂଗ୍ରହ କରି । ମୋହିନୀ ବାବୁ ଜମି ମାଲିକ ଅର୍ଥାତ୍, ବାୟାକୁ ଡାକି କହିଲେ 'ଆଉ ଦୁଇଶହ ଟଙ୍କା ଅଧିକ ଦିଆଯିବ' ବାୟା ରାଜିହୋଇଗଲା ଅଧିକ ଦରରେ ଲକ୍ଷ୍ମଣବାବୁଙ୍କୁ ଜମିଟି ଦେବା ପାଇଁ । ରାତି ଭିତରେ ଜମିର ମୂଲ୍ୟ ୧୩୦୦ ଟଙ୍କା ଓ ରେଜେଷ୍ଟ୍ରୀ ଖର୍ଚ୍ଚ ୨୦୦ ଟଙ୍କା ସଂଗ୍ରହ କରିବାକୁ ହେବ । ଲକ୍ଷ୍ମଣବାବୁ ଛୁଟିଲେ ଶଳା ସମ୍ପର୍କୀୟ ଜଣେ ଲୋକ ପାଖକୁ । ତାକୁ ସଙ୍ଗରେ ଧରି ରାତିରେ ଧାଇଁଲେ ଭଜମନସିଂ ଘରକୁ । ମହାଜନ ସିଂ ଋଣ ଦେବାକୁ ରାଜି । ସେଠାରୁ ଜମି ବିକାଳି ପାଖକୁ ରାତିରେ ଯାତ୍ରା । ସମସ୍ତ କଥା ପକାକରି ପରଦିନ ସକାଳେ ଭଜମନସିଂହଙ୍କ ସହ ୧୫୦୦ ଟଙ୍କା ଧରି ସୋରେ ରେଜେଷ୍ଟ୍ରୀ ଅଫିସରେ ଜମି କବଲା କରାଗଲା ।

ତାଳଧାଡି ଜମି, ସଡକପାଖ, ମାତ୍ର ଉପର ପାଣିର ଚୋଡ ଅଧିକ । ନଈ ନଯୋଡିରେ ପୋଇ ନାହିଁ । ପାଖରେ କେହି ପଡିଶା ନାହାନ୍ତି । ବାରମ୍ବାର ସେ ଯାଗାକୁ ଚାହିଁଲେ, ମାତ୍ର ସେଠାରେ ବସାଘର କରିବାକୁ ମନ ବଳିଲା ନାହିଁ ।

ଜାଣିବାକୁ ପାଇଲେ ବାହାନଗାର ଶଶୁର ଘର ଗାଁକୁ ଏକ ନୂଆ ସଡକ ପଡିଛି । ସେହି ସଡକ କଡରେ ଗୋଟିଏ ଯାଗା ପାଇଲେ ଭଲ ହୁଅନ୍ତା । ପ୍ରତ୍ୟେକ ଛୁଟି ଦିନରେ ବାହାନଗା ଆସି ବିଭିନ୍ନ ଲୋକଙ୍କୁ ଭେଟି ଜମିର ସନ୍ଧାନ ନେଲେ । ଲକ୍ଷ୍ମୀ ଚଞ୍ଚଳା, ଭୂଇଁ ବି ଚଞ୍ଚଳା । ଏହା ମିଳିଯିବ ଆଶା ରଖୁଁ ରଖୁଁ ଜମିଟି ଅନ୍ୟ ହାତକୁ ଚାଲିଯାଏ । ରେଳ ଲାଇନକୁ ଲାଗି, ଜଗନ୍ନାଥ ସଡକକୁ ଲାଗି ଦି ଦିଟା ଯାଗା ଏମିତି ଚାଲିଗଲା ।

ବାହାନଗାରୁ ବଡଗାଁ ଯାଇଥିବା ନୂଆ ସଡକ ଛକରେ କୃଷ୍ଣଦାଶ ଯାଗା ମାଡି ବସିଥାନ୍ତି । ପାଖ ଆଖ ଜମି ବିକ୍ରି ଖର୍ଦ୍ଦି ତାଙ୍କର ମାରଫତରେ ହେଉଥାଏ । ଲକ୍ଷ୍ମଣବାବୁ ମଧ୍ୟସ୍ଥ କୃଷ୍ଣ ଦାଶଙ୍କ ଖାତାରେ ଜମି ଖଣ୍ଡେ ପାଇଁ ନା ଲେଖାଇ ଦେଲେ । ଲକ୍ଷ୍ମଣବାବୁ ତ ଦୂରରେ ଚାକିରି ସ୍ଥାନରେ । ପାଖ ଲୋକ କେତେ ଜଣ କୃଷ୍ଣଦାଶଙ୍କୁ ମନାଇ ଭଲ ଜମି ସବୁ କିଣିନେଲେ । ଲକ୍ଷ୍ମଣବାବୁଙ୍କ ନାମ କୃଷ୍ଣଦାଶଙ୍କ ଖାତାରେ ଶୂନ୍ୟକୁ ଚାହିଁ ପଡିରହିଥାଏ । ଲକ୍ଷ୍ମଣବାବୁ ଅନ୍ୟ ଜଣେ ମଧ୍ୟସ୍ଥକୁ ଧରିଲେ । ଗୋଟିଏ ଜମି ନେବା ସ୍ଥିର ହେଲା । ମାତ୍ର ଟଙ୍କା ଯୋଗାଡ କରି ଆସୁଁ ଆସୁଁ ଅନ୍ୟ ଜଣେ ତାକୁ ଖର୍ଦ୍ଦି କରି ନେଲା । ଜମି ପାଇବା କ୍ଷେତ୍ରରେ ଲକ୍ଷ୍ମଣବାବୁ ଏହିପରି କେତେ ଥର ଶିଶୁପାଳ ହୋଇଛନ୍ତି । ଶେଷରେ ଭାଗ୍ୟ ସୁପ୍ରସନ୍ନ ହେଲା । ବାହାନଗାରୁ ବଡଗାଁ ଯାଉଥିବା ସଡକର ଏକ ପାର୍ଶ୍ୱରେ କାଳୁ ମହାପାତ୍ରଙ୍କ ୯୬ ଡିସିମିଲ ଜମି କିଣାଗଲା । ମହାଜନ ଭଜମନ ଏଥର ମଧ୍ୟ ଆର୍ଥିକ ସାହାଯ୍ୟ ଦେଲେ ।

ଜମି କିଣାପରେ ବାଡ ଘେରା । ବାଡିଭିତରେ ନଡିଆଗଛ ଲଗା । ଘଡିଆଟିଏ ଖୋଳା- ଏ ସବୁ କାମର ଦାୟିତ୍ୱ ଜନୈକ ସମ୍ପର୍କୀୟ ଶଳା ଉପରେ । ବଡ କାମିକା, ବିଶ୍ୱାସୀ ଉପକାରୀ ଲୋକ ।

ଜିନିଷପତ୍ର ରଖିବା ଓ ଯାଗାର ଯତ୍ନ ନେବା ପାଇଁ ଜଣେ ଲୋକକୁ ରହିବାକୁ ପଡିବ । ଏଥିପାଇଁ ଏହି ଜମି ଉପରେ ଗୋଟିଏ ଅସ୍ଥାୟୀ ଘର ତିଆରି କରାଗଲା । ତେବେ କିଏ ଜଗିବ ଏ ବାଡିଘର । ଅବସର ସମୟତ କିଛି ଡେରି ଅଛି । ଲୋକ ଖୋଜା ଚାଲିଲା ।

ଦିନେ କଟକ ରାଣୀହାଟ ଠାରେ ଅକସ୍ମାତ ଭେଟ ହେଲା ପୁରୁଣା ବନ୍ଧୁ ଗଙ୍ଗାଧର ପୁରର ପଣ୍ଡିତ ବିଶ୍ୱଭୂଷଣଙ୍କ ସହ ଲକ୍ଷ୍ମଣବାବୁଙ୍କର । ପଣ୍ଡିତ ଜଣେ ଜ୍ୟୋତିର୍ବିଦ, କାଳିସାଧକ । ଗଙ୍ଗାଧର ପୁର ରେଳଷ୍ଟେସନରେ ଚାକିରି କରୁଥିଲା ବେଳେ ତାଙ୍କ ସହିତ ଲକ୍ଷ୍ମଣବାବୁଙ୍କର ସୁର୍ଯ୍ୟମୈତ୍ର ସମ୍ପର୍କ ଥିଲା । ତାଙ୍କର ରୁଗ୍ଣ ପୁଅର ଆରୋଗ୍ୟଲାଭ ପାଇଁ ପଣ୍ଡିତ ମହାଶୟ ଅତିନିଷ୍ଠାର ସହ ପୂଜାଅର୍ଚ୍ଚନା କରିଥିଲେ । ଲକ୍ଷ୍ମଣବାବୁଙ୍କ ଝିଅ ସସ୍ମିତାକୁ ନିଜ ଝିଅ ଭଳି ଭଲ ପାଆନ୍ତି ପଣ୍ଡିତ ବିଶ୍ୱଭୂଷଣ ।

ବହୁ ଦିନ ପରେ ଭେଟ । ପରସ୍ପର କୁଶଳ ପଚରା ପଚରି ଚାଲିଲା । କଥା ପ୍ରସଙ୍ଗରେ ଲକ୍ଷ୍ମଣବାବୁ କହିଲେ "ପଣ୍ଡିତ ମହାଶୟ, ବହୁ ଶ୍ରମକରି ବାହାନଗାରେ ନିଜ ପାଇଁ ଗୋଟିଏ ବାସସ୍ଥାନ ଯୋଗାଡ କରି, ଅସ୍ଥାୟୀ ଘରଟେ କରିଛି । ନିଛାଟିଆ ଯାଗା, କେହି ନାହାନ୍ତି ଜଗାରଖା କରିବାକୁ । ବଡ ବାଡିଟିଏ, ବାଡଘେରା ହୋଇଛି । ଗଡିଆ ଖୋଳା ହୋଇଛି । ମାତ୍ର ଗଛବୃକ୍ଷ ଲଗାଇ ମାଛଚାଷ କରି ସ୍ଥାନଟିକୁ ବାସୋପଯୋଗୀ କରି ଗଢିବାକୁ କେହି ବିଶ୍ୱସ୍ତ ଲୋକ ନାହାନ୍ତି । ଅସ୍ଥାୟୀ ଘରେ ସନ୍ଧ୍ୟା ଦୀପଟିଏ ବି ଜଳାଯାଉନି । ମୋର ତ ଅବସର ନେବା ଆଉ କିଛି କାଳ ଡେରି ଅଛି । ମୁଁ ଖୋଜୁଛି ଜଣେ ବିଶ୍ୱସ୍ତ ଲୋକ, ଯେକି ସେଠାରେ ସବୁ ସମୟରେ ରହି ସ୍ଥାନଟକୁ ବାସୋପଯୋଗୀ କରି ତୋଳିବ । ମୁଁ ତାର ପ୍ରାପ୍ୟ ପାରିଶ୍ରମିକ ଦେବାକୁ ପ୍ରସ୍ତୁତ" । ପଣ୍ଡିତ ବିଶ୍ୱଭୂଷଣ ସଙ୍ଗେ ସଙ୍ଗେ ଉତ୍ତର ଦେଲେ "ମୋର ବର୍ତ୍ତମାନ ଅନ୍ୟ ବନ୍ଧା ଦାୟିତ୍ୱ ନାହିଁ, ମୁଁ ସେଠାରେ ରହିବାକୁ ପ୍ରସ୍ତୁତ ଅଛି । ଘର ପ୍ରତିଷ୍ଠା କରି ସ୍ଥାନଟିକୁ ଅକର୍ଷଣୀୟ କରି ତୋଳିବି" । ଲକ୍ଷ୍ମଣବାବୁ ଅତ୍ୟନ୍ତ ଖୁସି । ବିଶ୍ୱଭୂଷଣବାବୁଙ୍କ ଉପରେ ତାଙ୍କର ପ୍ରଗାଢ ଆସ୍ଥା । ଲୋକଟି ଗୁଣୀ, ଜ୍ୟୋତିଷ ପାଠ ଏବଂ ନୈଷ୍ଠିକ ପୂଜାରେ ଲୋକମାନଙ୍କୁ ଆକର୍ଷି ନିଅନ୍ତି । ବାହାନଗା ଭଳି ଗ୍ରାମାଞ୍ଚଳରେ ପଣ୍ଡିତଙ୍କ ଗୁଣର ଆଦର ନିଶ୍ଚୟ ହେବ । ଭାଗ୍ୟବାଦୀ ସରଳ ଗ୍ରାମବାସୀ ଛୁଟିବେ ନିଜ ନିଜ ଭବିଷ୍ୟତ ବିଷୟରେ ଜାଣିବାକୁ ପଣ୍ଡିତଙ୍କ ନିକଟକୁ । ଲୋକ ସମାବେଶରେ ସ୍ଥାନଟିର ନିଛାଟିଆ ଖାଁ ଖାଁ ରୂପ ବଦଳିଯିବ । ପଣ୍ଡିତ ସେହିକ୍ଷଣି ପ୍ରସ୍ତୁତ ବାହାନଗା ଆସିବାକୁ । ଲକ୍ଷ୍ମଣବାବୁ ତାଙ୍କୁ ନେଇ ବାହାନଗା ଆସିବାକୁ ମଧ୍ୟ ପ୍ରସ୍ତୁତ । ରାଣୀହାଟ ବଜାରରୁ ରୋଷେଇବାସ କରି ରହିବାର ସମସ୍ତ ସରଞ୍ଜାମ କଡା, ଡେକଚି, ବାସନକୁସନ କିଣା ହେଲା । ଅସ୍ଥାୟୀ ଘର ଓ ସେ ବେଛପରି ଯାଗାଟିକୁ ପବିତ୍ର କରିବା ପାଇଁ ପୂଜା ସରଞ୍ଜାମ ମଧ୍ୟ କିଣାଗଲା । ବାଡିରେ ଲଗାଇବା ପାଇଁ କେତୋଟି ନଡିଆ ଚାରା କିଣାଗଲା । ଦୁହେଁବନ୍ଧୁ ଟ୍ରେନରେ ଆସି ସନ୍ଧ୍ୟାରେ ପହଞ୍ଚିଲେ ବାହାନଗା । ସମ୍ପର୍କୀୟ ଶଳାଟି, ବାଡିର ଦୈନନ୍ଦିନ କାମ ସାରି ନିଜ ଘରକୁ ଫେରି ନଥାନ୍ତି । ତିନିହେଁ ମିଳି ସନ୍ଧ୍ୟାରେ ପୂଜାପାଠ କଲେ । ସନ୍ଧ୍ୟା ଦୀପ ଜଳିଲା । ପଣ୍ଡିତଙ୍କ ମୁଖର ଲଳିତ ସଂନ୍ଧ୍ୟା ପ୍ରାର୍ଥନା ସେ ସ୍ଥାନର ନିକାଞ୍ଚନତା ଦୂର କରି ଏକ ଗମ୍ଭୀର ଅଭୟସୂଚକ ବାତାବରଣ ସୃଷ୍ଟି କଲା ।

ସେହି ଦିନଠାରୁ ପଣ୍ଡିତଙ୍କ ପରାମର୍ଶ ଓ ପୌରହିତ୍ୟରେ ଜଳିଲା ଅଖଣ୍ଡ ଦୀପ । ସଂନ୍ଧ୍ୟାରେ ମଧୁର ଶ୍ଳୋକ ଆବୃତ୍ତି ଓ ସଂକୀର୍ତ୍ତନ । ସ୍ଥାନଟି ଏକ ତପସ୍ଥଳୀରେ ପରିଣତ ହେଲା । ଦିନବେଳା ପଣ୍ଡିତ ବିଶ୍ୱଭୂଷଣ ଏ ସ୍ଥାନଟିକୁ ନିଜର ଘରବାଡି ଭାବି ଅତି ଯତ୍ନରେ ନାନା ପ୍ରକାର ଗଛ ଲଗାଇ, ଗଡିଆରେ ମାଛ ଯାଆଁଳ ଛାଡି, ବାଡିଟିକୁ ସବୁଜ ଶ୍ୟାମଳ କରି ତୋଳିଲେ ।

ନିଛାଟିଆ ସ୍ଥାନଟି ସବୁଜିମାରେ, ମୃଦୁ ପବନ ଆନ୍ଦୋଳିତ ପତ୍ରର ମର୍ମର ଶବ୍ଦରେ ଏବଂ ସଂନ୍ଧ୍ୟା ଓ ସକାଳର ଲଳିତ ସଂସ୍କୃତ ବେଦପାଠ ଓ ଦେବୀ ବନ୍ଦନାରେ ଏକ ତପୋବନ ପରି ମନୋରମ ଓ ଆକର୍ଷଣୀୟ ହୋଇ ଉଠିଲା । ସଂନ୍ଧ୍ୟାର ନିସ୍ତବ୍ଧତା ଭଙ୍ଗ କରି ଗଗନେ ପବନେ ଧ୍ୱନିତ ହେଲା :

'ସର୍ବ ମଙ୍ଗଳ ମାଙ୍ଗଲ୍ୟ ଶିବେ ସର୍ବାର୍ଥେ ସାଧିକେ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନାରାୟଣି ନମଽସ୍ତୁତେ

ପ୍ରାତଃକାଳରେ ସଂଚରିତ ହେଲେ ଭାବଗମ୍ଭୀର ମଧୁର ପ୍ରାର୍ଥନା

''ଓଁ ଉଦଂ ଦାଦିତ୍ୟ ସଂକା ଶଂ ପୁସ୍ତକାକ୍ଷରାଂ ସ୍ମରେତ,
କୃଷ୍ଣା ଜୀନଧରାଂ ବ୍ରାହ୍ମୀଂ ଧ୍ୟାୟେଭାରକି ତେଽମ୍ବରେ'' ।

(ପନ୍ଦର)

''ଆମର ଥିବ ଏକ ଅଙ୍ଗୁର ବଗିଚା
ପଣତ ବିଛାଇ ତୁମେ ବସିବାକୁ ଦେବ ଥାନ,
ଡିମିରି ଗଛର ତଳେ, ସେତ ଆମ ନିଜର ଆଶ୍ରୟ''
(ଚିନା କବିତା)

ନିଜର ଆଶ୍ରୟ ସତରେ ଏପର୍ଯ୍ୟନ୍ତ ମିଳିନଥିଲା ଲକ୍ଷ୍ମଣବାବୁଙ୍କୁ । ଅବସର ଜୀବନରେ ଏ ସ୍ୱପ୍ନ ସାର୍ଥକ ହୋଇଛି, ନିଜ ପାଇଁ ମିଳିଛି ନିଜହାତ ଗଢା ଏକ ବାସଗୃହ । ''ତେବେ ପଣତବିଛାଇ ଦିଅ'' କହିବାକୁ ଏବେ ତାଙ୍କର ବୟସ ନାହିଁ । ତେବେ ସେ ମର୍ମେ ମର୍ମେ ଅନୁଭବ କରୁଛନ୍ତି । ''କେହି ଆଉ ଚୀରବର୍ଚ୍ଛୀ ମାରିବେ ନାହିଁ, ନିର୍ଭର ହେବ ଜୀବନ''।

ଅସ୍ଥାୟୀଘର ଦିବଖରା ମାଟିକୁଟା ବାଉଁଶ କାଠରେ ତିଆରି, ଭଲଘର ପରେ କରିବାକୁ ହେବ । ଲକ୍ଷ୍ମଣବାବୁ ଆନନ୍ଦରେ ରହିଛନ୍ତି ସ୍ତ୍ରୀ ଦିଝିଅ, ବିଧବା ଭଉଣୀ ଓ ଭଣଜା ସହିତ । ପୁଅ ଚାକିରି ସ୍ଥାନରେ । ପଣ୍ଡିତ ବିଶ୍ୱଭୂଷଣଙ୍କର ଆଉ ଆବଶ୍ୟକତା ନାହିଁ । ସସମ୍ମାନେ କୃତଜ୍ଞତାର ସହିତ ତାଙ୍କୁ ବିଦାୟ ଦିଆଗଲା । ନିଜର ଆତ୍ମୀୟସଜ୍ଜନଙ୍କୁ ନେଇ ସଂସାର । କ୍ଷେତ ମୂଲିଆ, ସଂପର୍କୀୟ ଶାଳକ ଓ ଭଣଜା ଯୁବକ ଜଗବଂଧୁ ସାହାଯ୍ୟରେ ନିଜହାତରେ ସବୁ ଜମିଚାଷ କରାଗଲା ।

ଏବେ ଲକ୍ଷ୍ମଣବାବୁ ଜଣେ ବଡଚାଷୀ, ଗୁହାଳରେ ଯୋଡେ ବଳଦ, ଦେଖିଲାଭଳି, ସୁନ୍ଦର ମଜବୁତ୍ ଓ କାମିକା ଲାଲ୍ ସିନ୍ଧୀ ଗାଈଟିଏ ଧଳା ବାଙ୍ଗରା ପେଟୁଆ, ବଡଦୁଧିଆଳୀ । ବର୍ଷର ସବୁ

ସମୟରେ ଦୁଧ ମିଳେ । ଏ ଅଞ୍ଚଳର ଲୋକେ ଗାଈଟିକୁ ଦେଖି ଚମକି ପଡନ୍ତି । ଏମାନଙ୍କ ସହିତ ଅଛି ଗୋଟିଏ ଛଡା, ଦାମୁଡିଆ, ଗୁହାଳ ଉରପୂର, ଘର କର୍ମ ମୁଖର, ନିରବଚ୍ଛିନ୍ନ ଜଞ୍ଜାଳ ମାତ୍ର ମୁଣ୍ଡ ବ୍ୟଥା ଚିନ୍ତା ନଥାଏ । ଭଉଣୀ ଓ ଭଣଜା ଜଗବନ୍ଧୁ ଘରଭିତର ବାହାର ଧନ୍ଦା ସମ୍ଭାଳି ନିଅନ୍ତି । ଅବସର ଜୀବନରେ ଆଶଙ୍କିତ ଆଳସ୍ୟ ନିରର୍ଥକ ଓ ପଙ୍ଗୁ କରିପାରିନି ଜୀବନକୁ ।

ଏହି ଭଣଜା ଜଗବନ୍ଧୁ, ବାପମାଆ ଛେଉଣ୍ଡ । ସେ, ଏକଦା ଥିଲା ଏକ ବୋଝ, ଗୁରୁଦାୟିତ୍ୱ, ଏବେ ପାଲଟିଯାଇଛି ଏକ ପରିସମ୍ପତ୍ତି, ବଡ ସହାୟକ, ପାଟରା ମୌଚାର ଭିଣୋଇ ହଗୁରା ଓ ଭଉଣୀ ଲକ୍ଷ୍ମୀ ପୁରୀ ଜଗନ୍ନାଥ ଦର୍ଶନରୁ ଫେରି ପାଇଥିଲେ ଏହି ପିଲାଟିକୁ । ନାଁ ଦେଇଥିଲେ ଜଗବନ୍ଧୁ । ଜଗବନ୍ଧୁ ତିନିବର୍ଷରେ ହେଲା ମାତୃହରା । ଛଅ ବର୍ଷରେ ପିତୃହରା । ଗୁଜବ ହେଲା, ବଡମାଆ ଛୁଆଟିକୁ ମାରିଦେଇ ତାର ସମସ୍ତ ସମ୍ପତ୍ତି ବାଡି ଭୋଗ କରିବ । ଆଶଙ୍କିତ ହୋଇ ପିଲାର ଗାର୍ଜିନ ମଉଳା, ଲକ୍ଷ୍ମଣଙ୍କ ବଡଭାଇ ବାପମାଆ ଛେଉଣ୍ଡ ପିଲାଟିକୁ ନେଇ ଆସିଲେ ନିଜ ଘରକୁ । ତାର ପୈତୃକ ଅସ୍ଥାବର ସମ୍ପତ୍ତି ସବୁ ମଧ୍ୟ ନେଇ ଆସିଲେ । ବର୍ଷକ ଭିତରେ ଜଗବନ୍ଧୁର ପୈତୃକ ଘର କାଛଡା ହେଲା । ଥରେ ଲକ୍ଷ୍ମଣବାବୁ ନିଜ କର୍ମସ୍ଥଳୀ କଟକରୁ ଜନ୍ମସ୍ଥାନ ନହଞ୍ଜରାକୁ ଯାଇଥାନ୍ତି । ସାତ ବର୍ଷର ଜଗବନ୍ଧୁ କହିଲା "ମାମୁଁ ମୁଁ ତୁମ ସଙ୍ଗରେ କଟକ ଯିବି" ପିଲାଟି ସ୍ୱରରେ ଆକୁଳତା ସାନମାମୁଁଙ୍କୁ ଅଭିଭୂତ କଲା । ସଙ୍ଗରେ ନେଇଆସିଲେ ଜଗବନ୍ଧୁକୁ । ନିଜ ଝିଅ ପୁଅଙ୍କ ସହିତ ମିଶି ପୁଅ ଭଳି ପାଠ ପଢି ମେଟ୍ରିକ ଓ ପରେ ଆଇ.ଟି.ଆଇ. ଇଲେକ୍ଟ୍ରିକାଲ ପାଶକଲା । ଚାକିରି ମିଳିନଥାଏ । ବାହାନଗାରେ ରହି ମାମୁଁଙ୍କର ଚାଷବାସ ତଦାରଖ କରୁଥାଏ ।

ମଉଳା ଗାର୍ଜିନ ଭାବରେ ଜଗବନ୍ଧୁର କିଛି ଜମି ମହାଜନକୁ ବିଶ୍ୱାସୀ କବଲା କରି ବଡ ମାମୁଁ ଋଣ ଆଣିଥିଲେ ଅଭାବର ତାଡନାରେ । ଲୋକେ ଅପବାଦ ରଟିଲେ "ବାପ ମା ଛେଉଣ୍ଡ ପିଲାଟିର ଜମି ସବୁ ବିକ୍ରି କରି ଦେଉଛି ବଡମାମୁଁ" । ସାନମାମୁଁ ଲକ୍ଷ୍ମଣବାବୁଙ୍କୁ ବଡ ବାଧିଲା । ମହାଜନର ପ୍ରାପ୍ୟ ଦେଇ ଜମି ଛଡାଇ ଆଣିଲେ । ଜଗବନ୍ଧୁ ସାବାଳକ ହେଲାଣି । ସେ ନିଜେ ତାର ପୈତୃକ ଜମିର ଚାଷ ଖବର ବୁଝିବ । ମାମୁଁ ଘର ବାହାନଗାରେ ରହି, ନିଜ ଚାଷ ଖବର ମଧ୍ୟ ଜଗବନ୍ଧୁ ବୁଝିଲା । ସୌଭାଗ୍ୟକ୍ରମେ, ଲକ୍ଷ୍ମଣବାବୁଙ୍କ ପ୍ରଭାବରେ ଜଗବନ୍ଧୁ ଚାରିବାଟିଆ ଏ.ଆର୍.ସି.ର ଇଲେକ୍ଟ୍ରିସିଆନ ଚାକିରି ପାଇଗଲା । ତାର ଚାକିରି ପରେ, ଲକ୍ଷ୍ମଣବାବୁ ନିକଟସ୍ଥ ରେମୁଣା ଗାଁର ଗୋଟିଏ ସର୍ବଗୁଣସମ୍ପନ୍ନା ଝିଅ ସହିତ ଜଗବନ୍ଧୁର ବିବାହ ସମାପନ କରିଦେଲେ । ଝିଅଟି ସୁଗୃହିଣୀ, ସହନଶୀଳା, ସ୍ନେହଶୀଳା ସେବାପରାୟଣା ବୋହୂ ପାଲଟି ଯାଇଥିଲା ।

ପୁଅ ଇଞ୍ଜିନିଅର ନିଜସ୍ତ୍ରୀ ଓ ପିଲାଙ୍କୁ ନେଇ ରହେ ଚାକିରିସ୍ଥଳୀରେ । ଛୁଟି ପାଇଲେ ଦି ଚାରିଦିନ ପାଇଁ ଅବସରପ୍ରାପ୍ତ ବାପାଙ୍କ ବାସଗୃହ ବାହାନଗାକୁ ଆସେ । ଲକ୍ଷ୍ମଣବାବୁଙ୍କ ପ୍ରୌଢାବସ୍ଥାରେ ନିଜ ତିଆରି ଘରେ ସଦାବେଳେ ରହୁଛନ୍ତି ପ୍ରୌଢାସ୍ତ୍ରୀ, ଭଉଣୀ, ଭଣଜା ଜଗବନ୍ଧୁର ସ୍ତ୍ରୀ ଓ ତାର ସନ୍ତାନ ସନ୍ତତି ଚିନିଜଣ- ପ୍ରତି ମାସରେ ଜଗବନ୍ଧୁ କିଛି ଦିନ ପାଇଁ ଆସେ ବାହାନଗା ।

ଲକ୍ଷ୍ମଣବାବୁଙ୍କ ଦିନ କଟିଯାଏ ମହା ଉଲ୍ଲାସରେ । ଆର୍ଥିକ ଅଭାବ ନାହିଁ । ଗୃହସ୍ଥ ଜୀବନର ପରିପୂର୍ଣ୍ଣତା ବୋଧ ତାଙ୍କୁ ଉତ୍‌ଫୁଲ୍ଲ କରି ରିଖିଛି । ବାପମାଆ ଛେଉଣ୍ଡ ଭଣଜା ପ୍ରତି ତାଙ୍କର କର୍ତ୍ତବ୍ୟର ସୁସମ୍ପାଦନ ତାଙ୍କୁ ଏକ ଅନିର୍ବାଚନୀୟ ଗର୍ବ ଆନନ୍ଦ ଦେଇଛି । ଭଣଜାବୋହୂର ଅକୁଣ୍ଠିତ ଆନ୍ତରିକ ସେବା ଓ ଚା ସନ୍ତାନ ସନ୍ତତିଙ୍କର ହସକାନ୍ଦ ଦୁଷ୍ଟାମି ଭରି ଦେଇଛି ଅପୂର୍ବ ପାର୍ଥିବ ସୁଖ ।

(ଷୋହଳ)

'ଧାନ କାଟୁକାଟୁ ଗାଇଦିଏ ପଦେ ଭୁଲିଜମିଦାର ସାହୁଙ୍କୁ
ନିମିଷକ ଲାଗି ପାଶୋରିଯାଏ ସେ ଜୀବନର ଶଠ ରାହୁଙ୍କୁ'

ଲକ୍ଷ୍ମଣବାବୁ ଅତୀତଜୀବନର ଶଠରାହୁଙ୍କୁ ଆଜି ଭୁଲିଯାଇଛନ୍ତି । ଜୀବନରେ ତାଙ୍କର ଆସି ଯାଇଛି ସ୍ୱର୍ଣ୍ଣଯୁଗ । ବାହାନାଗାର ସେହି ଅପନ୍ତରା ଯାଗାରେ ଗଢିଉଠିଛି ସୁରମ୍ୟଉଦ୍ୟାନ, ଅଂଗୁର ସିନା ଫଳିବନାହିଁ ଏ ମାଟିରେ । ଫଳିଛି ଅଜସ୍ର ପିଜୁଳି, ଲେମ୍ବୁ, ଅମୃତଭଣ୍ଡା, ନଡିଆ, ଫୁଟିଛି ବିଭିନ୍ନ ପ୍ରକାର ଫୁଲ, ଚମ୍ପାଟଗର ମଧୁମାଳତୀ, ପ୍ରାୟ ଏକ ଏକର ଘର ବାଡିର ମଧ୍ୟସ୍ଥଳରେ ଛୋଟ ଏକ ପୋଖରି ନାତିଗଭୀର । ରୋହି ଭାକୁର ଫକ୍‌ଫକ୍ ଡେଉଁଛନ୍ତି, ପୋଖରୀକୂଳ ଆମ୍ବ ଜାମ୍ବରୋଳ ନାଗାଙ୍କେଳ ବୃକ୍ଷର ଆନ୍ଦୋଳିତ ପତ୍ର ସିଂଚି ଯାଉଛି ଶୀତଳ ବାରି । ଶିହରି ଉଠୁଛି ଦେହ, ଗ୍ରୀଷ୍ମକାଳର ବଡ ସୁଶୀତଳ ସ୍ଥାନଟି, ସହରରୁ ଝିଅ ଜୋଇଁ ପୁଅବୋହୂ ନାତି ନାତୁଣୀ ଖରାଛୁଟିରେ ଆସି ମହାଆନନ୍ଦରେ କିଛିଦିନ ରହିକରି ଯାଆନ୍ତି । ଘରପାଖରେ ଏକ ଛୋଟକାଟିଆ ବଜାର ଗଢିଉଠିଛି । ନିକଟରେ ହାଇସ୍କୁଲ, ବ୍ଲକ୍‌ଅଫିସ୍, ହୋମିଓପ୍ୟାଥି ଚିକିତ୍ସାଳୟ । ଅଂଚଳଟି ଛୋଟ ବଜାରର ରୂପ ନେଲାଣି । ଜୀବନଯାତ୍ରା ପାଇଁ ବିଶେଷ ଅସୁବିଧା ନାହିଁ ଏଠାରେ ।

ଚାଷଜମିଗୁଡ଼ିକ ଅବଶ୍ୟ ବେଶ୍ ଦୂରରେ । ହଳିଆ ଅଛନ୍ତି । ୧୫ବର୍ଷର କିଶୋରଟିଏ ଖୁଣ୍ଟାରୁ କାଠ ବିକ୍ରି କରି ଆସି ଲକ୍ଷ୍ମଣବାବୁଙ୍କ କଥା ଓ ବ୍ୟବହାରରେ ମୁଗ୍‌ଧ ହୋଇ ମୂଲିଆ ରୂପେ ରହିଯାଇଛି, ନାଁ ତାର ହରିଆ । ପୁଅ ପରି ତାଙ୍କୁ ଭଲପାଆନ୍ତି ଲକ୍ଷ୍ମଣବାବୁ । ହରିଆ ଚାଷର ସବୁ ଦାୟିତ୍ୱ ନିଏ, ହଳକରେ, ବଳଦ ପିଠିରେ କଟାଧାନ ବୋହିଆଣେ, ଦୂରସ୍ଥ ସୁବର୍ଣ୍ଣ ନାଳି ବିଲରେ ସୁନାଫଳେ, ଲମ୍ବା ଲମ୍ବା ଧାନ ଛିଞ୍ଚାଦେଖି ଲକ୍ଷ୍ମଣବାବୁଙ୍କ ବୁକୁ ଉଚ୍ଛୁଳିପଡେ । ଘର ବାଡିକୁ ଲାଗି ଅଳ୍ପ କିଛି ଜମି, ଲକ୍ଷ୍ମଣବାବୁ ସମୟ ପାଇଲେ ଏହି ପାଖ ଧାନବିଲରେ ସେ ନିଜେ ମଧ୍ୟ ଶକ୍ତିମୁତାବକ ଚାଷକାମ କରନ୍ତି । ମନରେ ଦ୍ୱିଧା ନଥାଏ, ବରଂ ଆନନ୍ଦ ପାଆନ୍ତି କାମରୁ । ବେଶି ଅନୁରାଗ ତାଙ୍କର ପନିପରିବା ଫଳ ଚାଷ କରିବାରେ । ସେହି ବାଡିଟି ଭିତରେ ବହୁ ସମୟ ଦେଇ ଯତ୍ନର ସହିତ ପନିପରିବା ଫଳଚାଷ କରନ୍ତି । ଛୋଟ ଛୋଟ ଗଛଗୁଡ଼ିକୁ ନିଜରପୁଅ ନାତିପରି ସ୍ନେହ କରନ୍ତି, ସେଗୁଡିକର ଯତ୍ନ ନିଅନ୍ତି । ଧୀରେ ଧୀରେ ଦୂର ଜମିଗୁଡ଼ିକ ବିକ୍ରି କରି ନିଜ ଘରକୁ ଲାଗି ଭଲ ଚାଷଜମି କିଣିବାକୁ ଲାଗିରେ ଲକ୍ଷ୍ମଣ ବାବୁ । ଭାଗ୍ୟ ସୁପ୍ରସନ୍ନ ଥିଲେ ସବୁ ସହଜରେ ହୋଇଯାଏ । ଅଳ୍ପ କେଇଟା ବର୍ଷ ଭିତେର ନିଜ ବାସଗୃହକୁ ଲାଗି ଛଅ ସାତ ଏକରଜମି କିଣା ହୋଇଗଲା । ଗୋଟିଏ ଚକ, ଘରବାଡିରୁ ଠିଆ

ହୋଉଥିବାଲୋକଙ୍କୁ ସବୁଜ ଧାନର ଶରତ୍‌କାଳୀନ ବାତାନ୍ଦୋଳିତ ନୃତ୍ୟ, ପାଚିଆସୁଥିବା ଧାନର ଅପୂର୍ବ ମହକ, ବର୍ଷାଦିନରେ ଗୋଟିଏ ଜମିରୁ ଅନ୍ୟଏକ ଜମିକୁ ବାହିଯାଉଥିବା ବର୍ଷାଜଳର ତରଙ୍ଗାୟିତ ଶବ୍ଦ ବିମୋହିତ କରେ । ଲକ୍ଷ୍ମଣବାବୁ କବି ନୁହନ୍ତି, ମାତ୍ର ସଂଗୀତପ୍ରିୟ ପ୍ରାଣରେ ତାଙ୍କର ଗୁଞ୍ଜରିଉଠେ

'ଦେଖିନବ କାଳିକା ବକାଳିକା ମାଳିକା'

କିମ୍ବା 'ଧାନ୍ୟକ୍ଷେତ୍ରେ ପକ୍ୱଶାଳି ଦିଶଇ ସୁନ୍ଦର'

ପାଖେ ପାଖେ ଥାଏ ହରିଆ, ପୁଅଭଳି ସ୍ନେହକରନ୍ତି ତାକୁ । ଦିହେଁ ମିଶି ବାଡିବଗିଚା କାମ କରନ୍ତି । କିଛି ଗୋଟେ ଦରକାର ପଡିଲେ ଡାକଛାଡନ୍ତି । ''ହରିଆ ହରିଆ'' । ହରିଆ ବୁଦ୍ଧିମାନ ପରିଶ୍ରମୀ ବିଶ୍ୱାସୀ, ଚାଷକାମଠାରୁ ଆରମ୍ଭ କରି ବଜାର ସଉଦାଦି କାମକରେ । ପୁଅ ଓ ଭଣଜା ଯେ ଦୂରରେ ରହିଛନ୍ତି ଚାକିରି ପାଇଁ, ଏ ଦୁଃଖସ୍ପର୍ଶ କରେ ନା ଲକ୍ଷ୍ମଣବାବୁଙ୍କୁ, ଭଣଜାର ପୁଅ ଝିଅତ ଘରକୁ କୋଳାହଳମୟ କରିଦେଉଛନ୍ତି ।

ହରିଆ ମହାରଣା ବଂଶର, ମିସ୍ତ୍ରୀକାମ ବିଶେଷ ଜାଣିନଥିଲା, କିନ୍ତୁ କୌଳିକ ବୃତ୍ତିର ବୀଜ ତା ଭିତରେ ଅନ୍ତର୍ନିହିତ ଥିଲା, ତେଣୁ କାଠ ମିସ୍ତ୍ରୀକାମ ତାକୁ ବୟସ ବଢିବା ସଂଗେ ସଂଗେ ଅଧିକ ଆକୃଷ୍ଟ କଲା, ମିସ୍ତ୍ରୀ ସରଞ୍ଜାମ ମେଳା ବା ହାଟରୁ କିଣି ନିଜେ ନିଜେ କାଠ କାମ କରିଚାଲିଲା, ଚାଷକାମରୁ ବିଶ୍ରାମ ବେଳେ । କିଛି ବର୍ଷଭିତରେ ବେଶ୍ ଭଲଭାବେ ଜାଣିଗଲା କାଠ ମିସ୍ତ୍ରୀ କାମ, ବିବାହ ବୟସ ବି ପାଖେଇ ଆସିଲା, ବାରମାସିଆ ଭାବେ କେତେ ରୋଜଗାର କରି ନିଜେ ବାହାହେବ ଓ ବିବାହିତ ଜୀବନଯାପନ କରିବ ? କ୍ଷେତମୂଲିଆ ଠାରୁ କାଠମିସ୍ତ୍ରୀର ମଜୁରି ବେଶି, ଖଟପଲଙ୍କ ଓ ଅନ୍ୟାନ୍ୟ ଘରକରଣା ଜିନିଷ ତିଆରି କରି ଦିପଇସା ଅଧିକ ରୋଜଗାର ମଧକରିହେବ । ବାରବର୍ଷ ହଳିଆକାମ କରି ହରିଆ ଲକ୍ଷ୍ମଣବାବୁଙ୍କ ଘରୁ ବିଦାୟ ନେଲା, ଲକ୍ଷ୍ମଣବାବୁ ଓ ପରିବାରର ସମସ୍ତେ ତାର ବିଦାୟ ଦିନ ବହୁତ ମନଦୁଃଖ କରିଥିଲେ । ସତେଯେମିତି ଘରର ଏକ ଭେଣ୍ଡିଆ ପୁଅ ଘର ଛାଡି ଚାଲିଯାଉଛି ।

ହରିଆ ଘରଛାଡି ଗଲାପରେ ସ୍ଥାନୀୟ ଲୋକଟିକୁ ବାରମାସିଆ ରଖାଗଲା, ସେ କିନ୍ତୁ ବେଶିଦିନ ରହିଲା ନାହିଁ । ପର ପର ଦୁଇ ତିନିଜଣକୁ ବାରମାସିଆ ରଖାଗଲା, କାମରେ କିନ୍ତୁ ସେମାନଙ୍କର ଅବହେଳା, ପ୍ରତ୍ୟେକ ବର୍ଷ ନୂଆ ବାରମାସିଆ ଖୋଜା, ବଡ ଦିକ୍‌ଦାର । ହରିଆର ଅନୁପସ୍ଥିତି ଏହି ସମୟରେ ଉତ୍କଟ ରୂପେ ଅନୁଭବ କରାହେଉଥାଏ । ହରିଆର ବିଚ୍ଛେଦରେ ସତେ ଯେମିତି ମନ ଦୁଃଖରେ ଘରବାଡି ଗଛ ବୃକ୍ଷ ନିସ୍ତେଜ ହୋଇ ପଡିଲେ । ହରିଆର ପ୍ରଯତ୍ନରେ ଯେତେ ଧାନ ଫସଲ ଅମଳ କରାଯାଉଥିଲା ତାହା ଆଉ ହେଲା ନାହିଁ । ସେ ଥିଲାବେଳେ ପ୍ରଚୁର ଧାନ ଫଳୁଥାଏ । କେତେକ ଜମିରେ ଦି ଫସଲ ହୁଏ । ଘରର ଛୋଟ ଖମାରଟି ଭର୍ତ୍ତି । ଖୁସିମନରେ ଝିଅ ଜୋଇଁ ଓ ପୁଅ ବୋହୂ ପାଖକୁ ଚାଉଳ ମୁଢିଚୁଡା ପଠାଯାଏ । ପାଖଆଖ ଗାଁର ପରିଚିତ ଗରିବ ଲୋକ ଧାନ କରଜ ଚାହିଁଲେ ସ୍ୱଚ୍ଛ ସୁଧରେ ନିଅନ୍ତି ମଧ୍ୟ । ଲକ୍ଷ୍ମଣବାବୁଙ୍କ ମନରେ ଏକ ଛୋଟ ଧରଣର ଚାଷୀମହାଜନର ଗର୍ବ ଆନନ୍ଦ ଆସୁଥାଏ । ମନେ ପଡିଯାଉଥାଏ ପଚାଶ ଦଶକର ତିରୋଟ ସମୟରେ

ଭାଗଚାଷୀ ଓ କ୍ଷେତ ମୂଲିଆଙ୍କ ଦୁରବସ୍ଥା ଓ ମହାଜନମାନଙ୍କ ନିଷ୍ଠୁର ଅତ୍ୟାଚାର । ଦୟା ଅନୁକମ୍ପାରେ ପ୍ରାଣ ତାଙ୍କର ନରମ ସ୍ୱଚ୍ଛ ହୋଇଉଠେ । ଚାକିରି କାଳରେ ବିଶେଷ ସାହାଯ୍ୟ ପରିବାରର ବାହାରେ କାହାକୁ ଦେଇ ପାରିନଥିଲେ । ସୀମିତ ପରିବେଶରେ ସୀମିତ ଶକ୍ତି ଥିଲା ଛୋଟ ରେଳକର୍ମଚାରୀର । ଆଜି ଜଣେ ସଫଳ ଚାଷୀଭାବେ, ଗାଁ ଲୋକଙ୍କୁ ଅଭାବବେଳେ ସାହାଯ୍ୟ କରି ଯଥେଷ୍ଟ ଆନନ୍ଦ ଓ ସମ୍ମାନ-ଆଦର ପାଉଛନ୍ତି । ଅବସର ଜୀବନ ପ୍ରକୃତରେ ଆଣିଦେଇଛି ଏକ ସୁବର୍ଣ୍ଣ ଯୁଗ ।

ମାତ୍ର ଏଯୁଗ ବେଶିଦିନ ରହିଲା ନାହିଁ । ହରିଆର ଅବର୍ତ୍ତମାନରେ ଏବଂ ଅସ୍ଥାୟୀ ବାରମାସିଆଙ୍କ ଅବହେଳା ଓ ଅଯତ୍ନ ହେତୁ ଧାନ ଅମଳ ବହୁତ କମିଗଲା । ଲକ୍ଷ୍ମଣବାବୁଙ୍କ ମୁଣ୍ଡରେ ଦାୟିତ୍ୱର ଭାର ବଢ଼ିଗଲା । ବୃଦ୍ଧବୟସରେ ଏତେ ବୋଝ ନେବାକୁ ସେ ଉଚିତ ମଣିଲେ ନାହିଁ । ଘରପାଖରେ ତ ସବୁଜମି, ଅନ୍ୟଚାଷୀକୁ ଜମି ବଖରା ଦେଇଦେଲେ ନିଜକୁ ଚାଷ ପାଇଁ ଖର୍ଚ୍ଚ କରିବାକୁ ପଡିବ ନାହିଁ । ଧନ୍ଦି ହେବାକୁ ପଡିବ ନାହିଁ । ଜମି ବଖରା ଦେଲା ପରେ ଆଉ ବଳଦର ଆବଶ୍ୟକତା କ'ଣ, ବାରମାସିଆ ନଥିଲେ ଗାଈବାଛୁରୀ ଦେଖ୍ କିଏ ନେବ । ସୁଦୃଶ୍ୟ ବଳବାନ ବଳଦ ଯୋଡ଼ିକୁ ନେଇ ସେ ହାଟରେ ବିକ୍ରି କରିଦେଲେ । ନିର୍ନିମେଷ ନୟନରେ ବହୁ ଦିନରୁ ଯତ୍ନରେ ପାଳିତ ବଳଦ ଦିଟି ଚାହିଁ ରହିଥାନ୍ତି ଲକ୍ଷ୍ମଣବାବୁଙ୍କୁ । ସତେ ଯେମିତି ସେମାନଙ୍କ ଆଖିର ଲୁହଝରି ଆସୁଥାଏ । କଂସେଇ ଘରକୁ ଠେଲି ଦେଉଛନ୍ତି କି ଖାଉଚି । ବିକଳରେ ହମ୍ବା ହମ୍ବା ରଡ଼ିଛାଡୁଥାନ୍ତି ପଘାରେ ବନ୍ଧା ବଳଦ ଦିଟି ଗୋରୁ ହାଟରେ । ସେମାନଙ୍କ ହମ୍ବାରଡ଼ି ମିଶିଯାଉଥାଏ ଅନ୍ୟବଳଦଙ୍କ ହମ୍ବା ରଡ଼ି ସହିତ । ମନେ ପଡ଼ିଲା ଲକ୍ଷ୍ମଣବାବୁଙ୍କର କେଉଁ ଏକ ବିପ୍ଳବୀ ଚୀନ କବିର କବିତା,

"Fierce-browed I loudly defy a thousand
pointing fingers
Head bowed a willing ox
I serve the children

(ଲୁଷନ)

ଦୁର୍ଦ୍ଧର୍ଷ ବୀର ସଂଗ୍ରାମୀପରି ଶକ୍ତିଶାଳୀ ବଳଦ ଦିଟି ଅକୁଣ୍ଠିତ ଚିତ୍ତରେ ଲକ୍ଷ୍ମଣବାବୁଙ୍କ ଜୀବନ ସଂଗ୍ରାମରେ ସାହାଯ୍ୟ କରିଆସିଛନ୍ତି । ଆଜି ସେମାନଙ୍କୁ ଠେଲି ଦିଆଯାଉଛି ଅନ୍ୟ ହାତକୁ । ମୂକ ବଳଦ ଦି'ଟି କଣ ଭାବୁଥିବେ କୃତଘ୍ନ ମଣିଷ ସମ୍ପର୍କରେ । ଭାବିପାରିଲେନି ଲକ୍ଷ୍ମଣବାବୁ । ଦୁଃଖ ଓ ଗ୍ଲାନିରେ ଅଶ୍ରୁଳ ନୟନ ତାଙ୍କର ଅପସରି ଗଲା ବଳଦ ଦିଟାଙ୍କ ଠାରୁ । ସେଦିନ ସଂଧ୍ୟାରେ ଶୂନ୍‌ଶାନ ଗୁହାଳକୁ ଯାଇ ପାରିନଥିଲେ ଦୁଃଖ ସନ୍ତପ୍ତ ଲକ୍ଷ୍ମଣବାବୁ, ତାଙ୍କର ସ୍ତ୍ରୀ ଓ ଭଉଣୀ ।

(ସତରେ)

"ଯାହା ମନ ଯହିଁ ରସିଲା......"

ସେଦିନ ସହଦେବବାବୁ ଚିଠିଟି ପଢ଼ି ବିସ୍ମିତ ହେଲେ । ଚନ୍ଦ୍ରକାନ୍ତା, ସବାସାନ ଶାଳୀ, ସୁଠାମ ସୁନ୍ଦର କନକଗୋରୀ ବଡସୌଖିନ, କଳାପ୍ରିୟ । ଏହିବର୍ଷ ମେଟ୍ରିକ ପାଶ୍ କରିଛି ଦ୍ୱିତୀୟ ଶ୍ରେଣୀରେ । ଆସନ୍ତା ବର୍ଷ କଲେଜରେ ପଢ଼ିବ । ଛଇଛଟକ ରୂପର ଚମକତାରେ ନଚେଇବ କଲେଜ ପିଲାଙ୍କୁ । ଧରାଛୁଆଁ ଦେବନି, କେତେ ତରୁଣର ଜୀବନ ଉଦ୍ୟାନରେ ସ୍ୱପ୍ନର ଫୁଲ ଫୁଟେଇ ଉଭେଇ ଯିବ । କୁହୁକୁହୁ ଗୀତ ଗାଇ କେତେ ହୃଦୟକୁ ଆକର୍ଷି ଆଣିବ । ଧରାଦେବନି କେଉଁଠି । ରୂପଗୁଣର ସମକକ୍ଷ ସୌମ୍ୟସୁନ୍ଦର ଉଚ୍ଚଶିକ୍ଷିତ ପଦାଧିକାରୀ ତରୁଣଟିକୁ ବରିନେବ ଜୀବନ ସାଥୀ ରୂପେ- ଏଇଆ ଥିଲା ଅଧ୍ୟାପକ ସହଦେବଙ୍କର ଚନ୍ଦ୍ରକାନ୍ତାର ଭବିଷ୍ୟତ ସମ୍ପର୍କରେ କଳ୍ପନା । ତାର ବାପା ମାଆ ଇଞ୍ଜିନିୟର ଭାଇଙ୍କର ମଧ୍ୟ ଥିଲା ଏପରି ଭାବନା । କିନ୍ତୁ ଏ କ'ଣ ହେଲା । ଚନ୍ଦ୍ରକାନ୍ତା ଜିଦ୍ ଧରିଛି, ସେ ବିବାହ କରିବ ତାର ଠିକ୍ ଉପର ଭାଉଣୀର ଜଣେ ସହପାଠୀକୁ । ଗଡଜାତର କେଉଁ ଅଖ୍ୟାତ ଅଗମ୍ୟ ଗାଁରେ ପିଲାଟିର ଘର । ସାଧାରଣ ଛାତ୍ର । ବି.ଏସ୍.ସି. ପରେ ଏମ୍.ଏସ୍.ସି. ପଢ଼ିବାକୁ ଇଚ୍ଛାଥିଲେ ବି ଯୋଗ୍ୟତା ନାମଲେଖାରେ ପ୍ରତିବନ୍ଧକ ହୋଇଛି । ଚାକିରି ମିଳିନି । ଅନ୍ୟନୋପାୟ ହୋଇ ଗାଁ ପାଖ ଏକ ମାଇନର ସ୍କୁଲରେ ଶିକ୍ଷକ ହୋଇଛନ୍ତି ।

ଲକ୍ଷ୍ମଣବାବୁଙ୍କର ଉଚ୍ଚ ଆଶା ଅକାଙ୍‌କ୍ଷା ଧୂଳିସାତ ହୋଇଛି । ମନ ଦୁଃଖରେ ଶ୍ୱାଳିଁ ସହଦେବବାବୁଙ୍କ ସାହାଯ୍ୟ ମାଗିଛନ୍ତି । ଚନ୍ଦ୍ରକାନ୍ତାକୁ ବୁଝାଇ ତାର ମନ ପରିବର୍ତ୍ତନ କରିବାକୁ । ସହଦେବବାବୁ ଶାଶୂଶଶୂରଙ୍କ ମନୋଭାବ ପ୍ରତି ସମ୍ବେଦନଶୀଳ ହେଲେ । ଏପରି ଘଟଣାରେ ବିସ୍ମିତ ମଧ୍ୟ ହେଲେ । କିନ୍ତୁ ମନରେ ତାଙ୍କର ସନ୍ଦେହ, ଏପରି କ୍ଷେତ୍ରରେ ତାଙ୍କର ଉପଦେଶ ପରାମର୍ଶ କେତେଦୂର ସଫଳ ହେବ ।

ଚପଳା କିଶୋରୀର ପ୍ରେମ, ପ୍ରେମିକଟି ନିଜ ଭଉଣୀର ସହପାଠୀ । ନିଜ ଜାତି, ସୁନ୍ଦର ଗୌରବର୍ଣ୍ଣ ଭଦ୍ର ଯୁବକଟିଏ । ଭଉଣୀ ନମିତା ସଙ୍ଗରେ କଲେଜରୁ ବାହାନଗା ଅନେକଥର ଆସିଛି ଯୁବକଟି । ନବମଶ୍ରେଣୀର ଛାତ୍ରୀ ଚନ୍ଦ୍ରକାନ୍ତା, ହାସ୍ୟମୟୀ ଚପଳା, ଅବାଧରେ ମିଶିଛି ଯୁବକଟି ସହ । ଭଲପାଇବାର ବୟସତ ଏ ନୁହେଁ । ସ୍ନେହ ସଦ୍‌ଭାବ ଉପୁଜି ଥାଇପାରେ । କିଏ ଭାବିଥିଲା ଏହି ଶ୍ରଦ୍ଧା ସଦ୍‌ଭାବ ପ୍ରେମରେ ପରିଣତ ହେବ ବୋଲି ? ଯୁବକଟିର ପ୍ରେମ ପ୍ରବଣତା ଥିଲେ, ଭଉଣୀ ସବିତା ସହିତ ତ ତା ଅଙ୍କୁରି ଉଠିଥାନ୍ତା । ଚନ୍ଦ୍ରକାନ୍ତା କ'ଣ ପ୍ରକୃତରେ ସୁନ୍ଦରୀ ବୋଲି, ଯୁବକଟି ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ !! ଏତେ କମ୍ ବୟସରୁ ଚନ୍ଦ୍ରକାନ୍ତା, ପ୍ରେମ କରି ଜୀବନସାଥୀ ଭାବେ ଏହି ଯୁବକଟିକୁ ବାଛିନେବାକୁ କିମିତି ମନ ବଳାଇଲା ? ଏସବୁ ଭାବି ଚାଲିଥିଲେ ସହଦେବବାବୁ । ବିଚିତ୍ର ନାରୀ ପ୍ରକୃତି, ବିଚିତ୍ର ପ୍ରେମର ଗତି । ସ୍ନେହଶ୍ରଦ୍ଧା କେତେବେଳେ ଯେ ପ୍ରେମର ରୂପ ନେବ କେହି ଅନୁମାନ କରିପାରନ୍ତି ନାହିଁ । ଏପରିକି ସମ୍ପୃକ୍ତ କିଶୋର କିଶୋରୀ, ନାରୀପୁରୁଷ ମଧ୍ୟ ।

ଶାନ୍ତୀ ଚନ୍ଦ୍ରକାନ୍ତାର ସ୍ୱଭାବ ଭଲଭାବେ ଜାଣନ୍ତି ସହଦେବ ବାବୁ । ବୋହୂ ସାଜିବାର ପ୍ରବଣତା ତାଠାରେ ପିଲାବୟସରୁ ପ୍ରବଳ ଥିବାର ସେ ଲକ୍ଷ୍ୟ କରିଛନ୍ତି । ରୂପସଜ୍ଜା, ସିନେମା ଦେଖା, ମେଳା ବଜାର ବୁଲା ପ୍ରତି ତାର ପ୍ରଖର ଝୁଙ୍କ । ଯାହା କିଣିବାକୁ ବା କରିବାକୁ ଚାହିଁଥିବ ନିଶ୍ଚୟ କରିବ । ବାପ ମାଆଙ୍କର ଶେଷ ସନ୍ତାନ, ସ୍ନେହ ଆଦର ଟିକିଏ ଅଧିକ ପାଉଥାଏ । ପିଲାଟିବେଳୁ ସେ ଏକଚିଟିଆ । ଏପରି ଏକ ବାଳିକାକୁ କ'ଣ ବା ସେ ବୁଝାଇବେ, ପ୍ରେମ ତ ଅନ୍ଧ, ପ୍ରେମାସକ୍ତ ବ୍ୟକ୍ତି କ'ଣ ଭାବେ ଭବିଷ୍ୟତ, ଉଜ୍ଜ୍ୱଳମୟ କି ଅନ୍ଧକାରାଚ୍ଛନ୍ନ ? ସହଦେବବାବୁଙ୍କର ନିଜ ପରିବାରରେ ଅତୀତରେ ଘଟିଥିବା ଏପରି ଏକ ଘଟଣା କଥା ମନେ ପଡିଗଲା । ସେ ସେତେବେଳେ ଏକାଦଶ ଶ୍ରେଣୀର ଛାତ୍ର । ନିଜର ସାନ ଭଉଣୀର ପୂର୍ବ ପରିଚିତ ଓ ସମ୍ପର୍କୀୟ ମୁଚଦାର ଭିଣୋଇ ପ୍ରତି ପ୍ରଗାଢ ପ୍ରେମ ଜାତ ହେଲା । ଜିଦ୍ ସେହି ଲୋକକୁ ବିବାହ କରିବ । ପରିବାରର ଶତ ଉପଦେଶ ଓ ବାଧା ସତ୍ତ୍ୱେ ବିବାହ କଲା ସେହି ଯୁବକକୁ । ବହୁଦିନ ଧରି ସେ ଭଉଣୀ ଓ ତାର ସ୍ୱାମୀ ସହିତ ସହଦେବବାବୁଙ୍କ ପରିବାରର ସମ୍ପର୍କ ନଥିଲା । ତେଣୁ ଯାହା ଅବଶ୍ୟମ୍ଭାବୀ ତାର ପ୍ରତିରୋଧ କରିବାକୁ ବୃଥା ଚେଷ୍ଟା କାହିଁକି ? ଭାବିଲେ ସହଦେବବାବୁ । ତଥାପି ଶାଶୂଶଶୂରଙ୍କ ମନରେ ସାନ୍ତ୍ୱନା ଦେବା ପାଇଁ ନିଜର କର୍ତ୍ତବ୍ୟ ପାଳନ ଉପଲକ୍ଷେ ସସ୍ତ୍ରୀକ ଚାଲିଲେ ଶଶୁର ଘର ବାହାନଗା ।

ସେଠାରେ ପହଞ୍ଚି ଦେଖିଲେ ଦୁଃଖ ଓ ଚିନ୍ତାର ଏକ କଳାବାଦଲ ଛାଇଯାଇଛି ସମଗ୍ର ପରିବାରକୁ । ଶାଶୂଶଶୂରଙ୍କ ମନରେ ବିରସ ଭାବ ତୀବ୍ର । ପିଉସୀ ନାନୀଙ୍କ କଟୂକ୍ତି କେତେବେଳେ ଚନ୍ଦ୍ରକାନ୍ତାକୁ କନ୍ଦଉଛି ତ କେତେବେଳେ ରଗେଇ ଦେଉଛି । ଚନ୍ଦ୍ରକାନ୍ତା ସହଦେବ ଭାଇ ଓ ସସ୍ମିତା ନାନୀ ପାଖରେ କାନ୍ଦି କାନ୍ଦି ଅସ୍ଥିର । ଅତି ଛୋଟବେଳେ ଏହି ଶାଳୀଟି ସହଦେବ ବାବୁଙ୍କ ସଙ୍ଗରେ ଚାକିରି ସ୍ଥଳରେ ମାସ ମାସ ଧରି ରହିଛି । ନିଜ ପୁଅ ପୁତୁରା ସଙ୍ଗରେ ଖେଳିଛି, ଅଭିମାନ କରିଛି । ଶିଶୁସୁଲଭ ଅଝଟ କରିଛି । ନାନୀ ଭିଣୋଇ ଅତି ଭଲପାଆନ୍ତି ଏହି କୁନି କଣ୍ଢେଇ ଭଳି ସୁନ୍ଦର ଝିଅଟିକୁ । ଆଜି ତାର ଏକ ମହାର୍ଘ ଅଝଟ, ସେହି ସୌମ୍ୟ ତରୁଣଟିକୁ ହିଁ ଜୀବନସାଥୀ କରିବ ।

ସହଦେବବାବୁ ନିରୋଳାରେ ଚନ୍ଦ୍ରକାନ୍ତାକୁ ବୁଝାଇଲେ "ବିବାହ ଏକ କଣ୍ଢେଇ ଖେଳ ନୁହେଁ । ଭବିଷ୍ୟତର ହାନିଲାଭ ବିଚାର କରି ସିଦ୍ଧାନ୍ତ ନେବାକୁ ହୁଏ । ସ୍ନେହ ଶ୍ରଦ୍ଧା ବନ୍ଧୁତାକୁ ପ୍ରେମରେ ରୂପ ଦେଲାବେଳେ ଚିନ୍ତା କରିବା କଥା, ସାବଧାନ ହେବା କଥା, ତୁ କାହିଁକି ତୋର ଉଜ୍ଜ୍ୱଳ ବିବାହିତ ଜୀବନର ସମ୍ଭାବନାକୁ ଏପରି ପରାହତ କରୁଛୁ ? ମନଦେଇ ଆଉ କିଛି ବର୍ଷ ପଢାପଢି କର । ଭାଇଭଳି ଇଞ୍ଜିନିଅର ବା ଡାକ୍ତର ବା ଅଫିସରଟେ ବାହାହୋଇ ଆଡମ୍ବରରେ ଜୀବନ କାଟିବୁ" ।
"ଭାଇ, ମୁଁ କଣ ଜାଣିଶୁଣି ସ୍ନେହଶ୍ରଦ୍ଧା ବନ୍ଧୁତାକୁ ପ୍ରେମରେ ପରିଣତ କଲି । ଅବଲୀଳା କ୍ରମେ ତ ଏହା ଘଟିଗଲା । ମୁଁ ଜାଣେନା କାହିଁକି ମୁଁ ଏତେ ମୋହାଚ୍ଛନ୍ନ । ମୋ ଅନ୍ତରଟା ସାରା ଆବୋରି ବସିଛନ୍ତି ସେ । ମୁଁ ଏବେ ତାଙ୍କୁ ମୋ ହୃଦୟରୁ ତଡିଦେଇ ପାରିବିନି । ଭବିଷ୍ୟତ କଥା କିଏ କହିବ ? ଆଜି ଯେ ରାଜେନ୍ଦ୍ରରନେ କାଲି ସେ ଫକିର୍ । ଅନ୍ୟତ୍ର ବାହାହୋଇ ତାଙ୍କୁ ଯଦି ମନଭିତରୁ ଦୂର କରି ପାରିବି

ନାହିଁ, ତେବେ ମୋ ଜୀବନ ଓ ମୋର ଅନ୍ୟ ସ୍ୱାମୀଙ୍କ ଜୀବନ ଦୁର୍ବିସହ ହେବ ନାହିଁ କି ? ଜାଣିଶୁଣି କାହିଁକି ଦାମ୍ପତ୍ୟ ଜୀବନରେ ଏ ଦୁର୍ଯୋଗ-ଡାକି ଆଣିବି ? କହିଲ ଭାଇ, ନାନୀ, 'ମନର ଶାନ୍ତି ବଡ ନା, ଅଶାନ୍ତି ଜୀବନରେ ଧନ ଦୌଲତ ପଦମର୍ଯ୍ୟାଦା ବଡ ?'' ଚନ୍ଦ୍ରକାନ୍ତା କଥା କହୁଛି ଏକ ପ୍ରେମବିଦଗ୍ଧା ବୁଦ୍ଧିମତୀ ନାୟିକା ଭଳି । ଅକାଟ୍ୟ ତାର ଯୁକ୍ତି । ଆବେଗମୟ ତାର ମିନତି । ସହଦେବବାବୁ ଚନ୍ଦ୍ରକାନ୍ତାର ମନ ପରିବର୍ତ୍ତନ କରିବାକୁ କ'ଣ ପ୍ରୟାସ କରିବେ, ଠିକ୍ କଲେ ଶାଶୂ ଶଶୂର ଓ ପରିବାରର ଅନ୍ୟଙ୍କୁ ବୁଝାଇବେ । ଯାହା ଅପରିହାର୍ଯ୍ୟ ତାକୁ ମାନି ନେବାକୁ ହେବ । ଶାଶୂ ଶଶୂରଙ୍କୁ ସେ ବୁଝାଇ ଚାଲିଲେ :

''ମନ ଏକ ବିଚିତ୍ର ବସ୍ତୁ । ଯେଉଁଠି ଥରେ ଲାଗିଯିବ, ସେଠାରୁ ଜୋର ଜବରଦସ୍ତ କରି ଓଟାରି ଆଣିବାର ଚେଷ୍ଟା ନିଷ୍ଫଳ, ବିପଜ୍ଜନକ ମଧ୍ୟ । ଭାଗ୍ୟକୁ ଆଦରି ନେବାକୁ ହେବ । ତା ମନର ସନ୍ତୋଷ ଓ ବାସନା କାହିଁକି ଆମେ ବ୍ୟାଘାତ କରିବା ? ଏହାଦ୍ୱାରା ସେ ଶାନ୍ତି ପାଇବ ନା ଆପଣମାନେ ଶାନ୍ତି ପାଇବେ ? ଏହାର ଅନ୍ୟ ବିକଳ୍ପ ନଭାବି, ଯଥାଶୀଘ୍ର ତାର ବିବାହ ସେଠାରେ କରିଦିଆଯାଉ'' ।

ଶଶୂର ଲକ୍ଷ୍ମଣବାବୁ ସ୍ଥିତପ୍ରଜ୍ଞ ଉଦାର ବିଜ୍ଞ ବ୍ୟକ୍ତି । ସମ୍ବେଦନଶୀଳ ବିଚାରବନ୍ତ ବ୍ୟକ୍ତିଙ୍କ ପରାମର୍ଶ ମାନିନେଲେ । ଭଲପାଉଥିବା ଯୁବକ ସହିତ ଚନ୍ଦ୍ରକାନ୍ତାର ବିବାହ ଅଳ୍ପଦିନ ଭିତରେ ଯଥାର୍ଥ ସାମାଜିକ ରୀତିରେ ସମାହିତ ହେଲା । ବିଧିର ବିଧାନ କେ କରିବ ଆନ ।

(ଅଠର)

'ହାଡ ବଢା ହରି ଭଜନ କର
ଦ୍ରବ୍ୟ ବଢା କଛୁ ଦେୟ
ଅକଲ୍ ବଢୀ ଉପକାର କର
ଜୀବନ କା ଫଲ୍‌ୟେହ'
(କବୀର)

ଜୀବନରେ ବହୁ ବାଧାବିଘ୍ନ ଆସିଛି । ଲକ୍ଷ୍ମଣବାବୁ କିନ୍ତୁ ତାଙ୍କ ଆଦର୍ଶରୁ ବିଚ୍ୟୁତ ହୋଇ ନାହାନ୍ତି । କେତେକ ମୌଳିକ ନୀତି ଆଦର୍ଶ ସେ ମାନିଚଳନ୍ତି । ଏହି ନୀତିଗୁଡିକୁ ତାଙ୍କର କାର୍ଯ୍ୟକଳାପରେ ପ୍ରତିଫଳିତ ହୁଏ । ଅଭାବ ଭିତରେ ମଧ୍ୟ ଜୀବନକୁ ପୂର୍ଣ୍ଣରୂପେ ଉପଭୋଗ କରନ୍ତି । ଈଶ୍ୱରଙ୍କ ପ୍ରତି ପ୍ରକୃତ ଭକ୍ତି, ଶକ୍ତି ଅନୁଯାୟୀ ଦାନ ଓ ପରୋପକାର ତାଙ୍କ ଜୀବନର ବ୍ରତ । ବାସ୍ତବ ସମାଜବାଦ ଗଢିବାରେ ଯେ ଏଗୁଡିକ ଏକାନ୍ତ ଆବଶ୍ୟକ । ଫିଡେଲ କାଷ୍ଟ୍ରୋଙ୍କ ଉକ୍ତି ସେ ମନେ ରଖିଥାନ୍ତି ''ମନରୁ ପୁଞ୍ଜିବାଦୀ ଅଭିଳାଷ ଦୂର ନକଲେ ପ୍ରକୃତ ସମାଜବାଦ ପ୍ରତିଷ୍ଠା ହେବ ନାହିଁ; ହେଲେ ବି ସ୍ଥାୟୀ ହେବ ନାହିଁ'' । ନେତୃବର୍ଗଙ୍କ ଆତ୍ମସ୍ୱାର୍ଥ ଅନ୍ୱେଷଣ ତ ଲେନିନ୍ ଷ୍ଟାଲିନଙ୍କ କଷ୍ଟସାଧ୍ୟ ସତୁରି ବର୍ଷର ପୃଥିବୀର ପ୍ରଥମ ସାମ୍ୟବାଦୀ ରାଷ୍ଟ୍ରର ପତନ ଘଟାଇଲା । ଲକ୍ଷ୍ମଣବାବୁ ଭଲଭାବେ

ଜାଣନ୍ତି, ନିଜର ପରିବାର କେବଳ ସୁଖରେ ରହିଲେ ଜୀବନର ପ୍ରକୃତ ଶାନ୍ତି ମିଳେନା, ସାହି ପଡିଶା ପ୍ରିୟପରିଜନ ସମସ୍ତେ ସୁଖରେ ରହିଲେ ପ୍ରକୃତ ସୁଖ ମିଳେ । ସାଧ୍ୟମତେ ସେ ଅନ୍ୟର ଉପକାର କରିବାକୁ ଚେଷ୍ଟାକରନ୍ତି ।

ସେଦିନ ସଂନ୍ଧ୍ୟାରେ ପ୍ରଥମ ଶଶୁର ଘରକୁ ଲକ୍ଷ୍ମଣବାବୁ ଯାଇଥାନ୍ତି । ଶଳା ଭାଉଜ ଅନୁନୟ କରି କହିଲେ "ଲକ୍ଷ୍ମଣବାବୁ, ସବୁ ଦାୟିତ୍ୱ ତ ତୁମର ସରିଗଲା । ଚାରିଚାରିଟା ଝିଅ ଓ ଗୋଟିଏ ପୁଅର ବାହାଘର କରିଦେଲ ସୁପାତ୍ର ସୁପାତ୍ରୀରେ । ଆମ ପିଲାପିଲିଙ୍କ କଥା ବୁଝ । ଏହାଙ୍କର (ତାଙ୍କ ସ୍ୱାମୀଙ୍କର) ତ ବିଶେଷ ପରିଚୟ ନାହିଁ । ଏବେ ଅଧିକାଂଶ ଦିନ ରୋଗରେ ପଡୁଛନ୍ତି । ମୋର ବି ଅପରେସନ ପରେ ଦେହ ଦୁର୍ବଳ ହୋଇପଡିଛି । ବୋହୂଟେ ଘରକୁ ଆସିଲେ ମୋତେ ଟିକିଏ ହାଲୁକା ପଡନ୍ତା । ତୁମ ଶଳା ବେଶ୍ ଖୁସି ହୁଅନ୍ତେ । ଭଲ ପାତ୍ରୀଟେ ପୁଅ ସମୀର ପାଇଁ ଦେଖ । ସମୀର ତ ଚାକିରି କଲାଣି" ।

ଏହି ଶଳା ଭାଉଜଟିକୁ ଲକ୍ଷ୍ମଣବାବୁ ଖୁବ୍ ଭଲ ପାଆନ୍ତି । ରୁଗ୍ଣ ଶଳା ଆଉ କେତେ ଦିନ ବା ବଞ୍ଚିବେ । ପୁଅ ବାହାଘର ହୋଇଗଲେ ସେ ଖୁବ୍ ଆନନ୍ଦ ପାଇବେ । ପାତ୍ରୀର ଅଭାବ ନାହିଁ । ତେବେ ଶଳାଙ୍କ ପରିବାରର ଆବଶ୍ୟକତା ଅନୁଯାୟୀ ବନ୍ଧୁଘରଟିଏ ବ୍ୟବସ୍ଥା କରିବାକୁ ହେବ । ଋଣ କରି ପୁଅକୁ ଶଳା ଇଞ୍ଜିନିଅରିଂ ପଢାଇଥିଲେ, ଋଣ ସୁଝା ହୋଇନି । ଘରର ଆର୍ଥିକ ଅବସ୍ଥା ଏବେ ବି ସ୍ୱଚ୍ଛଳ ହୋଇନି । ବାହାଘର କରିବା ପାଇଁ ହାତରେ ଧନ ନଥିବ । ଧନ ଦେବାକୁ ପ୍ରସ୍ତୁତ ଥିବା କନ୍ୟା ପିତାର ସନ୍ଧାନ ନେବାକୁ ହେବ । ଲକ୍ଷ୍ମଣବାବୁ ଯୌତୁକ ପ୍ରଥାର ସମର୍ଥକ ନୁହଁନ୍ତି । ବିନା ଯୌତୁକରେ ଚାରିଟି ଝିଅକୁ ବିବାହ ଦେଇଛନ୍ତି । ଅବଶ୍ୟ ଝିଅଗୁଡିକ ସୁନ୍ଦରୀ ଓ ଶିକ୍ଷିତା ଥିଲେ । ଯୌତୁକ ଦାବି ସେପରି ହୋଇନଥିଲା । ମାତ୍ର ଅଭାବରେ ପଡିଲେ ବନ୍ଧୁଙ୍କର ସାହାଯ୍ୟ ଲୋଡିବା କିଛି ଅନ୍ୟାୟ ନୁହେଁ । ନିଜ ପୁଅ ବାହାବେଳେ ମଧ୍ୟ କନ୍ୟା ପିତା ଉପରେ ଯୌତୁକ ଚାପ ସେ ଦେଇନଥିଲେ । ଦୂର ସ୍ଥାନରୁ ବରଯାତ୍ରୀଙ୍କ ଯିବା ଖର୍ଚ୍ଚ ବହୁଳ ହେଉଥିବାରୁ ଏବଂ ଅବସର ଜୀବନରେ ଅର୍ଥାଭାବ ଥିବାରୁ ସେ କନ୍ୟାପିତାଠାରୁ କିଛିଟା ରାସ୍ତାଖର୍ଚ୍ଚ ଚାହିଁଥିଲେ । କନ୍ୟାପିତା ମନା କରିଦେବାରୁ ତାଙ୍କର ଅନ୍ୟ ସମସ୍ତ ଉପଢୌକନ ପ୍ରତି ଘୃଣାଚକ୍ଷୁରେ ଦୃଷ୍ଟି ଦେଇନଥିଲେ । କିନ୍ତୁ ଶଳାର ଆର୍ଥିକ ଅବସ୍ଥାକୁ ବିଚାର କରି କନ୍ୟାପିତା ଠାରୁ ଯୌତୁକ ବାବଦ ନଗଦ ଟଙ୍କା ଆଣିବାକୁ ହେବ । ଲକ୍ଷ୍ମଣବାବୁ ଏପରି ଏକ ପରିବାର ସନ୍ଧାନରେ ଲାଗିପଡିଲେ । ପୁରୀଜିଲ୍ଲା କାକଟପୁରସ୍ଥ ଜନୈକ ଭଦ୍ରବ୍ୟକ୍ତିଙ୍କ ଝିଅ ସହିତ ବିବାହ ପ୍ରସ୍ତାବ ପକାଇଲେ । ଭଦ୍ରବ୍ୟକ୍ତି ରେଳବିଭାଗରେ କାମ କରନ୍ତି । ଝିଅ ମେଟ୍ରିକ ପାଶ୍ କରିଛି । ଶିକ୍ଷିତା, ମାତ୍ର ରଙ୍ଗରେ କାଳି । ଭଦ୍ରବ୍ୟକ୍ତି ଗୋଟିଏ କାଳିଝିଅ ପାଇଁ ଇଞ୍ଜିନିଅର ପାତ୍ରଟେ ପାଇବାର ସୁଯୋଗ ହାତଛଡା କଲେ ନାହିଁ । ବିନାକୁଣ୍ଠାରେ ଲକ୍ଷ୍ମଣବାବୁଙ୍କ ଦାବି ଅନୁସାରେ ନଗଦ ଟଙ୍କାକାରେ ଯୌତୁକ ଦେଇଥିଲେ । ଝିଅଟି ଲକ୍ଷ୍ମଣବାବୁଙ୍କ ପୁଅ ଓ ବ୍ୱାଇଁଙ୍କର ନା ପସନ୍ଦ ହୋଇଥିଲା । ତେବେ ସେମାନଙ୍କ ମତାମତକୁ ଭ୍ରୂକ୍ଷେପ ନକରି ସେଠାରେ ଭଣଜା ସମୀରର ବିବାହ ସମାହିତ ହେଲା । ନବବଧୂର ରୂପ ଓ

ଗୁଣରେ ଶାଶୂ ଶଶୁର ପ୍ରିୟ ପତିଙ୍କ କେତେଦୂର ସନ୍ତୁଷ୍ଟ ହୋଇଥିଲେ ଏହା ଠିକ୍ ରୂପେ ଜାଣିବା ଏବେ ଅନାବଶ୍ୟକ । ମାତ୍ର ଯେଉଁ କାଳିବୋହୂକୁ ରସିକ ନଣନ୍ଦେଇ ଥଟ୍ଟାରେ 'କଳାବତୀ' ବୋଲି ପରିହାସ କରୁଥିଲେ ଏବଂ ଯାହାର ଗୁଣାବଳୀ ବିତର୍କର ବିଷୟ ଥିଲା, ସେହି ଭାଗ୍ୟବତୀ ରମଣୀଟି ଆଣିଦେଲା ସମୀର ଜୀବନରେ ଧନ ଓ ସ୍ୱଚ୍ଛଳତା ଏବଂ ଅତି ମେଧାବୀ ପୁଅ ଝିଅ ତିନୋଟି ।

ଲକ୍ଷ୍ମଣବାବୁଙ୍କ ଭଳି ଶଳା କୃଷ୍ଣମୋହନ ଆର୍ଥିକ ଦୁରବସ୍ଥା ଭିତରେ ତିନି ପୁଅ ଓ ଦି ଝିଅଙ୍କୁ ବେଶ୍ ଶିକ୍ଷିତ କରିଥିଲେ । ଦ୍ୱିତୀୟ ପୁଅ ବି.ଏସ୍.ସି. କୃତିତ୍ୱର ସହ ପାଶ୍ କରି ନିଜ ପ୍ରଚେଷ୍ଟାରେ ଫରେଷ୍ଟରେଞ୍ଜର ଚାକିରି କଲା । ତୃତୀୟ ପୁଅ ବିଏ ପାଶ୍ କରି ଚାଷବାସ ଓ ଛୋଟ ବ୍ୟବସାୟ କରି ନିଜ ଭିଟାମାଟିରେ ଅଛି । କୃଷ୍ଣମୋହନଙ୍କର ଦିଟି ଝିଅ । ଗୋଟିଏ ଗୋରୀ, ଅନ୍ୟଟି ଶ୍ୟାମଳୀ । ମାତ୍ର ଦୁହେଁ କଲେଜ ପାଠୋଇ । ଉଭୟଙ୍କର ଗଠନ ଆକର୍ଷଣୀୟ, ବ୍ୟବହାର ମଧୁର, ନମ୍ର । ଗୋରୀ କନ୍ୟା ପାଇଁ ତ ବିବାହର ସମସ୍ୟା ନଥିଲା । ତେବେ ପୁଅମାନେ ଚାକିରି କରିବା ପୂର୍ବରୁ ବଡଝିଅ ଶୈଳଜାର ବିବାହ କ୍ଷେତ୍ରରେ ଅର୍ଥାଭାବ ପ୍ରବଳ ପ୍ରତିବନ୍ଧକ ହୋଇଥିଲା । ତେବେ ଏ ପ୍ରତିବନ୍ଧକ ସହଦେବ ବାବୁ ଓ ତାଙ୍କ ଶଶୁର ଲକ୍ଷ୍ମଣ ବାବୁଙ୍କ ପ୍ରଚେଷ୍ଟାରେ ଦୂରୀଭୂତ ହୋଇଥିଲା । ସାନଝିଅ ଶ୍ୟାମଳିଟିର ବାହାଘର ପାଇଁ ଲକ୍ଷ୍ମଣବାବୁ କେତେ ଗୁଡିଏ ପ୍ରସ୍ତାବ ଆଣଥିଲେ । ନିଜେ ଶ୍ରମ ସ୍ୱୀକାର କରି ଦୂରଦୂରାନ୍ତକୁ ଯାଇଥିଲେ ବର ପିତା ମାତା ସହ ଆଲୋଚନା କରିବାକୁ । କେତୋଟି ଯାଗାରୁ ବିଫଳ ମନୋରଥ ହୋଇ ଫେରିଥିଲେ । ଲକ୍ଷ୍ମଣବାବୁଙ୍କ ଚରିତ୍ରର ବଡ ଲକ୍ଷଣ ହେଉଛି ସେ କୌଣସିଟିରେ ହତାଶ ହୁଅନ୍ତି ନାହିଁ । ଧୈର୍ଯ୍ୟଧରି ଲକ୍ଷ୍ୟ ହାସଲ ପାଇଁ ସବୁପ୍ରକାର ଚେଷ୍ଟା କରି ଚାଲନ୍ତି । ଶେଷରେ ସାଫଲ୍ୟ ମିଳେ । ଏ କ୍ଷେତ୍ରରେ ସେୟା ହେଲା । ଶେଷରେ ନିଜର ଦ୍ୱିତୀୟ ଯାମାତାର ଦାଦା ପୁଅ ଭାଇ ସଙ୍ଗରେ ଶ୍ୟାମଳୀ ଝିଅଟିର ବିବାହ ସମ୍ପନ୍ନ ହେଲା । ବର ରାଉରକେଲାରେ ଚାକିରି କରନ୍ତି । ସେମାନଙ୍କ ଦାମ୍ପତ୍ୟ ଜୀବନ ସୁଖମୟ ।

ପ୍ରଜାପତି ଘଟସୂତ୍ର କାମରେ ଲକ୍ଷ୍ମଣବାବୁ କି ଆନନ୍ଦ ପାଉଥିଲେ ଜଣା ନାହିଁ । ତେବେ ନିଃସ୍ୱାର୍ଥପର ଭାବେ ଅନ୍ୟର ଉପକାର କରିବା ପାଇଁ ଏହି କାର୍ଯ୍ୟ ସେ ବିନା ଦ୍ୱିଧାରେ କରୁଥିଲେ ।

(ଉଣେଇଶ)

''କେତେ କେତେ ଜନ ଉଭେଇ ଯିବେ ଦୁଇ ଦିନରେ
ମୋ ପ୍ରାଣ ସୌରଭ ମହକୁଥିବ ଏ ଭୂବନରେ''

(ନନ୍ଦକିଶୋର)

ଗୋଧୂଳିର କମଳାରଙ୍ଗୀ ସୂର୍ଯ୍ୟ କିରଣ ଦାଣ୍ଡ କୃଷ୍ଣଚୂଡା, ବାଡି ସଜନା ଗଛ ଉପରେ ଅପରୂପ ସୌନ୍ଦର୍ଯ୍ୟ ସୃଷ୍ଟିକରିଛି । ମୁଗ୍ଧ ନୟନରେ ଲକ୍ଷ୍ମଣବାବୁ ଚାହିଁଛନ୍ତି ସେହିଆଡକୁ । ନିକଟ ରାସ୍ତାରେ ଫେରି ଯାଉଛନ୍ତି କେଉଁଦୂର ବିଲବାଡିରେ କାମସାରି ଖଟିଖିଆ ମଣିଷ କେତେ । ଏହି ବାହାନଗାର ଷ୍ଟେସନ

ମାଷ୍ଟର ହୋଇଥିଲେ ପ୍ରାୟ ବତିଶ ବର୍ଷ ତଳେ, ଏହାଭିତରେ ଦେଶ ସ୍ୱାଧୀନ ହେଲା, ଜମିଦାରୀ ଉଚ୍ଛେଦ ହେଲା, ଭାଗଚାଷୀ ଆଇନ ପାଶ୍ ହେଲା, ତଥାପି ଏ ଖଟିଖିଆ ଦିନମୂଲିଆଙ୍କ ଭାଗ୍ୟ ବଦଳିଲା ନାହିଁ । କାରଣ କ'ଣ ? ଅର୍ଥନୈତିକ ସଂସ୍କାର ରାଜନୀତିର ଘଟ ପରିବର୍ତ୍ତନ, ତତ୍ତ୍ୱଆଦର୍ଶ ପାଇଁ ଆନ୍ଦୋଳନ ସବୁ କ'ଣ ନିରର୍ଥକ ? କେତେ ଆଶାନେଇ ପ୍ରଜା ଆନ୍ଦୋଳନକୁ ପ୍ରୋତ୍ସାହିତ କରୁଥିଲେ ଲକ୍ଷ୍ମଣବାବୁ, ପୋଲିସ ଗ୍ରେପ୍ତାରକୁ ଏଡାଇବା ପାଇଁ କେତେ ଆନ୍ଦୋଳନକାରୀ ଆତ୍ମଗୋପନ କରୁଥିଲେ ଲକ୍ଷ୍ମଣବାବୁଙ୍କ ବସାରେ, ନିଜ ଗାଁ ଘରେ ଏବଂ ଶ୍ୱଶୁର ଘରେ । ମନେପଡେ ଆଦରର ଶଳାଭାଉଜଟି ଲାଜଲାଜ ମୁଖରେ, କେତେ ଯତ୍ନରେ ତାଙ୍କର ଅନୁରୋଧରେ ଏହି ଆତ୍ମଗୋପନକାରୀଙ୍କୁ ଖାଦ୍ୟ ପାନୀୟ ଯୋଗାଇ ଦେଉଥିଲେ । ବୟସ ଭାରରେ ଦେହ ଶିଥିଳ ହୋଇ ଗଲାଣି, କିନ୍ତୁ ସେ ଦିନର ଆଦର୍ଶର ଉଦ୍ଦୀପନା, ଭୟ ଓ ରୋମାଞ୍ଚ ମନେ ପଡିଲେ ଆଜି ବି ଦେହରେ ଏକ ଅପୂର୍ବ ଭାବାବେଗ ଜାତ ହେଉଛି । ସେ ସ୍ୱପ୍ନର ଦିନଗୁଡିକ ଜୀବନ୍ତ ହୋଇଉଠୁଛି । ଅନ୍ଧକାର ଭେଦକରି ନୂତନ ଆଲୋକ ଆସିବାର ପ୍ରତ୍ୟାଶା ଏବଂ ଉଦବିଗ୍ନ ପ୍ରତୀକ୍ଷା ପୌଢଜୀବନରେ ତାରୁଣ୍ୟର ଚଞ୍ଚଳତା ଫେରାଇ ଆଣୁଛି । କାହିଁ ଗଲେ ସେଦିନର ଦୁର୍ଦ୍ଦାନ୍ତ ସୈନିକ, ନିଧିଆ ମାଧିଆ ରାମ ଶ୍ୟାମ । ଗାନ୍ଧୀଜୀଙ୍କ ଅହିଂସା ଆନ୍ଦୋଳନର ଡାକରାରେ ଜାଗିଉଠିଥିଲେ । ସାମ୍ୟବାଦୀ ରୁଷିଆର ବଜ୍ରନିନାଦ ଏବଂ ଲାଲ୍ ଝଣ୍ଡାର ଶୋଣିତ ଆହ୍ୱାନରେ ଖଡ୍ଗ ଉତ୍ତୋଳ କରିବାକୁ ମଧ ପ୍ରସ୍ତୁତଥିଲେ । ରଜା ଜମିଦାର ସାହୁକାରମାନଙ୍କ ପ୍ରାଣରେ ଭୀତିସଞ୍ଚାର କରିଥିଲେ ।

ରାସ୍ତାରେ ଯାଉଥବା ଜଣେ ପ୍ରୌଢ ଉପରେ ଦୃଷ୍ଟି ପଡିଗଲା ଲକ୍ଷ୍ମଣବାବୁଙ୍କର । ଚିହ୍ନିଲା ଚିହ୍ନିଲା ଭଳି ମନେ ହେଲା । ଚଷମାଟିକୁ ପୋଛି ଦେଇ ଭଲକରି ନିରିଖେଇ ଚାହିଁଲେ । ଆରେ ଏତ ଶ୍ୟାମ, ଅତୀତର କୃଷକ ଆନ୍ଦୋଳନ ବେଳର ଗାଁ ନେତା । ଡାକ ଛାଡିଲେ ଶ୍ୟାମ ଶାମ କିରେ ? ଶ୍ୟାମ ବୁଲିପଡି ଚାହିଁଲା । ହାତ ଠାରି ଡାକିଲେ ଲକ୍ଷ୍ମଣବାବୁ । ଶ୍ୟାମ ପାଖକୁ ଆସି ଚମକି ଗଲା । ବିସ୍ମୟ ଆନନ୍ଦରେ କୁରୁଜି ଯାଇ ନମସ୍କାର କରି ପଚାରିଲା, "କ୍ଷେପନ ବାବୁ ଆପଣ ଏଠାରେ କେବେଠୁଁ ।" ଲକ୍ଷ୍ମଣବାବୁ କହିଲେ : "ଏଠି ପରା ମୁଁ ଘରକରି ୬ ମାସ ହେଲା ରହିଲିଣି । ଚାକିରିରୁ ଅବସର ନେଲିଣି । ନିଛାଟିଆ ଯାଗା ପାଖ ଆଖରେ ପଡୋଶୀ ବିଶେଷ ନାହାନ୍ତି । ପୁରୁଣା ଚିହ୍ନା ଲୋକଙ୍କୁ ଖୋଜୁଛି । ଆଜି ଯାହା ହେଉ ତୋର ଦେଖା ମିଳିଗଲା । ହେଉ, କହ ତୋର ପିଲା ଛୁଆ କିମିତି ଅଛନ୍ତି । ତୋ ଗାଁର ଲୋକମାନଙ୍କ ଅବସ୍ଥା କିପରି ?" ଶ୍ୟାମ ଗାଁର ଅଧିକାଂଶ କ୍ଷେତ ମୂଲିଆ, ନାମମାତ୍ର ଚାଷୀ କେତୋଟି । ଜମିଦାରର ଶୋଷଣ ବିରୁଦ୍ଧରେ ଲାଲଝଣ୍ଡା ତଳେ ଏକଜୁଟ ହୋଇ ବିଦ୍ରୋହ ଘୋଷଣା କରିଥିଲେ । ଜମିଦାରଙ୍କ ଗୁଣ୍ଡା ଓ ପୁଲିସଠାରୁ ଅକଥନୀୟ ନିର୍ଯାତନା ସହିଥିଲେ, ଜମିଦାରୀ ଉଚ୍ଛେଦ ଓ ଭାଗଚାଷୀ ଆଇନ୍ ପରେ ଅବସ୍ଥା ନିଶ୍ଚୟ ସୁଧୁରିଥିବ ବୋଲି ଭାବିଥିଲେ ଲକ୍ଷ୍ମଣବାବୁ । ମାତ୍ର ଆଶ୍ଚର୍ଯ୍ୟ ହେଲେ ଶୁଣି ଶ୍ୟାମ କହୁଛି : "ନା ବାବୁ ଅବସ୍ଥା କିଛି ବଦଳି ନାହିଁ । କେତେକଙ୍କ ଅବସ୍ଥା ଅଧିକ ଶୋଚନୀୟ ହୋଇଯାଇଛି । ଜମିଦାରୀ ଉଚ୍ଛେଦର ଠିକ୍ ପୂର୍ବରୁ ଜମିଦାର

ଜମି ପଟା କରି ଦେଇଥିଲେ କେତେଜଣଙ୍କୁ । ବେନାମୀ ପଟା କରି ନିଜ ଅକ୍ତିଆରରେ କେତେ ଜମି ରଖିଲେ । ଖର୍ଦ୍ଦିକରିଥିବା ଲୋକେ କେସ୍ କରି ଗରିବ ଭାଗଚାଷୀଙ୍କ ଠାରୁ ଜମି ଛଡାଇ ନେଲେ । ଏବେ ଆଉ ଗାଁରେ ଭାଗଚାଷୀ ନାହାନ୍ତି । ଆଖପାଖ ଅଞ୍ଚଳର ପଇସାବାଲା ଲୋକେ ଜମିମାଲିକ । ଗରିବ ଖଟିଖିଆ ଆଜି ମଧ୍ୟ ଖଟିଖିଆ, ଦରଦାମ ହୁ ହୁ ବଢୁଥିବାବେଳେ ମୂଲିଆଙ୍କ ଅବସ୍ଥା ଅସମ୍ଭାଳ'' । ଲକ୍ଷ୍ମଣବାବୁ ଖୋକୋଚ୍ଛ୍ୱାସର ସହ କହିଲେ 'ଏତେ ଆନ୍ଦୋଳନର ଶେଷ ପରିଣତି କ'ଣ ଏଇଆ ! ବ୍ଲକ ଓ ପଞ୍ଚାୟତ ତୁମର ଅବସ୍ଥା ସୁଧୁରିବା ପାଇଁ କ'ଣ କରୁଛନ୍ତି ?''

''କଣ କରିବେ ବାବୁ, ବଡି ମରୁଡି ବାତ୍ୟାବେଳେ ରିଲିଫ୍ ଦେବା, ଜମିଥିବାବାଲାଙ୍କୁ ଋଣ ଏବଂ ରିହାତି ଦରରେ ସାର ଆଦି ଯୋଗାଇ ଦେବା ଛଡା ଆଉ କ'ଣ କରୁଛନ୍ତି । ଆମ ପାଇଁ ନା ଅଛି ଚାକିରି ନା ବର୍ଷ ତମାମ କାମ । ସେଇଥି ପାଇଁ ଭିଟାମାଟି ଛାଡି ପଞ୍ଜାବ ହରିଆନା ଓ ସୁରଟକୁ ଦାଦନ ହୋଇ ଭେଣ୍ଡିଆମାନେ ଚାଲିଯାଉଛନ୍ତି'' । ଲକ୍ଷ୍ମଣବାବୁ ପଚାରିଲେ 'ବ୍ଲକବାବୁ ତୁମକୁ ଗାଈ କୁକୁଡା ଘୁଷୁରୀ ଯୋଗାଇ ଦେଉନାହାନ୍ତି । କୁକୁଡାଚାଷ, ମାଛଚାଷ, ଦୁଗ୍ଧ ଉତ୍ପାଦନ କରି ରୋଜଗାର କରିବାକୁ ପରାମର୍ଶ ଦେଉନାହାନ୍ତି ?' 'ନା ବାବୁ ଆମଗାଁ ଲୋକେ ତ କିଛି ପାଉନାହାନ୍ତି । ଶୁଣୁଛୁ ପାଖ ଗାଁର ଛୋଟ ବଡ ଚାଷୀସବୁ ଗାଈ କୁକୁଡା ଆଣୁଛନ୍ତି' ଲକ୍ଷ୍ମଣ ବାବୁ କହିଲେ ''ଶ୍ୟାମ ତୁମକୁ ପୁନର୍ବାର ଏକଜୁଟ ହେବାକୁ ପଡିବ । ପଞ୍ଚାୟତ ଓ ବ୍ଲକରେ ନିଜର ଦାବି ସାବ୍ୟସ୍ତ କରିବାକୁ ପଡିବ । ସରକାର ଗ୍ରାମଉନ୍ନୟନ ପାଇଁ ଯେତେ ଅର୍ଥ ବରାଦ କରୁଛନ୍ତି 'ଗରିବୀ ହଟାଓ' ନାମରେ ଯେଉଁ ସବୁ ଯୋଜନା ହେଉଛି .ସେଥିରେ ତୁମକୁ ଅଂଶୀଦାର ହେବାକୁ ପଡିବ । ଆନ୍ଦୋଳନ ସହିତ ରଚନାତ୍ମକ କାମହାତକୁ ନେବାକୁ ପଡିବ । ସମବାୟ ସଂସ୍ଥା ଗଢି, ଅବସ୍ଥାର ଉନ୍ନତି ପାଇଁ ଚେଷ୍ଟା କଲେ ମୁଁ ଆଶା କରୁଛି ସୁଫଳ ମିଳିବ'' । କଥାଟା ଶ୍ୟାମର ମନକୁ ପାଇଲା । ଉତ୍ସାହିତ ହୋଇ ସେ କହିପକାଇଲା 'ଏ ଗରିବ ଗୁଡିକ ତ ଲାଇଫଣ୍ଡା ତଳେ ଦିନେ ଥିଲେ ବୋଲି କଂଗ୍ରେସିଆ ନେତାମାନେ ଏମାନଙ୍କଠାରୁ କରଛଡା ଦେଉଛନ୍ତି । ଏମାନଙ୍କୁ ନେତୃତ୍ୱ ଦେବ କିଏ'' ? ଲକ୍ଷ୍ମଣବାବୁ ହସି ହସି କହିଲେ 'କିରେ ତୋ ରକ୍ତ ଶିଥିଳ ହୋଇଗଲାଣି କି ? ତୁ କାହିଁକି ଆଗ ହୋଇ ଏସବୁ କାମ କରୁ ନାହୁଁ ?''

'ନା ଆଜ୍ଞା ଆମେ ତ ପଛରେ ଚାଲିବା ଲୋକ, ଆଗେଇ ନେବାର ବୁଦ୍ଧି ନା ଅକଲ ଆମର ଅଛି । ସେତେବେଳେ ଆପଣମାନେ ନିର୍ଦ୍ଦେଶ ଦେଉଥିଲେ । ଆମେ ବାନରସେନା ଭଳି ସମୁଦ୍ର ଡେଇଁଥିଲୁ । ସେକାଳର ନେତା ବନମାଳି ବାବୁତ ବୁଢା ହୋଇ ଗଲେଣି । ସେ ଚୁପ୍ ରହିଛନ୍ତି । ତାଙ୍କ ଶିଷ୍ୟ ପୀତବାସବାବୁ ଫିନ୍ ଫରଫର ଧୋତି ପଞ୍ଜାବୀ ପିନ୍ଧି ବାବୁ ଭୟାଙ୍କ ସଙ୍ଗରେ ବୁଲୁଛନ୍ତି ସିନା ଦୁଃଖୀରଙ୍କିଙ୍କ ପାଖ କିଏ ମାଡୁଛି ? ଲକ୍ଷ୍ମଣବାବୁ କିଛି ସମୟ ନୀରବରେ କ'ଣ ଭାବି କହିଲେ ''ହେଉ ଏଣିକି ତୁମକୁ ମୁଁ ବାଟ ବତେଇ ଦେବି । ତୁମ ଦଳର ସେ ଯୁବିନେତାଙ୍କୁ ଡକାଉଛି । ତୁମେ ପୁରୁଣା ସାଥୀ ଓ ନୂଆ ସମର୍ଥକଙ୍କୁ ଧରି ଆଗାମୀ ବୁଧବାର ମୋ ଘରକୁ ଆସ ।'' ଲକ୍ଷ୍ମଣବାବୁଙ୍କ ସଙ୍ଗରେ ଚା, ବିସ୍କୁଟ ଖାଇ ବୁଧବାର ଦିନ ସାଙ୍ଗସାଥୀମାନଙ୍କୁ ଧରି ଆସିବାକୁ ପ୍ରତିଶ୍ରୁତି ଦେଇ ଶ୍ୟାମ ବିଦାୟ ନେଲା ।

(କୋଡିଏ)

''ଆଜ ବରଷାର ରୂପ ହେରି ମାନବେର ମାଝେ
ଚଲଛେ ଗରଜି ଚଲଛେ ନିବିଡ ରାଜେ''

ଲକ୍ଷ୍ମଣବାବୁ ପ୍ରାତଃରୋଷ ସାରି ଘର ବାରଣ୍ଡାରେ ବସି ଭାବି ଚାଲିଛନ୍ତି । ଆଷାଢ ମାସର ମେଘାଚ୍ଛନ୍ନ ଆକାଶ, ଟୁହାକୁ ଟୁହା ବର୍ଷା ଆସିଯାଉଛି । ବର୍ଷା ଅସରାଏ ଚାଲିଗଲା ପରେ ବାଦଲର ଚଦର ଟେକୁ ତେଜସ୍ମାନ ମୁଖ ଟେକି ପୃଥିବୀକୁ ଚାହିଁ ହେଉଛି ସୂର୍ଯ୍ୟ । ଆଲୋକରେ ଉଦ୍‌ଭାସିତ ଉଭାପରେ ଆଲୋକିତ ଧରଣୀର ବକ୍ଷ ରୋମାଞ୍ଚିତ ହୋଇ ଉଠୁଛି । ହସିଉଠୁଛି ନୃତ୍ୟରତା ସବୁଜ ଧାନଗଛ ଏବଂ ଘରବାଡିକୁ ଲାଗି ସଯତ୍ନେ ଲଗାହୋଇଥିବା ଗଛର ମଲ୍ଲୀ ଟଗର ତରାଟ ଫୁଲ । ଲକ୍ଷ୍ମଣବାବୁଙ୍କ ହୃଦୟରେ ଭାବର ଉଚ୍ଛ୍ୱାସ ମୁଣ୍ଡଟେକି ଉଭେଇ ଯାଉଛି । କ୍ଷଣେ ଶବ୍ଦାୟିତ, କ୍ଷଣେ ନୀରବିତ ବର୍ଷାପରି ମଣିଷର ଅସ୍ଥିର ଭାବନା ମନକୁ ଆନ୍ଦୋଳିତ କରି ଥମିଯାଉଛି । ମନେପଡିଯାଉଛି ବିଶ୍ୱ କବିଙ୍କ ସେହି ମଧୁର ବର୍ଷା ସଙ୍ଗୀତ, ଯାହା ସେ ଗାଉଥିଲେ ଆଦ୍ୟ ଯୌବନରେ ରୋମାଞ୍ଚକର ବିରହ ବିଧୂର ପ୍ରାଣରେ କଲିକତାର କେଉଁ ଏକ ପୁରାତନ ପ୍ରାସାଦର ଏକ କ୍ଷୁଦ୍ର କୋଠରୀର ଝରକା ଦେଇ ମେଘମେଦୂର ଆକାଶକୁ ଚାହିଁଲାବେଳେ । ମନେ ପଡିଯାଉଥିଲା କେଉଁ ଏକ ସୁକୁମାରୀ ଅସହାୟା ସୁନ୍ଦରୀ ଯୁବତୀଟି କଥା । ଜୀବନର ପାଥେୟ ଖୋଜି ଶେଷକୁ ବରି ନେଇଥିଲା, ଅଜାଡି ଏକ ଯୁବକକୁ । ସେ ଅପାସୋରା ଅତୀତ ଅତୀତ ହୋଇଯାଇଛି । ତା ପାଇଁ ମୁଣ୍ଡ ବିନ୍ଧୁନି ଆଜି ତାଙ୍କର । ଆଜି ଆଉ ଏକ ଭାବନା ବିଦାରି ଦେଉଛି ତାଙ୍କର ହୃଦୟ । ଅନ୍ୟ ଏକ ସଙ୍କଳ୍ପ ବର୍ଷା ପରି ଗର୍ଜି ଉଠୁଛି ତାଙ୍କ ପ୍ରାଣରେ । ନୂତନ ସମାଜ ନିର୍ମାଣର ଅସଫଳ ସ୍ୱପ୍ନକୁ କଛିଟା ସଫଳ କରିବାକୁ ଜୀବନର ଦୀପ ଲିଭିବା ପର୍ଯ୍ୟନ୍ତ ଚେଷ୍ଟା କରିବାକୁ ହେବ । ସଂଗ୍ରାମୀର ଅତୀତ ଜୀବନତ ସମ୍ପୂର୍ଣ୍ଣ ନିଷ୍ଫଳ ହୋଇ ନାହିଁ । ଚେତନାର ମଞ୍ଜି ରୋପା ଯାଇଛି ଖଟିଖିଆ ଗାଉଁଲି ଲୋକଙ୍କ ହୃଦୟରେ । ଏହି ଅଙ୍କୁରଟିକୁ ଦ୍ରୁମରେ ପରିଣତ କରିବାକୁ ହେବ । 'ଜୀବନେ ଯତୋ ପୂଜା ହଲୋ ନା ସାରା, ଜାନି ହେ ଜାନିନିତ ହୟେନି ହାରା' । ବିଶ୍ୱକବିଙ୍କ ପ୍ରାଣର ଗାନ୍ ତାଙ୍କ ବକ୍ଷରେ ଶକ୍ତିସଞ୍ଚାର କରିଗଲା । ବୋହୂ ନନ୍ଦିତା, ଚାହା, ବିସ୍କୁଟ କପ୍‌ପ୍ଲେଟରେ ଆଣି ଥୋଇ ଦେଇଗଲାଣି । ''ବାପା ଚାହା ବିସ୍କୁଟ ଟିକିଏ ଖାଇଦିଅ । ମୁଁ ଜଳଖିଆ ତିଆରି କରୁଛି, ଆଉ ଟିକିଏ ପରେ ଖାଇବେ ।'' ନନ୍ଦିତାର ସ୍ନେହଭରା ସ୍ୱର ଆହ୍ଲାଦିତ କରି ଦେଉଛି । ଏହି ନନ୍ଦିତା ପୁଅଭଳି ପାଳିଥିବା ଭଣଜାର ସ୍ତ୍ରୀ । ପାଠ ପଢିଛି ଅଳ୍ପ, ମାତ୍ର ଘରକରଣାରେ ନିପୁଣ । ସ୍ନେହଶ୍ରଦ୍ଧା ଆତ୍ମୀୟତାରେ ହୃଦୟ ତା'ର ଭରପୂର । ସେବାରେ ନଥାଏ ତିଳେମାତ୍ର ତ୍ରୁଟି । ଝିଅ ସସ୍ମିତାର ଦ୍ୱିତୀୟ ସଂସ୍କରଣ । ସସ୍ମିତା ଗୋରୀ, ନନ୍ଦିତା ଶ୍ୟାମଳୀ । ତେବେ ଶାଶୂଶଶୁର ସେବା ଓ ପାରିବାରିକ ସ୍ନେହରେ ସମୁଜ୍ଜ୍ୱଳ ମୁହଁରେ ତାର ଏକ ଅନବଦ୍ୟ ଜ୍ୟୋତି ବାହାରୁଥାଏ ସବୁବେଳେ । ପ୍ରିୟପରିଜନ ମନକୁ ମୋହିନିଏ ତା ମୁଖନିଃସୃତ ତୃପ୍ତିର ଝଲକ । ନନ୍ଦିତାର ପଛେ ପଛେ ଆସୁଛି ଦିବର୍ଷର ଝିଅଟି ନିଟୁ, ଜେଜେ ଜେଜେ ଡାକି । ଲକ୍ଷ୍ମଣବାବୁଙ୍କ କୋଳରେ ବସି ପଡି କହୁଛି ''ଜେଜେ,

ଚା, ଚା' । ଲକ୍ଷ୍ମଣବାବୁ ଚା କପରେ ଓଠ ଦେଉଁ ଦେଉଁ ଫେରିଗଲେ ଆନନ୍ଦମୟ ସୁନାର ଅତୀତକୁ- ବାହାନଗା ଷ୍ଟେସନ । ନୂତନ ମାତୃତ୍ୱରେ ଉଦ୍‌ଭାସିତା ସ୍ତ୍ରୀ ଲକ୍ଷ୍ମୀ; ଗୁଲୁଗୁଲିଆ ପୁଅ ! କାହିଁ ସେ ପୁଅ ?- କେଉଁ ଅଫେରା ଅଚଣା ରାଇଜରେ ଗୋଟିଏ ତ, ଅନ୍ୟଟି ଚିର ବିଦେଶୀ । ଭଣଜାର ଏହି ସ୍ନେହକାଙ୍ଗାଳ ପୁଅଟି, ଉଜ୍ଜୀବିତ କରି ଚାଲିଛି ହଜିଲା ପିତୃତ୍ୱର ଅବର୍ଣ୍ଣନୀୟ ଉଲ୍ଲାସ । ପିତାମହର ଗର୍ବ ଆନନ୍ଦ, ପରିପୂର୍ଣ୍ଣ ଜୀବନର ଅପୂର୍ବ ଆସ୍ୱାଦ ।

ଅପରାହ୍ଣ ବେଳକୁ ଆକାଶ ପରିଷ୍କାର । ଖରା ନଇଁ ଆସିଲାଣି । ବିଲ ବାଡି କାମ ସାରି ଏଇକ୍ଷଣି ଆସିଯିବେ ଶ୍ୟାମ ଓ ତାର ସାଥୀ । ପୀତବାସ ବାବୁ ଆସି ପହଞ୍ଚିବେ ସୋରୋରୁ । ଏହି ଯୁବନେତାଙ୍କୁ ଅନୁପ୍ରାଣିତ କରିବାକୁ ହେବ । ଶ୍ୟାମ ଓ ତାର ସାଥୀମାନଙ୍କ ମନରେ ପୂର୍ବ ପ୍ରତ୍ୟୟ ଓ ଉତ୍ସାହ ଫେରାଇ ଆଣିବାକୁ ହେବ । ଲକ୍ଷ୍ମଣବାବୁ ମନେ ମନେ ଭାବିଗଲେ କ'ଣ ସେମାନଙ୍କୁ କହିବାକୁ ହେବ, କି ଯୋଜନାର ଖସଡା ସେମାନଙ୍କ ନିକଟରେ ରଖିବାକୁ ହେବ । ସେ ଆନ୍ଦୋଳନରେ ଅତୀତରେ ଯୋଗ ଦେଇଛନ୍ତି । ମାତ୍ର ନେତା ନୁହଁନ୍ତି । ଭାଷଣ ଦେବାର ଅଭ୍ୟାସ ନାହିଁ । ତେବେ ଉଚିତ ପରାମର୍ଶ ଦେଇପାରନ୍ତି । ଆଜି ତାଙ୍କୁ ପରାମର୍ଶଦାତା ତଥା ନେତା ସାଜିବାକୁ ପଡିବ ।

ଗୋଧୂଳି ସମୟ । ପଶ୍ଚିମାକାଶରେ ସ୍ନିଗ୍ଧ ରକ୍ତାଭ ସୂର୍ଯ୍ୟର ରକ୍ତିମା । ପହଞ୍ଚିଲେ ଶ୍ୟାମ ଓ ତାର ଆଠଦଶ ଜଣ ସାଥୀ । ଯୁବନେତା ପୀତବାସ ବାବୁ ମଧ୍ୟ ପହଞ୍ଚିଛନ୍ତି । ଧୋବ ଫର ଫର ଧୋତି ପଞ୍ଜାବୀ, ଗୋରା ଦେହ ଚକା ମୁହଁ, ସଂଭ୍ରାନ୍ତ ବଂଶର ମର୍ଯ୍ୟାଦା ଫୁଟି ଉଠୁଥାଏ ମୁହଁରୁ । କିମିତି କିଜାଣି ଏହି ଯୁବକଟି ମାମୁଁ, ସ୍ୱାଧୀନତା ସଂଗ୍ରାମୀ ସାମ୍ୟବାଦୀ ମାମୁଁ ଗଜାନନବାବୁଙ୍କ ପ୍ରେରଣାରେ ଛାତ୍ର ଜୀବନରୁ ମାର୍କ୍ସୀୟ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇଥିଲେ । କଲେଜ ପରିସରରେ ଓଜସ୍ୱିନୀ ଭାଷଣ ଦେଇ ନେତା ସାଜିବା ଏକ କଥା । ଗାଁ ଗଣ୍ଡାର ଖଟିଖିଆ ମଳିମୁଣ୍ଡିଆ ଲୋକଙ୍କୁ ଏକଜୁଟ କରି ମାର୍କ୍ସୀୟ ଚିନ୍ତାକୁ ବାସ୍ତବ ରୂପାୟନ କରିବା ଅନ୍ୟ ଏକ କଥା । ଗାଁ ଗାଁରେ ବୁଲି ଖରାବର୍ଷା ସହି ଲୋକଙ୍କୁ ସଂଗଠିତ କରିବା କେତେ ଯେ କଷ୍ଟକର ତା ପୀତବାସ ବାବୁ ଧୀରେ ଧୀରେ ହୃଦୟଙ୍ଗମ କରୁଛନ୍ତି । ମାତ୍ର ଧନୀଘର ସନ୍ତାନ ଭାବେ ସୌଖିନ ଜୀବନଯାପନର ମୋହ ଛାଡି ପାରିନାହାନ୍ତି । ଛାଇରେ ବସି ମୂଲିଆର ଝାଳରେ ସୁନାର ଫସଲ ଉପଭୋଗ କରୁଥିବା ପିତାର ପୁତ୍ର ଚାଷୀ ମୂଲିଆଙ୍କ ପ୍ରକୃତ ସଫଳ ନେତା ହେବା ପାଇଁ ଦରକାର ତ୍ୟାଗ ଉତ୍ସର୍ଗ । କଷ୍ଟବରଣ ପାଇଁ ବଜ୍ର ଶପଥ, ଶକ୍ତ ମନୋଭାବ ଏବଂ ଏକ ଆଦର୍ଶ ପ୍ରତି ଅଙ୍ଗୀକାର ବଦ୍ଧତା ।

ଲକ୍ଷ୍ମଣବାବୁଙ୍କ ଅଗଣାରେ ଦରି ଉପରେ ଲକ୍ଷ୍ମଣବାବୁଙ୍କୁ ଘେରି ବସିଛନ୍ତି ପୀତବାସବାବୁ ଓ ଶ୍ୟାମ ଏବଂ ତାର ସାଥୀଗଣ । ଲକ୍ଷ୍ମଣ ବାବୁ ଆରମ୍ଭ କଲେ 'ମୁଁ ବଡ ଖୁସି ଯେ, ଆମର ପୂଜ୍ୟନେତା ଗଜେନ୍ଦ୍ରବାବୁଙ୍କ ଭଣଜା ସୁଶିକ୍ଷିତ ଯୁବନେତା ଏ ଅଞ୍ଚଳରେ ସାମ୍ୟବାଦୀ ଚିନ୍ତାଧାରାକୁ ବଞ୍ଚାଇ ରଖିଛନ୍ତି । ୪୦।୫୦ ଦଶକରେ ଏହି ଅଞ୍ଚଳ ସଂଗ୍ରାମର ପୀଠ ଥିଲା । ଅଗଣିତ ଚାଷୀ ମୂଲିଆ ଇଂରାଜୀ ସରକାର ଓ ରଜା ଜମିଦାର ବିରୁଦ୍ଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରିଥିଲେ । ଇଂରେଜ ସରକାର ହଟିଲା,

ରହାଗଲେ, ଜମିଦାରୀ ଗଲା, ତଥାପି ଲୋକଙ୍କର ଅବସ୍ଥା ସୁଧୁରିଲା ନାହିଁ । ସ୍ୱାଧୀନ ଦେଶରେ ଗଣତନ୍ତ୍ର ଶାସନ ଭିତରେ ସାଧାରଣ ଲୋକଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ଆମ୍ଭମାନଙ୍କୁ ନୂତନ ପଦ୍ଧତିରେ ସଂଗଠିତ ଉଦ୍ୟମ କରିବାକୁ ପଡ଼ିବ ସାମ୍ୟବାଦୀ ଆଦର୍ଶର ପ୍ରେରଣାରେ । ଲାଲଝଣ୍ଡାର ଆକର୍ଷଣ ଏବେ ବି ଗରିବ ଲୋକଙ୍କ ନିକଟରେ ଜୀଇଁ ରହିଛି । ଉପଯୁକ୍ତ ନେତୃତ୍ୱ ମାଧ୍ୟମରେ ଏହାକୁ ଉଜ୍ଜୀବିତ କରିବାକୁ ହେବ, ସକ୍ରିୟ କରିବାକୁ ହେବ ।'' ପୀତବାସ ବାବୁ ଓ ଶ୍ୟାମ ଆଡ଼କୁ ଲକ୍ଷ୍ୟକରି ଲକ୍ଷ୍ମଣବାବୁ ପଚାରିଲେ ''ଏଣିକି ସୁଚିନ୍ତିତ ସକ୍ରିୟ ନେତୃତ୍ୱ ନେବାକୁ ତୁମେ ପ୍ରସ୍ତୁତ ତ ?'' ଶ୍ୟାମ ଉତ୍ତର ଦେଲା 'ମୁଁ ତ ସଦା ପ୍ରସ୍ତୁତ । ମାତ୍ର ମୋର ଶକ୍ତି ସୀମିତ । ଆଜିକାର ଶିକ୍ଷିତ ଯୁବକ ଯୁବତୀମାନେ ଏ ଅପାଠୁଆ ବୁଢ଼ାଙ୍କ କଥା କଣ ଶୁଣିବେ ?' ପୀତବାସବାବୁ ଆଗରେ ଚାଲିଲେ, ଆମେ ତାଙ୍କର ପଛରେ ରହି ଗଣ ଆନ୍ଦୋଳନକୁ ସାମ୍ୟବାଦୀ ପଥରେ ଚଳାଇ ନେବାକୁ ଆପ୍ରାଣ ଚେଷ୍ଟା କରିବୁଁ ।'' ଲକ୍ଷ୍ମଣବାବୁ ପ୍ରତ୍ୟୁତ୍ତର ଆଶାରେ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଲେ ପୀତବାସ ବାବୁଙ୍କୁ । ପୀତବାସ ବାବୁ କହିଲେ ''ଯେଉଁ ଭାବ କୈଶୋର ଓ ଯୌବନରେ ମୋ ଅନ୍ତରକୁ ଉଦ୍‌ବେଳିତ କରିଥିଲା ସେ ମହାନ ସାମ୍ୟବାଦୀ ଭାବ ମୋ ହୃଦୟରୁ କେବେହେଁ ଦୂରେଇ ଯିବ ନାହିଁ । ମାତ୍ର ଏ ଭାବଧାରାକୁ ଲୋକଙ୍କ ପାଖରେ ପହଞ୍ଚାଇ ଲୋକମାନଙ୍କୁ ସଂଗଠିତ କରି ଅର୍ଥଲୋଭରୁ ସେମାନଙ୍କୁ ଦୂରେଇ ଆଣି ସାମ୍ୟବାଦୀ ଧାରାରେ ଆନ୍ଦୋଳନ କରିବାକୁ ମୁଁ ଏକାକୀ ସମର୍ଥ ହୋଇ ପାରୁନାହିଁ । ଆମର ପୁରୁଖା ନେତାମାନେ ତ ବୃଦ୍ଧ ନିଷ୍କ୍ରିୟ ହୋଇଗଲେଣି, ମୁଁ ଏକା ପାରୁନି ସଂଗଠନକୁ ବ୍ୟାପକ କରି ।'' ଲକ୍ଷ୍ମଣବାବୁ ପଚାରିଲେ ''ତମେ ପରା ଫକିରମୋହନ କଲେଜର ଛାତ୍ରନେତା ଥିଲ । ଏ ଅଞ୍ଚଳର ଅନେକ ପିଲାତ ସେତେବେଳେ ତୁମର ଅନ୍ତରଙ୍ଗ ସାଥୀ ଥିବେ । ସେମାନେ ବିଭିନ୍ନ ଗାଁରେ ଥିବେ । ସେମାନଙ୍କ ପାଖକୁ ଯାଇ ଦଳରେ ସେମାନଙ୍କୁ ମିଶିବାକୁ କୁହ । ସେମାନଙ୍କ ମଧ୍ୟରୁ ନିଶ୍ଚିତ ରୂପେ କେତେଜଣ ଆଗେଇ ଆସିବେ । ମନେପକାଅ ବିଶ୍ୱକବି କ'ଣ କହିଥିଲେ ଗାନ୍ଧିଜୀଙ୍କୁ, 'ଯଦି ତୋର ଡାକ୍ ଶୁନେ କେଉ ନଆସେ ତେବେ ଏକଲା ଚଲୋରେ, ଏକଲା ଚଲୋରେ'' ନିର୍ଦ୍ଦିଷ୍ଟ ପଥରେ ନିର୍ଭୀକତାର ସହ କିଛିବାଟ ଆଗେଇ ଗଲେ ବାଟରେ ନିଶ୍ଚୟ ସାଥୀ ମିଳିବେ । ହତାସ ହେବାର କିଛି ନାହିଁ । ଯେତେ ବାଟ ଯିବ, ସେତିକି ହେବ ଆଦର୍ଶ ଜୀବନର ବଟାଖୁଣ୍ଟ । ଏହା ଅନ୍ୟକୁ ଦେବ ଦିଗ୍‌ଦର୍ଶନ । ପଥ ହେବ ଆଲୋକିତ ଉତ୍ତରଦାୟାଦଙ୍କ ପାଇଁ । ମୁଁ ମୋର ବାକିତକ ଜୀବନ ଏହି କାର୍ଯ୍ୟରେ ଉତ୍ସର୍ଗ କରୁଛି । ତୁମ୍ଭମାନଙ୍କୁ ମୋର ଶକ୍ତି ଅନୁଯାୟୀ ସମସ୍ତ ସାହାଯ୍ୟ ଓ ପରାମର୍ଶ ଦେବି । ମୋ ଘରଟିତ ଏହି ଅଞ୍ଚଳର ଏହି ବ୍ଲକର ମଧ୍ୟସ୍ଥଳୀରେ । ମୋ ଘରେ ସଭାସମିତି ମନ୍ତ୍ରଣାଦି କରି ଲୋକମାନଙ୍କୁ ସଂଗଠିତ କରନ୍ତୁ । ଗଣତନ୍ତ୍ରର ପରିସର ଭିତରେ ସାମ୍ୟବାଦର ଲକ୍ଷ୍ୟ ସାଧନ କରାଯାଉ । ମୋ ଘରଟି ହେଉ ସାମ୍ୟବାଦୀ ଆନ୍ଦୋଳନର ପୁନର୍ଜାଗରଣ ଓ ପୁର୍ନବିନ୍ୟାସର ପବିତ୍ରପୀଠ । ତାହାହିଁ ମୋ ଜୀବନର ଅନ୍ତିମ ଇଚ୍ଛା, ସର୍ବାଧିକ ଆନନ୍ଦ ଓ ଗୌରବ । ଆନନ୍ଦ ଅନୁମୋଦନର କରତାଳି ମଧ୍ୟରେ ସେଦିନର ଆଲୋଚନା ସାଂଗ ହେଲା ।

\+ + +

ଦାଆ ହାତୁଡି,ଚିହ୍ନ ଥିବା ଲାଲଝଣ୍ଡା ଧରି ଚାଲିଛନ୍ତି ଶହ ଶହ ଲୋକ–ତରୁଣ ବୃଦ୍ଧ ପୁରୁଷ ଓ ମହିଳା, ଯୋରୋ ଖନ୍ତାପଡା ନୀଳଗିରିର ଦୂରନ୍ତ ଗ୍ରାମରୁ ଛିଣ୍ଡା ମଇଳା ଲୁଗା, ଲୁଚାକୁଚା ପେଣ୍ଟ ସାର୍ଟ ଶସ୍ତା ରଙ୍ଗୀନ ଶାଢି ପିନ୍ଧି ହାତରେ ଲାଲଝଣ୍ଡାଟିଏ ଲେଖା ଧରି ଶୋଭାଯାତ୍ରା ଚଳି ଆସୁଛନ୍ତି ବାହାନଗା ବ୍ଲକକୁ, ବି.ଡି.ଓଙ୍କୁ ଘେରାଉ କରାଯିବ । ଗତ ଭୟାବହ ବାତ୍ୟାରେ ସର୍ବସ୍ୱାନ୍ତ ହୋଇଥିବା ଗରିବ ଚାଷୀ ମୂଲିଆ ସରକାରୀ ସାହାଯ୍ୟ ଦାବିକରି ଆସିଛନ୍ତି । ଖବର କାଗଜରେ ସମ୍ବାଦ ବାହାରିଛି ରାଜ୍ୟ ସରକାର ଓ କେନ୍ଦ୍ରସରକାର ବାତ୍ୟାବିଧ୍ୱସ୍ତ ଲୋକଙ୍କ ଗୃହନିର୍ମାଣ ଓ ଖାଦ୍ୟ ଯୋଗାଣ ପାଇଁ ପ୍ରଚୁର ଅର୍ଥ ବରାଦ କରିଛନ୍ତି । ପ୍ରଳୟକାରୀ ବାତ୍ୟା ଆଜକୁ ମାସେତଳେ ହୋଇଥିଲା । କାହିଁ ସାହାଯ୍ୟ ? ଶୁଣାଯାଏ ଯାହାକିଛି ଅର୍ଥ ଆସିଥିଲା, ବି.ଡି.ଓ.ଙ୍କ ସଲାସୁତୁରାରେ ବ୍ଲକ ଚେୟାରମ୍ୟାନ, ଭାଇସ ଚେୟାରମ୍ୟାନ ଓ ସରପଞ୍ଚମାନେ ସେ ସବୁକୁ ଆତ୍ମସାତ କରିଦେଲେଣି । ଏ ଦୁର୍ନୀତିର ଅଂଶୀଦାର ହୋଇଛନ୍ତି ଶାସକ ଦଳର କେତେକ ପ୍ରଭାବଶାଳୀ ଲୋକ । ବିଭିନ୍ନ ଦିଗରୁ ଶୋଭାଯାତ୍ରାକାରୀମାନେ ଆସି ରୁଣ୍ଡ ହୋଇଛନ୍ତି ବାହାନଗା ବଜାରରେ । ଏଠାରୁ ଆରମ୍ଭ ହେବ ମିଳିତ ଶୋଭାଯାତ୍ରା । ନେତୃତ୍ୱ ନେବେ ପୀତବାସ ବାବୁ ଓ ଲକ୍ଷ୍ମଣବାବୁ ।

ସହସ୍ର ଲାଲଝଣ୍ଡାରେ ଲାଲମୟ ହୋଇଯାଇଛି ପାଞ୍ଚ ନମ୍ବର ଜାତୀୟ ସଡକର ମାଇଲ ବ୍ୟାପୀ ପଥ । "ସରକାରୀ ଅର୍ଥ ତୋଷରପାତ ଚଳିବ ନାହିଁ, ଚଳିବ ନାହିଁ"। "ସରକାରୀ ଅର୍ଥ ବାଟମାରଣା, ଚଳିବ ନାହିଁ" "ଘରଭଙ୍ଗା ଟଙ୍କା ଦେଇଦିଅ, ଦେଇଦିଅ," "ଭୋକିଲା ପେଟକୁ ଦାନାଦିଅ, ବେକାର ଲୋକଙ୍କୁ କାମଦିଅ, କାମଦିଅ"- ଇତ୍ୟାଦି ସ୍ଲୋଗାନରେ ଆକାଶ ପ୍ରକମ୍ପିତ । ସଡକର ଧାରେ ଧାରେ ଶୋଭାଯାତ୍ରାକାରୀଙ୍କ ଉପରେ ସତର୍କ ଦୃଷ୍ଟିରଖି ଚାଲିଛନ୍ତି ବନ୍ଧୁକଧାରୀ ପୁଲିସି । ସେଥିପ୍ରତି ଭ୍ରୁକ୍ଷେପ ନାହିଁ, ଲାଲଝଣ୍ଡାଧାରୀଙ୍କର । ଶାନ୍ତିଶୃଙ୍ଖଳା ରକ୍ଷାକରି ଆଗେଇ ଯିବାକୁ ଉପଦେଶ ଦେଉଛନ୍ତି ଲକ୍ଷ୍ମଣବାବୁ ଓ ପୀତବାସ ବାବୁ ।

ଶୋଭାଯାତ୍ରାକାରୀମାନେ ପହଞ୍ଚିଗଲେ ବ୍ଲକ୍ ଅଫିସ ନିକଟରେ, ବ୍ଲକ୍ ଅଫିସକୁ ଘେରି ରହିଥାନ୍ତି ସଶସ୍ତ୍ର ଫୌଜ ଭଙ୍ଗାରୁଜାର ସମ୍ଭାବନା ଏଡାଇ ଦେବାକୁ । ଲକ୍ଷ୍ମଣବାବୁ ଏକ କ୍ଷୁଦ୍ର ଭାଷଣରେ କହିଲେ "ବ୍ଲକ ଅଫିସର ବା ଅନ୍ୟକାହାର କିଛି କ୍ଷତିକରିବାକୁ କିମ୍ବା ସରକାରୀ ସଂପତ୍ତିନଷ୍ଟ କରିବାକୁ ଆମେ ଆସିନାହୁଁ । ଆମେ ଆସିଛୁ ଠିକ୍‌ଭାବେ ଜାଣିବାକୁ ବାତ୍ୟାସାହାଯ୍ୟ ପାଇଁ ସରକାରୀ ଅର୍ଥକେତେ ଆସିଛି ଏବଂ ଏ ଅର୍ଥ କାହିଁକି ଏପର୍ଯ୍ୟନ୍ତ ପ୍ରକୃତବନ୍ୟା ପ୍ରପୀଡିତ ଲୋକଙ୍କୁ ଦିଆଯାଇନାହିଁ । ବି.ଡି.ଓ. ମହାଶୟ କୁହନ୍ତୁ, କେବେ ଏ ସାହାଯ୍ୟ ଗରିବ ଦୁର୍ଦ୍ଦଶାଗ୍ରସ୍ତଲୋକ ନିକଟରେ ପହଞ୍ଚିବ ?" ଯୁବନେତା ତାଙ୍କର ଓଜସ୍ୱିନୀ ଭାଷଣରେ କହିଚାଲିଲେ "ଗରିବଲୋକଙ୍କ କରରୁ ଆଦାୟ ସରକାରୀ ଅର୍ଥ ଯେଉଁମାନେ ଆତ୍ମସାତ କରୁଛନ୍ତି, ତାଙ୍କୁ ଲୋକେ ଉଚିତ୍ ଶିକ୍ଷା ଦେବେ । ବନ୍ୟାବାତ୍ୟା ଭଳି ଦୈବଦୁର୍ବିପାକରେ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ସାହାଯ୍ୟ ପାଇଁ ଉଦ୍ଦିଷ୍ଟ ଅର୍ଥ ଶାସନରେ ଥିବା ପ୍ରଶାସକ, ଚେୟାରମ୍ୟାନ ସରପଞ୍ଚ ଓ ଶାସକଦଳର ପ୍ରଭାବଶାଳୀ ଲୋକମାନେ ଆତ୍ମସାତ କରି ଚାଲିଛନ୍ତି । ସରଳ ନିରୀହ ଲୋକଙ୍କୁ

ଏତେଦିନ ପର୍ଯ୍ୟନ୍ତ ଗଣତନ୍ତ୍ର ବା ଲୋକଶାସନ ନାମରେ ପ୍ରବଞ୍ଚିତ କରିଆସୁଥିଲେ । ଆଜି ଲାଲ୍‌ଝଣ୍ଡାର ଆହ୍ୱାନରେ ସେମାନେ ଜାଗ୍ରତ । ଏ ରାଜ୍ୟର ଉନ୍ନୟନ ଅର୍ଥ ଯେପରି ବାଟମାରଣା ନହୁଏ ସେଥିପ୍ରତି ସତର୍କ ଦୃଷ୍ଟି ଦେଉଛି ଭାରତୀୟ କମ୍ୟୁନିଷ୍ଟପାର୍ଟି । ଏ ଅଞ୍ଚଳରେ ଅଫିସର ଓ ତଥାକଥିତ ଜନନେତାଙ୍କ କାରସାଦି ଆଉ ବରଦାସ୍ତ କରାଯିବ ନାହିଁ । ଆମେ ଆଜି ବି.ଡି.ଓ. ଚେୟାରମ୍ୟାନ ଓ ସରପଞ୍ଚମାନଙ୍କୁ ସାବଧାନ କରି ଦେଉଛୁଁ । ସରକାରୀ ସାହାଯ୍ୟ ଯେପରି ପ୍ରକୃତ ଅଭାବୀଲୋକଙ୍କ ନିକଟରେ ପହଞ୍ଚେ ସେଥିପ୍ରତି କର୍ତ୍ତୃପକ୍ଷ ଯତ୍ନଶୀଳ ହୁଅନ୍ତୁ । ଗାଁ ଗାଁ ବୁଲି ସରକାର କ୍ଷତିଗ୍ରସ୍ତ ଲୋକ ଚିହ୍ନଟ କରି ତୁରନ୍ତ ସାହାଯ୍ୟ ଦେବାପାଇଁ ପ୍ରତିଶ୍ରୁତି ଦିଅନ୍ତୁ । ଦଳ ନିର୍ବିଶେଷରେ ସରକାରୀ ସାହାଯ୍ୟ ବଣ୍ଟନ ନକଲେ ପରିଣାମ ଭୟାବହ ହେବ । ତୁରନ୍ତ ସାହାଯ୍ୟ ଆମର ଦାବି, ବି.ଡି.ଓ.ଙ୍କ ପ୍ରତିଶ୍ରୁତି ଆମର ଦାବି, ପ୍ରତିଶ୍ରୁତି ନପାଇଲା ପର୍ଯ୍ୟନ୍ତ ଆମେ ବସିରହିଲୁ ଏଠାରେ'' ।

ଶୋଭାଯାତ୍ରୀଙ୍କର କରତାଳି ବୈଶାଖୀଝଡର କୁଆପଥର ଭଳି ବର୍ଷିଗଲା । କିଛିସମୟ ପାଇଁ ପରିବେଶ ନିସ୍ତବ୍ଧ । ବି.ଡି.ଓ.ଙ୍କର ଦେଖାନାହିଁ । ଅଧୀର ଆନ୍ଦୋଳନକାରୀଙ୍କ ମଧ୍ୟରେ ଚାପାଗୁଞ୍ଜରଣ । କେତେବେଳେ କି ବିସ୍ଫୋରଣ ଘଟିବ କହିହେବନାହିଁ । ପୀତବାସବାବୁ ଦାବିପତ୍ରଟି ଧରି ଆହ୍ୱାନ ଦେଲେ ବି.ଡି.ଓ.ଙ୍କୁ ଶୀଘ୍ର ଆସି ଏହାକୁ ଗ୍ରହଣ କରିବାକୁ ଏବଂ ତୁରନ୍ତ ସାହାଯ୍ୟର ପ୍ରତିଶ୍ରୁତି ଦେଇଯିବାକୁ । ଶଙ୍କିତ ବି.ଡି.ଓ. ବନ୍ଧୁକଧାରୀ ପୋଲିସ୍ ଗହଣରେ ବାହାରକୁ ଆସି ଦାବିପତ୍ରଟି ଗ୍ରହଣକଲେ । ଏବଂ ଯାହାକିଛି ସରକାରୀ ସାହାଯ୍ୟ ପହଞ୍ଚିଛି, ତାହା ଦିନେ ଦୁଇ ଦିନଭିତରେ ପ୍ରକୃତ କ୍ଷତିଗ୍ରସ୍ତ ଲୋକଙ୍କ ନିକଟରେ ନିଶ୍ଚୟ ପହଞ୍ଚିବ ବୋଲି ପ୍ରତିଶ୍ରୁତି ଦେଲେ । କ୍ଷତିଗ୍ରସ୍ତ ଲୋକ ଚିହ୍ନଟ କରିବାରେ ସରକାରୀ କର୍ମଚାରୀଙ୍କୁ ସାହାଯ୍ୟ କରିବାକୁ ଉପସ୍ଥିତ ନେତାମାନଙ୍କୁ ଅନୁରୋଧ କଲେ । ଭୀତତ୍ରସ୍ତ ବି.ଡି.ଓ.ଙ୍କ ପ୍ରତିଶ୍ରୁତିରେ ବିଶ୍ୱାସରଖି ଆନ୍ଦୋଳନକାରୀମାନେ ବ୍ଲକ୍ ଛାଡି ଚାଲିଆସିଥିଲେ । ବି.ଡି.ଓ. ମହାଶୟ ତାଙ୍କର ପ୍ରତିଶ୍ରୁତି ପାଳନ କରିଥିଲେ ଅଳ୍ପଦିନ ଭିତରେ । ଉଭୟ ଶାସକଦଳ ଓ ବିରୋଧୀଦଳଙ୍କ ସହାୟତାରେ ପ୍ରକୃତ ବାତ୍ୟାବିଧ୍ୱସ୍ତ ପରିବାରଙ୍କୁ ସମୁଚିତ ସାହାଯ୍ୟ ବଣ୍ଟନ କରିଥିଲେ । ଏହି ଘଟଣା ଲକ୍ଷ୍ମଣବାବୁ ଓ ପୀତବାସବାବୁଙ୍କୁ ସେଅଞ୍ଚଳରେ ଅଧିକ ଲୋକପ୍ରିୟ କରିଦେଇଥିଲା ଏବଂ ଲାଲ୍‌ଝଣ୍ଡାର ଆଡର ସମର୍ଥନ ବୃଦ୍ଧିକରିବାରେ ସହାୟକ ହୋଇଥିଲା ।

(ଏକୋଇଶ)

"The victory of the proletariat can be achieved in the very near future only if ---- the workers are supported by the vast majoirty of peasants" (Lenin)

ବ୍ଲକ ଘେରାଉର ସଫଳତା ଲକ୍ଷ୍ମଣବାବୁଙ୍କ ଅନୁଚର ମାନଙ୍କ ଭିତରେ ନୂତନ ଆଶାଉଦ୍ଦୀପନା ଖେଳାଇଦେଇଛି । ଏହାକୁ ଆଧାର କରି ସାମ୍ୟବାଦୀ ସଂଗଠନ ସମଗ୍ର ଥାନାରେ ପ୍ରସାରିତ କରିବାପାଇଁ ଲକ୍ଷ୍ମଣବାବୁ ମନେମନେ ଯୋଜନା କରିଛନ୍ତି । ଏ ବିଷୟରେ ବିଚାରବିମର୍ଷ କରିବା ପାଇଁ

ଡକାଉଛନ୍ତି, ପୀତବାସବାବୁ ଶ୍ୟାମବାବୁ ଓ କାର୍ତ୍ତିକବାବୁଙ୍କୁ । ଲକ୍ଷ୍ମଣବାବୁଙ୍କ ଶ୍ରୀମାକୁଟୀରରେ ଚାଲିଛି ଆଲୋଚନା । ଲକ୍ଷ୍ମଣବାବୁ ଆରମ୍ଭକଲେ "ଆମଦେଶ ଏକ କୃଷିପ୍ରଧାନ ଦେଶ । ଇଂଲଣ୍ଡ ବା ଆମେରିକା ପିରି ଏହା ଶିଳ୍ପପ୍ରଧାନ ଦେଶନୁହେଁ । ଶିଳ୍ପ ମଜଦୂରଙ୍କ ସଂଖ୍ୟା ଏ ଦେଶରେ ନଗଣ୍ୟ । ଏଣୁ କେବଳ ଏମାନଙ୍କ ସାହାଯ୍ୟରେ ସାମ୍ୟବାଦୀ ବିପ୍ଳବ ସମ୍ଭବପର ହେବନି । ସର୍ବହରା ବିଜୟ ପାଇଁ ଅଗଣିତ କୃଷକ ଓ କ୍ଷେତମୂଲିଆଙ୍କୁ ସଂଗଠିତ କରିବାକୁ ହେବ" ।

ପୀତବାସବାବୁ ଯୋଗଦେଲେ "ଠିକ୍ କହିଛନ୍ତି ସାର୍, ରୁଷ୍ ସଂପର୍କରେ ଲେନିନ୍ ଏୟା କହିଥିଲେ । ମାଓ ଜେଡୁଙ୍ଗ ଲେନିନ୍‌ଙ୍କ ପଦ୍ଧତି ଅନୁସରଣ କରି କୃଷିପ୍ରଧାନ ଚୀନ ଦେଶରେ ସାମ୍ୟବାଦ ପ୍ରତିଷ୍ଠା କରିଥିଲେ । କିନ୍ତୁ ଆମ ଦେଶରେ ତ କୃଷକମାନେ ବହୁ ଧର୍ମ, ସଂପ୍ରଦାୟ ଓ ଜାତିରେ ବିଭକ୍ତ । ଧୂର୍ତ୍ତପ୍ରଭାବଶାଳୀ ସମାଜପତିମାନେ ଭିନ୍ନ ଆଳଦେଖାଇ ସେମାନଙ୍କୁ ବିଭାଜିତ କରିବାକୁ ଚେଷ୍ଟାକରିବେ । ଲକ୍ଷ୍ୟସାଧନ ବହୁତ କଷ୍ଟକର ଏଦେଶରେ" ।

"କଷ୍ଟକର ନିଶ୍ଚୟ, ତେବେ ସେମାନଙ୍କ ମନରେ ସାମ୍ୟବାଦୀ ଆନ୍ଦୋଳନ ପ୍ରତି ଗଭୀର ଆସ୍ଥା ଜନ୍ମାଇବାକୁ ହେଲେ, ଆମକୁ ଏମିତି କେତେ କାମ କରିବାକୁ ହେବ ଯାହାଦ୍ୱାରା ସେମାନେ କିଛି ଆଶୁ ସୁବିଧା ହାସଲ କରିପାରିବେ । "

"କଣ ତେବେ କରିବାକୁ ହେବ ?" ପଚାରିଲେ ପୀତବାସବାବୁ ଓ କାର୍ତ୍ତିକବାବୁ ।

"ପଞ୍ଚାୟତ ଅନୁଷ୍ଠାନର ସୁବିଧା ସୁଯୋଗ ଗରିବ ଚାଷୀ ଯେପରି ପାଇପାରେ ଆମେ ସେଥିପ୍ରତି ଦୃଷ୍ଟିଦେବା । ସମବାୟ ସମିତିର ଋଣ, ବିହନ ସାର ଠିକ୍ ସମୟରେ ଗରିବ ଚାଷୀ ପାଇବା ପାଇଁ ଆମେ ଚେଷ୍ଟା ଚଳାଇବା । ଆମର ନେତୃତ୍ୱ କେବଳ ସଭାସମିତି କରିବାରେ ସୀମିତ ନ ରହି ଲୋକଙ୍କର ତାତ୍କାଳିକ ବାସ୍ତବ ଉପକାର କରିବା ଦିଗରେ ପରିଚାଳିତ ହେବା ବାଞ୍ଛନୀୟ" । ଅନ୍ୟମାନେ ସମ୍ମତିସୂଚକ ଇଙ୍ଗିତ ଦେଲେ । ଏହା ଭିତରେ ରେବତୀ ଦେବୀ ଚାହା ବିସ୍କୁଟ ଆଣି ଥୋଇଦେଲେ । ପୀତବାସବାବୁ ପ୍ରଶଂସା କରିବା ଛଳରେ କହିଲେ "ରେବତୀନାନୀ ଆମ ପାଇଁ ବହୁତ କଷ୍ଟ କରୁଛନ୍ତି । ବୈଠକ ବସୁଛି ବାରମ୍ବାର ରେବତୀନାନୀ ଅତିଥିଚର୍ଚ୍ଚା କରି କ୍ଲାନ୍ତ" ।

ରେବତୀ ଦେବୀ କହିଲେ : "ନା ନା ସେମିତି କିଛି କଷ୍ଟ ନୁହେଁ, ତୁମେସବୁ ଦେଶପାଇଁ କାମକରୁଛ । ତୁମକୁ ଚାହା ଜଳଖିଆ ଯୋଗାଇ ଦେବାରେ ମୋର ଆନନ୍ଦ"। ଲକ୍ଷ୍ମଣବାବୁ ଆଲୋଚନାର ମୋଡବଦଳାଇ କହିଲେ "ହଁ ଆଉ ଗୋଟିଏ ଦିଗପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡିବ ।

ଏ ଦେଶର ନାରୀମାନଙ୍କୁ ଜାଗ୍ରତ କରିବାକୁ ପଡିବ । ସରକାର ମହିଳା ସମିତି ମାଧ୍ୟମରେ କୁଟୀର ଶିଳ୍ପ ଓ ଜନସ୍ୱାସ୍ଥ୍ୟର ଉନ୍ନତି କରିବାକୁ କେତେ ଯୋଜନା କରିଛନ୍ତି । ଶିକ୍ଷା ଓ ସଂଗଠନ ଅଭାବରୁ ଏ ଯୋଜନାର ସୁଯୋଗ ଆମ ଅଞ୍ଚଳର ଲୋକେ ନେଇପାରୁ ନାହାନ୍ତି । ଆମଦଳରେ କେତେଜଣ ମହିଳାଙ୍କୁ ତାଲିମ ଦେବା, ସେମାନେ ଗାଉଁଲି ସ୍ତ୍ରୀ ଲୋକ ମାନଙ୍କୁ ମହିଳାସମିତି ଗଠନ

କରିବାକୁ ପ୍ରବର୍ତ୍ତାଇବେ । ଏହି ସମିତି ଜରିଆରେ ସେମାନଙ୍କୁ କିଛି ଉତ୍ପାଦନଶୀଳ କାମ ଯୋଗାଇବା ସହ ସାମ୍ୟବାଦ ଆଦର୍ଶପ୍ରତି ଆକୃଷ୍ଟ କରିବାକୁ ହେବ । ଏ କାମରେ ରେବତୀର ସାହାଯ୍ୟ ଲୋଡା ହୋଇପାରେ''। ତାହା ରଖିଦେଇ ରେବତୀ ଫେରିଯାଉଁ ଯାଉଁ ଶୁଣିଦେଲେ ଏକଥା । ତାଙ୍କ ମନେ ପଡିଗଲା ବିଗତ ଦିନର କଥା, ଗାନ୍ଧିଜୀଙ୍କ ଡାକରାରେ ରମାଦେଇଙ୍କ ନେତୃତ୍ୱରେ ତୁଡିଗଡିଆରେ ସୂତାକଟା, ପାଇଖାନାସଫା, ପାଛିଆବୁଣା ଆଦି କାମ ଶିଖୁଥିଲେ । ମୌଳିକ ଶିକ୍ଷାର ଅଙ୍ଗସ୍ୱରୂପ । ଗାନ୍ଧୀ ଯୁଗତ ଚାଲିଗଲାଣି । ନୂଆକରି ମହିଳାମାନଙ୍କୁ ରୋଜଗାରକ୍ଷମ କରିବାକୁ ହେବ । ରେବତୀ ଦେବୀ ଆଗ୍ରହର ସହ କହିଲେ ''ହଁ ମୁଁ ଏସବୁ କାମରେ ଭାଗନେବାକୁ ପ୍ରସ୍ତୁତ ଅଛି'' ।

ଲକ୍ଷ୍ମଣବାବୁ ପୁନଶ୍ଚ ଆରମ୍ଭ କଲେ : ''ପୀତବାସବାବୁ, କିଛି ଦିନତଳେ କଂଗ୍ରେସର ନେତା ମଧୁସୂଦନ ବାବୁ ମୋତେ କହୁଥିଲେ ଆଗାମୀ ନିର୍ବାଚନରେ ତାଙ୍କ ପ୍ରାର୍ଥୀତ୍ୱକୁ ସାହାଯ୍ୟ କରିବା ପାଇଁ । ଆମରତ ସଂଗଠନ ସବୁ ପଞ୍ଚାୟତରେ ଏ ପର୍ଯ୍ୟନ୍ତ ଗଢିଉଠିନାହିଁ । ଆମେ ପ୍ରାର୍ଥୀ ଭାବରେ ନିର୍ବାଚନ ଲଢିଲେ ବିଜୟ ସମ୍ଭବପର କି ?''

ପୀତବାସ ବାବୁ କହିଲେ 'ନା' । ତେବେ ଆମ ଦଳ ନିର୍ବାଚନ ଲଢିବ ନା କେଉଁ ଦଳକୁ ସାହାଯ୍ୟ କରିବ ?''

ପୀତବାସବାବୁ ଓ ଅନ୍ୟମାନେ କିଛି ସମୟ ଚିନ୍ତା କଲେ । ଲକ୍ଷ୍ମଣବାବୁ କହିଚାଲିଲେ ''ଆମର ତ ପ୍ରଥମ ଶତ୍ରୁ ସାମନ୍ତବାଦୀ ଶକ୍ତି । ସ୍ୱତନ୍ତ୍ର ଦଳ ଏହି ଶକ୍ତିର ପ୍ରତିନିଧିତ୍ୱ କରିଛି । ଆମେ କ'ଣ ଏହାକୁ ସମର୍ଥନ କରିବା ନା ସେ ଦଳର ବିଜୟକୁ ପ୍ରତ୍ୟକ୍ଷ ବା ପରୋକ୍ଷରେ ସାହାଯ୍ୟ କରିପାରିବା ? ଇନ୍ଦିରା କଂଗ୍ରେସ କେତେକ ପ୍ରଗତିଶୀଳ ଅର୍ଥ ନୈତିକ ପଦକ୍ଷେପ ନେଇ ଲୋକଙ୍କ ନିକଟରେ ପ୍ରିୟ ହୋଇ ଉଠିଛି । ଏତିକିବେଳେ ଏମାନଙ୍କ ସହ ସହଯୋଗ କଲେ ଆମ ପ୍ରତି ଲୋକଙ୍କ ଆସ୍ଥାବିଶ୍ୱାସ ବଢିପାରେ ଏବଂ ପ୍ରଭାବଶାଳୀ ଶାସକଦଳ ଆମର ଆନ୍ଦୋଳନ ପ୍ରତି ସମ୍ବେଦନଶୀଳ ହୋଇ ପାରେ । କଂଗ୍ରେସର ଏହି ମନୋଭାବ ଆମ ଦଳକୁ ପରବର୍ତ୍ତୀ କାଳରେ ଶକ୍ତିଶାଳୀ କରିବାରେ ସହାୟକ ହେବ । ମୁଁ ଭାବୁଛି ଆଗାମୀ ନିର୍ବାଚନରେ ଆମ ଦଳ ପ୍ରାର୍ଥୀ ନଦେଇ କଂଗ୍ରେସକୁ ସାହାଯ୍ୟ କରୁ । ତୁମ୍ଭମାନଙ୍କର ମତ କ'ଣ ?''

ପୀତବାସବାବୁ କହିଲେ ''ସତକଥା ଏ ନିର୍ବାଚନ ପାଇଁ ଆମଦଳର ଆବଶ୍ୟକୀୟ ପ୍ରସ୍ତୁତି ନାହିଁ । ଆମର ଜିତିବା ସମ୍ଭାବନା ଖୁବ୍ କମ । ତେବେ ଏ ସମ୍ପର୍କରେ କି ପଦକ୍ଷେପ ନଆଯିବ ତା ଦଳର କେନ୍ଦ୍ର ଅଫିସ ସ୍ଥିର କରିବ୍ । ଆମେ ଦଳର ରାଜ୍ୟ କମିଟିକୁ ଆମର ଶକ୍ତି ସାମର୍ଥ୍ୟ ଓ ଦଳର ବିଜୟ ସମ୍ଭାବନା ବିଷୟରେ ଅବଗତ କରାଇ ଦେବା । ଏବେ କିନ୍ତୁ ସବୁ ପଞ୍ଚାୟତରେ, କୃଷକ, କ୍ଷେତମୂଲିଆ ଓ ମହିଳାମାନଙ୍କୁ ସଂଗଠିତ କରିବା ପାଇଁ ସୁଚିନ୍ତିତ ବଳିଷ୍ଠ ପଦକ୍ଷେପ ନିଆଯାଉ'' ।

ରାତ୍ରିର ଅନ୍ଧକାର ଘନେଇ ଆସୁଥାଏ । ପାଖରେ ଥିବା ଛୋଟ ବଜାର ବନ୍ଦ ହୋଇ ଆସୁଥାଏ ।

ଦୂର ଗାଁରୁ ବେପାର ପାଇଁ ଆସିଥିବା ପନିପରିବା ଚାଷୀ ମାଛ ଶୁଖୁଆ ବେପାରୀ ବିରିମୁଗ ଚାଉଳ ବ୍ୟବସାୟୀ ବେପାର ସାରି ଲଣ୍ଠନଟିଏ ଧରି ନିଜନିଜ ଗାଁକୁ ଫେରିବାକୁ ଲାଗିଲେଣି । ରେବତୀ ଦେବୀ ଚେତେଇ ଦେଲେ, "ରାତି ହେଲା, ଏଠାରେ ରାତ୍ରି ଭୋଜନର ବ୍ୟବସ୍ଥା ହେବ କି ?" ପୀତବାସବାବୁ ଓ କାର୍ତ୍ତିକବାବୁ କହି ଉଠିଲେ "ନା, ନାନୀ, ଆଉ ଅଧିକ ଆପଣଙ୍କୁ କଷ୍ଟ ଦେବୁ ନାହିଁ । ଆମେ ଚାଲିଲୁ" ।

କର୍ମୀମାନେ ନିଷ୍କ୍ରାନ୍ତ ହୋଇଗଲେ । ଆଗାମୀ ଦିନମାନଙ୍କରେ କମ୍ୟୁନିଷ୍ଟ ପାର୍ଟିର ସଂଗଠନ ସବୁ ପଞ୍ଚାୟତରେ ମୁଣ୍ଡ ଟେକିଲା, କୃଷକ କ୍ଷେତମୂଲିଆ ଓ ମହିଳାମାନଙ୍କର ସଂଘସମିତି ଗଢା ହୋଇ ସାମ୍ପ୍ରତିକ ସମସ୍ୟା ଓ ଦଳର ଆଦର୍ଶ ଆଭିମୁଖ୍ୟ ସମ୍ବନ୍ଧରେ ରୀତିମତ ଶିକ୍ଷା ଦିଆଗଲା । ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଲକ୍ଷ୍ମଣବାବୁ । କମ୍ୟୁନିଷ୍ଟ ପାର୍ଟିର ସହାୟତାରେ କଂଗ୍ରେସ ପ୍ରାର୍ଥୀ ନିର୍ବାଚନରେ ବିଜୟଲାଭ କଲା । ଏଥିପାଇଁ ଶାସକ କଂଗ୍ରେସ ଦଳ କୃତଜ୍ଞ ରହିଲା କମ୍ୟୁନିଷ୍ଟ ପାର୍ଟି ନିକଟରେ । ଶାସକ ଗୋଷ୍ଠୀର ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ କମ୍ୟୁନିଷ୍ଟ ଦଳର ସଂଗଠନ ଓ ତା ପ୍ରତି ଜନସମର୍ଥନକୁ ବୃଦ୍ଧି କରିବାରେ ସହାୟକ ହୋଇଥିଲା । ପରିଣାମରେ ପରବର୍ତ୍ତୀ ନିର୍ବାଚନରେ ଏହି ନିର୍ବାଚନ ମଣ୍ଡଳୀରୁ ବିଜୟ ହାସଲ କରିଥିଲେ ଯୁବନେତା ପୀତବାସବାବୁ । କମ୍ୟୁନିଷ୍ଟ ପାର୍ଟି ଲକ୍ଷ୍ମଣବାବୁଙ୍କୁ ଲାଲସଲାମ ଜଣାଇଥିଲା ନିବିଡ ଆନ୍ତରିକତାର ସହିତ ।

(ବାଉଣ)

'ସକାଳ ବସ୍ତୁ ବିକାର ଗ୍ରସ୍ତ ଏହି ସୃଷ୍ଟିରେ ପର,<br>ଭାଗ୍ୟଅବଳେ କାଳର କବଳେ ପଡିବେ ସକଳେ ଧରା'

ଲକ୍ଷ୍ମଣବାବୁ ବଡ ଚିନ୍ତିତ । ମଧୁମୟ ତାଙ୍କ ସଂସାରରେ ହଳାହଳର ଅନୁପ୍ରବେଶ । ବିଶ୍ୱାସ କରିପାରୁ ନାହାନ୍ତି, ଆଦରଣୀୟ ତାଙ୍କର ସାନ ଭଉଣୀ, ଯୌବନର ପ୍ରାରମ୍ଭରୁ ବୈଧବ୍ୟର ଯନ୍ତ୍ରଣାକୁ ଘଉଡାଇ ଭାଇର ସଂସାରକୁ ନିଜର ସଂସାର ରୂପେ ବରିନେଇ ଥିବା ରେବତୀ ରୁଷି କରି ଚାଲିଯାଉଛି ତାର ଜନ୍ମସ୍ଥାନ ବଡଭାଇର ପରିବାରକୁ । ବୁଝି ପାରନ୍ତି ନାହିଁ କିପରି ମମତାର ଡୋରି ଶିଥିଳ ହୋଇ ଶେଷରେ ଛିନ୍ନ ହେବାକୁ ଯାଉଛି । ପ୍ରାୟ ପଚାଶ ବର୍ଷ ଧରି ରେବତୀ ଥିଲା ତାଙ୍କ ପରିବାରର ସର୍ବମୟ କର୍ତ୍ତ୍ରୀ, ପ୍ରଧାନ ପରିଚାଳିକା । ପ୍ରଥମ ସ୍ତ୍ରୀର ସନ୍ତାନଠାରୁ ଆରମ୍ଭ କରି ଦ୍ୱିତୀୟ ସ୍ତ୍ରୀର କଠିନ ରୋଗଗ୍ରସ୍ତ ସନ୍ତାନ ପର୍ଯ୍ୟନ୍ତ - ସମସ୍ତଙ୍କର ସେବାଶୁଶ୍ରୂଷା କରିଆସିଛି ରେବତୀ । ମନେ ପଡିଯାଉଛି ମୃତ୍ୟୁଶଯ୍ୟାରେ ପଡିଥିବା ଅଭାଗା ସନ୍ତାନଟିର କି ସେବା ରେବତୀ ନ କରିଛି । ରାତିରାତି ଧରି ଅନିଦ୍ରା ହୋଇ ରୋଗଗ୍ରସ୍ତ ପିଲାଟିକୁ କୋଳରେ ଧରି ବସିଛି । ଜନ୍ମକରା ମାଆ ତାର ଏପରି କଷ୍ଟ ସ୍ୱୀକାର କରିନାହିଁ ରୁଗ୍ଣ ପିଲାର ଚିକିତ୍ସା ପାଇଁ । ସବୁ ପିଲାମାନେ ଖାଇବା ପିଇବା ସବୁକଥାରେ ପିଉସୀ ପାଖରେ ଅଳି ଗୁହାରି । ଘରେ କ'ଣ ଅଛି ନାହିଁ, ସ୍ୱଳ୍ପ ଦରମାରେ ପରିବାର କିପରି ଚଳିବ, ମୁଣ୍ଡ ବଥାଏ ରେବତୀର । ଲକ୍ଷ୍ମଣବାବୁଙ୍କ ସ୍ତ୍ରୀ କୌଣସିଥିରେ ମୁଣ୍ଡ ପୂରାନ୍ତି ନାହିଁ । ଘର ପାଇଟି ଯେତିକି କରିପାରିବେ କରନ୍ତି ।

ପ୍ରଥମ ସନ୍ତାନ ଜନ୍ମ ହେବାଠାରୁ ତାଙ୍କର ଶରୀର ଦୁର୍ବଳ । ଆଜି ଗୋଡ ବିନ୍ଧାତ କାଲି ଅଣ୍ଟାବିନ୍ଧା, ବାହାରକୁ ସ୍ୱାସ୍ଥ୍ୟବତୀ ଦେଖାଯାଉଥିଲେ ମଧ୍ୟ ଦେହ ଭିତରେ ଦୁର୍ବଳତା ଲାଗି ରହିଥାଏ । ତେଣୁ ପରିବାର ଦୈନନ୍ଦିନ କାମର ବଡଭାଗଟି ରେବତୀ ସମ୍ପାଦନ କରିଥାନ୍ତି । ବନ୍ଧୁବାନ୍ଧବ, ଅତିଥି ଅଭ୍ୟାଗତ ଚର୍ଚ୍ଚାର ଦାୟିତ୍ୱ ରେବତୀର । ସ୍ତ୍ରୀ ସବିତା ଦାୟିତ୍ୱମୁକ୍ତ ଭାବରେ ହାଲୁକା ଚିତ୍ତରେ ଜୀବନଯାପନ କରନ୍ତି । ରେବତୀ ଉପରେ ଘରର ସବୁ ଭାର ଦେଇ ଲକ୍ଷ୍ମଣବାବୁ ଚାକିରି ଓ ବାହାର କାମରେ ମନ ଲଗାନ୍ତି । ଅବସର ଜୀବନରେ ନୂଆ ଘର ତିଆରି ଠାରୁ ଏପର୍ଯ୍ୟନ୍ତ ସବୁ କାମ ତଦାରଖ କରନ୍ତି ରେବତୀ ଦେବୀ । ଚାଷବାସ, ମୂଲିଆପାନା, ଅତିଥି ଅଭ୍ୟାଗତ, ସବୁର ଦାୟିତ୍ୱ ସେ ନିଅନ୍ତି । କିଛି ଆପତ୍ତି ଅଭିଯୋଗ ନଥାଏ । କେବେ ବି କୁଣ୍ଠା ନଥାଏ । ପରିବାରରେ ରେବତୀ ଦେବୀଙ୍କ ସାର୍ବଭୌମ ଅଧିକାର ସବିତା ଦେବୀଙ୍କ ସ୍ଥିତିକୁ ଅତ୍ୟନ୍ତ ଗୌଣ କରି ଦେଇଛି । ଘର ଓ ବାହାର ଲୋକଙ୍କ ନିକଟରେ ସବିତା ଦେବୀଙ୍କ ସ୍ଥିତି ଅନୁପଲବ୍ଧ । ତାଙ୍କ ଅସ୍ତିତ୍ୱର ବର୍ତ୍ତମାନ-ଅବର୍ତ୍ତମାନ ମଧ୍ୟରେ କିଛି ପ୍ରଭେଦ ଥିଲା ଭଳି ଜଣା ଯାଏନି । ସେ ନିଜର ବ୍ୟକ୍ତିତ୍ୱ ସମ୍ବନ୍ଧରେ ସଚେତନ କି ନୁହେଁ ଜାଣି ହୁଏନା । ଏପରି ଏକ ଅସ୍ୱାଭାବିକ ସ୍ଥିତିରେ ଦୀର୍ଘ ଦିନ ଧରି ଚଳି ଆସୁଥିଲେ ସେ, ଆନନ୍ଦ-କି ନିରାନନ୍ଦରେ କହି ହେବନି । ତେବେ ମନର କ୍ଷୋଭ କେବେହେଁ ପ୍ରକାଶ ପାଉନଥିଲା ବାହାରକୁ । ରେବତୀ ଓ ତାଙ୍କ ମଧ୍ୟରେ ସମ୍ପର୍କ ଥାଏ ମଧୁର । ସବିତା ଦେବୀ କେବେ ରାଗ ରୋଷ ପ୍ରକାଶ କରିନଥାନ୍ତି ରେବତୀଙ୍କ ପ୍ରତି । ତେବେ କାହିଁକି ଏହି ପରିଣତ ବୟସରେ ଦୁଇ ମହିଳାଙ୍କ ଭିତରେ ତିକ୍ତତା ସୃଷ୍ଟି ହେଲା ଏବଂ ତାର ପରିଣତି ହେଲା ରେବତୀ ଅନ୍ୟତ୍ର ଚାଲିଯିବା- ଲକ୍ଷ୍ମଣବାବୁ ସ୍ପଷ୍ଟ ଜାଣି ପାରୁନଥିଲେ ହେଁ ମନ ଭିତରେ ତାଙ୍କର ଅନେକ ସମ୍ଭାବ୍ୟ କାରଣ ମୁଣ୍ଡ ଟେକୁଥାଏ । ପରିବାରରେ ସବିତାଙ୍କ ସ୍ଥିତିକୁ ସମ୍ପୂର୍ଣ୍ଣ ଅବଜ୍ଞା, ପିଲାଠାରୁ ବୁଢାପର୍ଯ୍ୟନ୍ତ, ବନ୍ଧୁବାନ୍ଧବଙ୍କ ଠାରୁ ଆରମ୍ଭ କରି ବାହାର ଭଦ୍ରଲୋକ ପର୍ଯ୍ୟନ୍ତ- ସମସ୍ତେ ତାଙ୍କୁ ଏଡେଇ ଯିବା ତାଙ୍କ ମନରେ ଏକ ବିଷମ ପ୍ରତିକ୍ରିୟା ସୃଷ୍ଟି କଲା କି ? ଏହି ପ୍ରତିକ୍ରିୟାର ମୁଖ୍ୟ ଶରବ୍ୟ ଘରର ବାସ୍ତବ କର୍ତ୍ତ୍ରୀ ରେବତୀ ହେବା ସ୍ୱାଭାବିକ ଥିଲା ନା ଅନ୍ୟ କିଛି କାରଣ ଅଛି ? ରେବତୀର କିଛି ଦୋଷ ରହିଗଲାକି ? ନା ସମୟର, ଆବର୍ତ୍ତନରେ ବୟସ ବଢିବା ସଙ୍ଗେ ଇର୍ଷା ସନ୍ଦେହ ଅସହିଷ୍ଣୁତା ଉପୁଜିଲା ? ମଣିଷର ଚରିତ୍ର ବିଶେଷତଃ ନାରୀ ଚରିତ୍ରଟିର ସୂକ୍ଷ୍ମାତିସୂକ୍ଷ୍ମ ରୂପ କ'ଣ ବା ଜାଣନ୍ତି ଲକ୍ଷ୍ମଣବାବୁ । ଅତିରୂ ଇତି ହୁଏ ବୋଲି ଲୋକେ କହନ୍ତି । ରେବତୀ ଦେବୀଙ୍କ ଅତି ମୁରବି ପଣିଆ ଅସହ୍ୟ ହେଲାକି ? ନା ଭାଗ୍ୟ ବୋଲି କୁହାଯାଉଥିବା ଏକ ଅଦୃଶ୍ୟ ଶକ୍ତି ଏପରି ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟିକଲା- କିଛି ଭାବି ପାରୁନଥାନ୍ତି ଲକ୍ଷ୍ମଣବାବୁ । କେବେ କେଉଁ ଘଟଣାରେ ରେବତୀର ସୂକ୍ଷ୍ମତନ୍ତ୍ରୀରେ ଆଘାତ ଲାଗିଛି ନିରୂପଣ କରି ଚାଲୁଥିଲେ ଲକ୍ଷ୍ମଣବାବୁ ।

ଆଖି ଆଗରେ ଝଲସି ଉଠିଲା ସେ ଦିନର ବାକ୍‌ବିତଣ୍ଡା । ସାବିତ୍ରୀର ଘୃଣାସୂଚକ ବିରକ୍ତିକର ମୁହଁ ଓ ରେବତୀର ଅଶ୍ରୁପୂର୍ଣ୍ଣ କରୁଣ ମୁହଁ ଦିଟି, "ଛୁଅଁନା ଛୁଅଁନା" ସାବିତ୍ରୀଙ୍କ ଛାନିଆସ୍ୱର । ବାହାର କାଠ ଚୁଲିରେ ସିଦ୍ଧ ହେଉଥିବା ଔଷଧ ମାଟି ପାତ୍ରଟି ଉପରେ ସେତେବେଳେକୁ ରେବତୀର ହାତ

ଲାଗିଯାଉଥିଲା । କବିରାଜ ପଣ୍ଡିତ-ତାନ୍ତ୍ରିକ ବିଶ୍ୱଭୂଷଣ ବ୍ୟସ୍ତହୋଇ ପଡି କହିଲେ "ଏତେ ପରିଶ୍ରମ ସବୁ ବ୍ୟର୍ଥ ହୋଇଗଲା । ପୂଜାରେ ବିଘ୍ନ ଘଟିଲେ, ଆଚାରରେ ବ୍ୟତିକ୍ରମ ହେଲେ, କବିରାଜୀ ଔଷଧର ଗୁଣ ନଷ୍ଟ ହୋଇଯାଏ" ।

'ଅଶୁଭ ହାତ ଲାଗିବ ନାହିଁ ବୋଲି, ଘରେ ଔଷଧ ପାକ ନକରି ବାହାର ଚୁଲିରେ କରାଗଲା । ତେବେ ବି ତ୍ରାହି ନାହିଁ । ସବୁଥିରେ ସେହି ହାତ । ମୋ ଶିରୀ କେହି ଦେଖିପାରୁ ନାହାନ୍ତି । ମୁଁ ଯେପରି ଏକ ଅଦରକାରୀ ମଣିଷଟେ" କହିବା ନିଷ୍ପ୍ରୟୋଜନ ଯେ ଏ ବକ୍ରୋକ୍ତିଗୁଡିକ ରେବତୀ ଦେବୀଙ୍କୁ ଆକ୍ଷେପ କରି କୁହାଯାଉଥିଲା । ରେବତୀ ଦେବୀଙ୍କ ପ୍ରତି ଅସୂୟା ଭାବ ବା ବିରକ୍ତି, ସବିତା ଦେବୀଙ୍କ ମନରେ ବର୍ଷେ ହେଲା ଜାତ ହୋଇଥିଲା, ଝିଅ ନମିତାର ବିବାହ କାଳରୁ । ମାଆ ହିସାବରେ ନିଜ ଝିଅକୁ ତାର ଶାଶୂ ଘରକୁ ବିଦାୟ ବେଳେ କ'ଣ ଦିଆଯିବ, ଝିଅ ପାଇଁ କ'ଣ କରାଯିବ ସବୁ କଥାରେ ରେବତୀ ଦେବୀଙ୍କ ହସ୍ତକ୍ଷେପ ସବିତା ଦେବୀଙ୍କୁ ଅରୁଚିକର ହେଉଥିଲା । ସେ ଭାବୁଥିଲେ ତାଙ୍କର ମାତୃତ୍ୱ ପ୍ରତି ଅବଜ୍ଞା କରାଯାଉଛି । ତାଙ୍କର ଉଜ୍ଜୀବିତ ହୋଇ ଆସୁଥିବା ଭାବପ୍ରବଣତା ଓ ବ୍ୟକ୍ତିତ୍ୱବୋଧ ଉପରେ ତେନ୍ତୁଳି ଛାଟ ଲଗାଯାଉଛି । ସ୍ୱଭାବତଃ ସବିତା ଦେବୀ ଶାନ୍ତ, ଉଦାସୀନ କୋମଳ ପ୍ରକୃତିର । ନାରୀସୁଲଭ ଛଳନା ବା ଚାତୁରୀ ନଥାଏ ତାଙ୍କ ଠାରେ । ଅତି ଅମାୟିକ ସରଳ ସ୍ତ୍ରୀ ଲୋକଟିଏ । ଏଇଥି ପାଇଁ ବଡ ଦି ଝିଅ ଓ ଜୋଇଁଙ୍କର ତାଙ୍କ ପ୍ରତି ପ୍ରଚୁର ଶ୍ରଦ୍ଧା ଓ ଭକ୍ତି ।

ଏବେ କେତେଦିନ ହେଲା ନୀରବ ସବିତା ଦେବୀଙ୍କ ମୁଖରୁ କଥା ଫୁଟି ବାହାରୁଛି । ପରିବାରର ବିଭିନ୍ନ କାମ ବିଷୟରେ ନିଜର ଆଗ୍ରହ ପ୍ରକାଶ କରୁଛନ୍ତି । ନିଜର ମତ ଦେଉଛନ୍ତି । ଅବଶ୍ୟ ତାଙ୍କର ମତ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ସେଥିପାଇଁ ସେ କେତେ ଥର ସ୍ୱାମୀଙ୍କ ଠାରେ ଅଭିମାନ ଓ ବିରକ୍ତି ପ୍ରକାଶ କଲେଣି । ଲକ୍ଷ୍ମଣବାବୁ ଏ ସବୁ କଥାରେ ଗୁରୁତ୍ୱ ଦିଅନ୍ତି ନାହିଁ । ପୂର୍ବ ପ୍ରଚଳିତ ଧାରାରେ ରେବତୀଙ୍କ ନିର୍ଦ୍ଦେଶରେ ଘରର ନିତିଦିନିଆ କାମ ଚାଲୁଥାଉ, ସେ ଚାହାନ୍ତି । ପୁନର୍ଜୀବିତ ରାଜନୈତିକ ଜୀବନରେ ଏଇଟା ତ ତାଙ୍କ ପ୍ରତି ଶ୍ରେୟସ୍କର । ପରିବାରର ନିତ୍ୟ ନୈମିତିକ ବୋଝ ଅଯଥା କାହିଁକି ମୁଣ୍ଡକୁ ନେବେ ?

ଏଇ କେତେ ମାସ ହେଲା, ସବିତା ଦେବୀଙ୍କ ଆଣ୍ଠୁଗଣ୍ଠି ବିନ୍ଧା କମର ବଥା ଅସହ୍ୟ ହୋଇ ଉଠିଲାଣି । ସ୍ୱଚ୍ଛନ୍ଦରେ ଉଠାବସା ଚଲାବୁଲା କରିବା କଷ୍ଟକର ହେଉଛି । ଏଲୋପାଥି ଔଷଧ କାମ ଦେଉ ନାହିଁ । ଏ ରୋଗର ମହୌଷଧି କବିରାଜୀ ଶାସ୍ତ୍ରରେ ଅଛି ବୋଲି ଜାଣିବାରୁ ସେ ତାଙ୍କ ବିଶ୍ୱସ୍ତ ବନ୍ଧୁ ପଣ୍ଡିତ ବିଶ୍ୱଭୂଷଣଙ୍କୁ ଡକାଇ ସବିତା ଦେବୀଙ୍କ ପାଇଁ ଏକ ମହାତୈଳ ପାକ କରିବାର ବ୍ୟବସ୍ଥା କରିଥିଲେ । ଏହି ତୈଳ ମାଲିସ କଲେ ବାତରୋଗ ଓ ଆଣ୍ଠୁଗଣ୍ଠି ବିନ୍ଧା ରୋଗ ଶୀଘ୍ର ଭଲ ହୋଇଯିବ । କେତେ ଯତ୍ନ ଓ ପବିତ୍ରତାର ସହ ଧନ୍ୱନ୍ତରୀଙ୍କ ମନ୍ତ୍ର ଉଚ୍ଚାରଣ ପୂର୍ବକ ଔଷଧ ତିଆରି ଚାଲିଥିଲା, ମଝିରେ ଘଟିଗଲା ବିଘ୍ନ, ଦେବୀଙ୍କ ଆରାଧନା ପଣ୍ଡ ହେଲା, ଔଷଧର ଗୁଣ ନଷ୍ଟ ହେଲା । ରିକ୍ତ ହସ୍ତର ରିକ୍ତ ପ୍ରଭାବ । ଅନ୍ଧବିଶ୍ୱାସୀ ସ୍ତ୍ରୀ ଲୋକଟିର କ୍ଷୋଭ ଓ ଖେଦୋକ୍ତି ଛୁଞ୍ଚି ଭଳି ଫୁଟିଁ ହୋଇଗଲା ରେବତୀ

ଦେବୀଙ୍କ ଛାତିରେ । ଦୁଃଖ ଓ ଅପମାନରେ ବିବର୍ଣ୍ଣ ମୁହଁକୁ ଦେକୁ ପୋତି ପାକଘାନ ଛାଡି ଚାଲି ଚାଲି ଆସୁ ଆସୁ ଦୃଷ୍ଟି ପଡିଲା ଶୂନ୍ୟ ନିରାଭରଣ ହାତ ଦିଟା ଉପରେ । ତୀବ୍ର ଭାବରେ ବିଦାରି ହୋଇଗଲା ଛାତି । ନିଷର୍ମା ଅଥର୍ବ ଜଣାଗଲା ହାତ ଦିଟା । ଜୀବନ ବୋଧହେଲା ବ୍ୟର୍ଥ । ଯେଉଁ ହାତରେ ନିବିଡ ସ୍ନେହ ଶ୍ରଦ୍ଧା ଓ ଯତ୍ନର ସହ ଭାଇର ପାଞ୍ଚ ଛଅ ସନ୍ତାନ ସନ୍ତତିଙ୍କୁ ଅନ୍ତୁଡି ଶାଳରୁ ଲାଳନ ପାଳନ କରି ଆସିଥିଲେ, ସେ ହାତ ମନେ ହେଲା ଅପଦାର୍ଥ । ଯେଉଁ ହାତରେ କୁଟା କାଠି ଉଠାଇ ଚାରା ଗଛରେ ପାଣି ଦେଇ ଭାଇର ନୂଆ ଘରଟିକୁ ଏକ ତପୋବନ କରି ତୋଳିଥିଲେ ସେହି ହାତ ଦୁଇଟି ସତେ ଯେପରି ଅକାମୀ ହୋଇଗଲା । ବୟସ ତ ସତୁରି ଅତିକ୍ରମ କରିଗଲାଣି । ଜୀବନର ଶେଷ ଦିନ କେତୋଟି ନିଜର ଜନ୍ମଭୂଇଁରେ ବଡଭାଇଙ୍କ ପୁଅ ବୋହୂମାନଙ୍କ ପାଖରେ କଟାଇ ଦେବାକୁ ମନସ୍ଥ କରିନେଲେ ଏହି ଅପ୍ରୀତିକର ଘଟଣା ଘଟିବା ବେଳୁ ।

ସ୍ନେହ ସଂପ୍ରୀତିଭରା ପାରିବାରିକ ଜୀବନ ଏକ ସଯତ୍ନେ ତିଆରି ବସ୍ତ୍ର । ବସ୍ତ୍ରଟି ଥରେ ଚିରିଗଲେ, ଚିରା ଅଂଶକୁ ସିଲାଇ କରି ସୁରୁଖୁରୁରେ କେତେ ଦିନ ବା ପିନ୍ଧି ହେବ ? ରେବତୀ ଦେବୀଙ୍କର ଏହି ଘର ପ୍ରତି ସମ୍ପର୍କର ପିନ୍ଧା ଲୁଗାଟି ଫଟ୍ କରି ଫାଟି ଗଲା । ସେହି ଦିନ ଭାଇଙ୍କ ସାନ୍ତ୍ୱନା ପ୍ରବୋଧନା ଚିରା ଅଂଶରେ ଟାଳି ପକାଇ ଦେଲା ସିନା ଲୁଗାଟି କିନ୍ତୁ ଚିରି ଚିରି ଗଲା । ଟିକିଏ ଟିକିଏ ଚାପ ପାଇ । ଏହି ଘଟଣା ପରେ ପରେ ସାମାନ୍ୟ କଥାରେ ନଣନ୍ଦ ଭାଉଜଙ୍କ ମଧ୍ୟରେ ବଚସା ଆରମ୍ଭ ହେଲା । ମୂକ ସବିତା ଦେବୀ ବାଚାଳ ହୋଇ ଆସିଲେ । ସ୍ୱଭାବତଃ ତୀକ୍ଷ୍ଣଭାଷୀ ରେବତୀ ଦେବୀ ତୀକ୍ଷ୍ଣତର ହୋଇଗଲେ । ଘର ଭିତରେ ମନୋମାଳିନ୍ୟର ଚାପା ଗୁଞ୍ଜରଣ, ସାମୟିକ ବିସ୍ଫୋରଣ ଅସହ୍ୟ ବୋଧ ହେଲା ଲକ୍ଷ୍ମଣବାବୁଙ୍କୁ । ଏଣୁ ମାଇଲେ ଗୋ ହତ୍ୟା, ତେଣୁ ମାଇଲେ ବ୍ରହ୍ମ ହତ୍ୟା । କାହାକୁ କ'ଣ କହିବେ ଉଭୟେ ତ ନିଜର । ସ୍ନେହ ଆଦରର ଅନ୍ତରଙ୍ଗ ପାତ୍ର । ଅଶାନ୍ତିକର ପରିବେଶରେ ଏକତ୍ର ରହିବା ଠାରୁ ଦୁହେଁ ଦୂରେଇ ରହିବା ସେ ଦୁହିଁଙ୍କ ପାଇଁ ଓ ପରିବାରର ଅନ୍ୟମାନଙ୍କ ପାଇଁ ମଙ୍ଗଳପ୍ରଦ ହେବ ।

ଦେଶ ବିଭାଜନକୁ ମହାତ୍ମାଗାନ୍ଧୀ ଯେମିତି ହୃଦୟରେ ଗଭୀର ବ୍ୟଥା ଓ ଆତ୍ମଗ୍ଲାନିର ସହ ମାନି ନେଇଥିଲେ, ରେବତୀର ଗୃହତ୍ୟାଗକୁ ସେହିପରି ମାନି ନେଇଥିଲେ ଲକ୍ଷ୍ମଣବାବୁ ବିକ୍ଷୁବ୍ଧ ଚିତ୍ତରେ । ଯାହା ଅବଶ୍ୟମ୍ଭାବୀ ତାକୁ ପ୍ରତିରୋଧ କରି ଲାଭ କ'ଣ ?

ବଡଭାଇଙ୍କ ପୁଅ, ପ୍ରିୟ ପୁତୁରା ଭୁବନାନନ୍ଦ ସହ ପରାମର୍ଶ କରି ସାନଭାଇର ଘରଛାଡି ବଡଭାଇ ଘରକୁ ରେବତୀ ଯିବାବେଳେ, ଭାଇ ଭଉଣୀ ଉଭୟଙ୍କ ହୃଦୟ ଅକୁହା ଅସହ୍ୟ ବ୍ୟଥାରେ ଫାଟି ପଡୁଥାଏ । ରେବତୀ ଦେବୀ ଭାଇଙ୍କ ପାଦଧୂଳି ନେଇ ବିଦାୟ ନେଲାବେଳେ ଆଖିର ଲୁହ ଦି ଟୋପା ଝରି ପଡିଥିଲା ଭାଇଙ୍କ ପାଦରେ । ସଦା ସହନଶୀଳ ଲକ୍ଷ୍ମଣବାବୁ ପରାଜୟର ଗ୍ଲାନି ଓ ବିଚ୍ଛେଦ ଦୁଃଖରେ ଭାଙ୍ଗି ପଡିଥିଲେ । ଥରଥର କଣ୍ଠରେ ରେବତୀର ମୁଣ୍ଡ ଆଉଁସି କହିଲେ ''ରେବ ଯେଉଁଠି ରହୁଛୁ ସୁଖରେ ରହ । ମନ ହେଲେ ମୋ ପାଖକୁ ଚାଲି ଆସିବୁ । ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ମୋ ଦ୍ୱାର

ତୋ ପାଇଁ ଖୋଲା ରହିଛି'' । ଦେବତୀର ଚଲା ପଥକୁ ସବିତା ଦେବୀ ନିର୍ବାକ ହୋଇ ଚାହିଁ ରହିଥିଲେ ଘର ଭିତରୁ ।

(ତେରଣ)

''ଗଗନେ ପବନେ ବନେବନେ ଆଉ ଦାସେର ମନେ
ଶୋଧନ ବହ୍ନି ଜ୍ୱଳିଆ ଉଠୁକ୍ ଶୁଭକ୍ଷେଣେ''
(ନଜରୁଲ୍)

ପିମ୍ପୁଡିଧାର ପରି ମଣିଷର ସୁଅ ଛୁଟିଛି । ଦୃଢ, ଗମ୍ଭୀର, ପ୍ରତିଜ୍ଞାବଦ୍ଧ । ବୈଶାଖର ଝଡଝଞ୍ଜା ଓ ମୁଣ୍ଡଫଟା ଖରାକୁ ଭ୍ରୁକ୍ଷେପ ନାହିଁ । ଶ୍ରାବଣ ନଦୀର ଉଚ୍ଛଳ ଜଳଧାରା ପରି ମାଡିଚାଲିଛି ମଣିଷର ସୁଅ । ସ୍ୱପ୍ନ, ଆଦର୍ଶର ଉତ୍ତାଳ ଢେଉରେ ସେମାନେ ଭାସି ଆସିଛନ୍ତି ମିଶିଯିବାକୁ ମହାମାନବର ସାଗର ତୀରେ । ଧାଇଁଛନ୍ତି ମୁକ୍ତିର ଗାନ ଗାଇ, ସାମ୍ୟର ଜୟଧ୍ୱନି ତୋଳି ।

ସେମାନେ ଆସିଛନ୍ତି ମେଘାସନ ପାହାଡର ପାଦଦେଶରୁ, ଯେଉଁଠି ଘଞ୍ଚ ଜଙ୍ଗଲର ଶାନ୍ତ କୋଳରେ ମେଘୁଆ ଆକାଶର କରୁଣାର୍ଦ୍ର ମୁହଁକୁ ଚାହିଁ ମୟୂର ମୟୂରୀ ନାଚୁଥିଲେ ଉଲ୍ଲାସରେ, ସେ ନାଚ ସଙ୍ଗେ ତାଳ ଦେଇ ହାଣ୍ଡିଆ ପିଇ ନାଚି ଯାଉଥିଲେ ଧାଙ୍ଗଡା ଧାଙ୍ଗଡି, ମହୁଲ ଗନ୍ଧରେ ମତୁଆଲା ହୋଇ । ଆଜି ସେ ଦୃଶ୍ୟ ବିରଳ । ପାହାଡର ଗର୍ଭରୁ ରତ୍ନ ସଂଗ୍ରହ କରିବାକୁ ଯାଇ ହତଶ୍ରୀ କରାଯାଉଛି ମାଟିର ମାଆକୁ । ମେସିନ୍‌ର ଗର୍ଜନ, ଧୂଆଁର କୁଣ୍ଡଳୀ ବାଦଲର ଭ୍ରମ ସୃଷ୍ଟି କରେ ସିନା, ବର୍ଷଣୋନ୍ମୁଖ ଆକାଶର ଶୀତଳ ସ୍ପର୍ଶ ଦିଏନି ।

କେତେ ଯେ ଆସିଛନ୍ତି, ଗନ୍ଧମାର୍ଦନ ପର୍ବତ ଅଞ୍ଚଳରୁ, ଯେଉଁଠି ଡିନାମାଇଟ୍‌ର ବଜ୍ରନାଦରେ ନିରୀହ ଆଦିବାସୀର ଛାତି ଫାଟି ପଡୁଛି । ବିଶଲ୍ୟକରଣୀ ଚିହ୍ନି ନପାରି ସମଗ୍ର ପାହାଡଟି ତୋଳି ନେଇଥିଲା ହନୁମାନ ତ୍ରେତୟା ଯୁଗରେ । ଆଜି ତା' ଗର୍ଭର ଗୁପ୍ତରତ୍ନ ସଂଗ୍ରହ ପାଇଁ ତାକୁ ସଂପୂର୍ଣ୍ଣ ରୂପେ ଚୁର୍‌ମାର୍ କରି ଦେବାର ଯୋଜନା ଚାଲିଛି । ଫଳମୂଳ ଗୋଟେଇ ଜୀଇଁ ରହିଥିବା ସରଳ ମଣିଷ ପାଥେୟ ହରେଇବାର ଆଶଙ୍କାରେ ଛୁଟି ଆସିଛି ରାଜଧାନୀରେ ପ୍ରତିବାଦ ଜଣାଇବାକୁ ।

କଳାହାଣ୍ଡିର ଉତ୍କଟ ମରୁଡିଗ୍ରସ୍ତ ଅଞ୍ଚଳରୁ ଛୁଟି ଆସିଛନ୍ତି ଶୀର୍ଣ୍ଣ ଜୀର୍ଣ୍ଣ ମଣିଷ । ପୂର୍ବକାଳେ ଏଠାକାର ଘଞ୍ଚ ଅରଣ୍ୟ ବାନ୍ଧି ରଖୁଥିଲା ମେଘମାଳାକୁ, କଳାହାଣ୍ଡିଆ ମେଘ ଘୋଟିଆସି ଥରେଇ ଦେଉଥିଲା ଅରଣ୍ୟବାସୀଙ୍କ ଛାତି । ଆଜି ସେଠାରେ 'ଜଳ ବିହୁନେ ସୃଷ୍ଟି ନାଶ'ର ଦାରୁଣ ସତ୍ୟ ବାସ୍ତବ ରୂପ ନେଇଛି । ସରକାରଙ୍କ ନିଷ୍ଫଳ ଉଦ୍ୟମ, ଛଳନାପୂର୍ଣ୍ଣ ଉକ୍ତି, ଶାସକର ମୁହଁରେ କଳା ବୋଳି ଚାଲିଥିଲେ ହେଁ ସେ କଳାକୁ କଜ୍ଜଳ ଭଣେଇ ଆତ୍ମପ୍ରସାଦ ନେବାର ପ୍ରହସନ ଚାଲିଛି ।

ସେମାନେ ଆସିଛନ୍ତି, ବଙ୍ଗୋପସାଗର କୂଳରୁ ଯେଉଁଠୁ ସାଧବ ପୁଏ ଜାହାଜ ମେଲି ଦେଉଥିଲେ, ଜାଭା ସୁମାତ୍ରା ଦ୍ୱୀପକୁ ଧାନ, ପାନପତ୍ର, କଂସାବାସନାଦି ପଣ୍ୟ ଦ୍ରବ୍ୟ ନେଇ, ଯେଉଁଠି

ଫିରିଙ୍ଗିମାନେ ବାଣିଜ୍ୟ ପସରା ମେଲି ଭାରତରେ ପୂର୍ବ ଉପକୂଳରେ ସମ୍ରାଜ୍ୟ ବିସ୍ତାର କରିବାର ପ୍ରଚେଷ୍ଟା ଚଲାଉଥିଲେ । ଆଜି ଯେଉଁଠି ବହିର୍ବାଣିଜ୍ୟ ତ ସ୍ୱପ୍ନ, ବର୍ଦ୍ଧିଷ୍ଣୁ ଅନ୍ତର୍ବାଣିଜ୍ୟର ତଣ୍ଟି ଚିପି ହତ୍ୟା କରାଯାଉଛି । ସହସ୍ର ସହସ୍ର ପରିବାରଙ୍କ ଜୀବିକା ଧ୍ୱଂସ କରି ସେମାନଙ୍କୁ ଭିକାରୀ କରିବାର ଯୋଜନା ଚାଲିଛି, ଶସ୍ୟଶ୍ୟାମଳ କର୍ମମୁଖର ଅଞ୍ଚଳକୁ ଯୁଦ୍ଧ ବିଭୀଷିକାର ଅନ୍ଧାର ଗହ୍ୱରକୁ ଠେଲି ଦିଆଯାଉଛି । ରାଷ୍ଟ୍ରର ହିତ ନାମରେ ବ୍ୟକ୍ତିକୁ ବଳି ଦିଆ ହେଉଛି । ନେତୃତ୍ୱ ନେଉଛନ୍ତି ଅଶ୍ୱିନୀକୁମାର, ରଘୁନାଥ ।

କୋରାପୁଟ, ଫୁଲବାଣୀ କନ୍ଧମାଳରୁ ଛୁଟି ଆସିଛନ୍ତି ଅର୍ଦ୍ଧଲଗ୍ନ ବନବାସୀ । ସେଇ ଦୂରାନ୍ତ ଅଞ୍ଚଳରେ ଗଢ଼ି ଉଠିଛି ମିଗ୍ କାରଖାନା, ଉତ୍ପାଦିତ ହେଉଛି ବିଜୁଳି ଆଲୁଅ, ଅନ୍ଧାରରେ କିନ୍ତୁ ବୁଡ଼ି ରହିଛନ୍ତି ଏଇସବୁ ପ୍ରକୃତିର ସନ୍ତାନ । ପେଟରେ କ୍ଷୁଧାର ଜ୍ୱାଳା । ଜଠରାଗ୍ନି ସତେ ଅବା ବିଜୁଳି ହୋଇ ମାଡ଼ି ଚାଲିଛି ଯୋଜନ ଯୋଜନ । ମିଗ୍, ନାଲକୋକୁ ଘେରି ଗଢ଼ି ଉଠୁଛି ଇନ୍ଦ୍ରପୁର । ଧୋବ ଧୋବକିଆ ହାକିମ ହୁକୁମା, ଗୁଜୁରାଟୀ, ମାରୱାଡ଼ିଙ୍କ ପ୍ରାସାଦ ଆକାଶ ଛୁଇଁ ଚାଲିଛି । ଉଭେଇ ଯାଉଛି ଆକାଶରୁ ମେଘ, ମରି ଯାଉଛି ମାଟିର ଜୀବନୀ ଶକ୍ତି, ହନ୍ତସନ୍ତ ହେଉଛନ୍ତି କନ୍ଧ, ମୁଣ୍ଡା, ଶବର ସନ୍ତାନ । ଯେଉଁମାନଙ୍କ ଛବିଳ ଜୀବନ ଚିତ୍ର ଆମ ସାହିତ୍ୟକୁ କରିଥିଲା ରସାଳ, ରଙ୍ଗିମନ୍ତ, ସେମାନେ ନିଜ ମାଟିରେ ହେଉଛନ୍ତି ପର, ନିବସ ଏବଂ ଉଦ୍‌ବାସ୍ତୁ ।

ଗୋପାଳପୁର ଓ ଚିଲିକା କୂଳରୁ ଆସିଛନ୍ତି ଅନେକ, ଯେଉଁମାନେ ଲୁଣିପାଣିରେ ସିଝି ସିଝି ଛାଣି ଆଣନ୍ତି ସମୁଦ୍ର ମାଛ । ମହାଜନର କିମିଆରେ ମାଛ ପାଲଟିଯାଏ ଟଙ୍କା, ଚହଟିଯାଏ କାହାର ଉଆସ ତ ଲୋଟିଯାଏ କାହା କୁଡ଼ିଆ । ଅପରଚ୍ଛନିଆ ମଣିଷଗୁଡ଼ିକ ହତାଶାରେ ହାହାକର ଟୋଳି ଦିନ କାଟନ୍ତି ।

ସେମାନେ ଆସିଛନ୍ତି ପାରାଦ୍ୱୀପ ବନ୍ଦର ଅଞ୍ଚଳରୁ, କଟକର ସହରତଳିରୁ । ଏକଦା ଓଡ଼ିଶାର ଶସ୍ୟଭଣ୍ଡାର, ଆଳି, କନିକା, ଚାନ୍ଦବାଲିରୁ ଆସିଛନ୍ତି ଅନେକ । ପୁଣି ଆସିଛନ୍ତି କଟକ, ପୁରୀ କେନାଲ କୂଳ ଅଞ୍ଚଳରୁ, ଏମାନେ ବର୍ଷସାରା ଖଟିଖଟି ପେଟପୁରା ଖାଇବାକୁ ପାଆନ୍ତି ନାହିଁ । ରାଜନୀତିର ହଟଚମଟରେ ମାରି ନିଅନ୍ତି ମହାପାତ୍ରେ ଚାହିଁ ରହନ୍ତି ଜନକା । କଳାବେପାରୀ, ଲାଞ୍ଚଖୋର, ଚୋରି ଦ୍ୱାଚୋରିର ବାଉରେ ସଢ଼ିମରନ୍ତି ଗରିବେ । ବାଦପ୍ରତିବାଦରେ ଫାଟିପଡ଼େ ଆକାଶ, ଟଳେନେ ନାହିଁ ଶାସକର ହୃଦୟ, ଅମୋଘ ଅସ୍ତ୍ରରେ ଶାସନ କରିଯା'ନ୍ତି ବେପରୁଆ ଭାବରେ ଗଣତନ୍ତ୍ରର ଖୋଳ ପିନ୍ଧି ଧନତନ୍ତ୍ର ଚଳେଇଛନ୍ତି ଚତୁର ଲୋକେ । ଭକୁଆ ବନନ୍ତି ସାଧାରଣ ଲୋକେ । କେରାଣ୍ଡି ଦେଇ ବାଜିଆ ଧରା ଚାଲେ ।

ସମସ୍ତେ ଆସିଛନ୍ତି ଅଟଳ ବିଶ୍ୱାସରେ, ଲାଲ୍ ସୂର୍ଯ୍ୟର ଗାନ ଗାଇ, ଲାଲ୍ ପତାକା ହାତରେ ଧରି ଲାଲ୍ ରକ୍ତରେ ହୋରି ଖେଳିବାର ଶପଥ ନେଇ । ଶୈବ କ୍ଷେତ୍ରରୁ ଅର୍କ କ୍ଷେତ୍ର କେତେ ଯେ ଦୂର ! ପ୍ରେମପାଗଳ ଅଶ୍ୱିନ କୁମାର ବୁଡ଼ିଯାଇଥିଲେ ସମୁଦ୍ରରେ ଚନ୍ଦ୍ରଭାଗାକୁ ଖୋଜି ଖୋଜି । ଲାଲ୍ ପ୍ରେମରେ

ଉନ୍ନତ ଜନତା, ସମୁଦ୍ର ଗର୍ଭରୁ ଉଠାଇ ଆଣିବେ ସୂର୍ଯ୍ୟଙ୍କୁ । କ୍ଷମତାନ୍ଧ ରାଜେଶ୍ୱରଙ୍କୁ ଠେଲି ସିଂହାସନରେ ବସାଇ ଦେବେ ଦିପ୍ତୀମାନ ସୂଯ୍ୟ- ଅନ୍ଧାରନାଶକ ଜୀବନଜ୍ୟୋତି- ଶକ୍ତିର ପ୍ରତୀକ ସୂର୍ଯ୍ୟ- ସର୍ବହରାର ପ୍ରତିଭୂ ।

ଲେନିନ୍ ଗ୍ରାଡ୍ ଷ୍ଟାଲିନ ଗ୍ରାଡର ପାଞ୍ଚଜନ୍ୟ, ଚୀନ୍, ଭିଏଟନାମ, କ୍ୟୁବାର, ବିଜୟଭେରୀ, ହୋଚିମିନ, ମାଓଜେଡୁଙ୍ଗ ଫିଡେଲ କାଷ୍ଟ୍ରୋଙ୍କ ଜୟଫୁକ୍କାର ଆଜାଦ୍‌ହିନ୍ଦ୍ ଫୌଜର ବଜ୍ରହୁଂକାର ଭାସି ଆସୁଛି ସେମାନଙ୍କ ସ୍ଲୋଗାନରୁ । ବୁଦ୍ଧିଦୀପ୍ତ ବାଣୀବିହାର ଛକରୁ, ଶ୍ରମସିକ୍ତ ରସୁଲଗଡରୁ, ଇତିହାସ ପ୍ରସିଦ୍ଧ ଧଉଳିଗିରି, ଖଣ୍ଡଗିରି ପାଦଦେଶରୁ ମାଡି ଆସୁଛି ଜନତା ଶାସନର ଦୁର୍ଗ ଟଳେଇ ଦେବେ, ନୂତନ ସୃଷ୍ଟିର ଖସଡା ଘୋଷଣା କରିବେ ।

ଶୃଙ୍ଖଳିତ, ଉତ୍ସର୍ଗିତ ଜନସମୁଦ୍ର । କ୍ଷୁଧା ଶୋଷ ମେଣ୍ଟାଇବା ପାଇଁ ସାମାନ୍ୟ ଆହାର ପାନୀୟର ବ୍ୟବସ୍ଥା, ସ୍ୱଚ୍ଛ ମୂଲ୍ୟରେ ପଂକ୍ତି ଭୋଜନ ।

ସମସ୍ତଙ୍କ ମଝିରେ ଚାଲିଛନ୍ତି ଲକ୍ଷ୍ମଣବାବୁ । ବୟସ ସତୁରିରୁ ଊର୍ଦ୍ଧ୍ୱ । ସରକାରୀ ଚାକିରି ଭିତରେ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଅତୀତରେ । ଏବେ ଚାଷୀ ମୂଲିଆଙ୍କ ନେତା । ପକେଟରେ ଅଛି କେତୋଟି ପେନ୍‌ସନ୍ ଟଙ୍କା । ରାଜଧାନୀର କେଉଁ ଏକ ହୋଟେଲରେ କିଛି ଖାଇ ନେବାର ଲାଳସା । ସଙ୍ଗରେ ଅଛନ୍ତି ଦିନ ମଜୁରିଆ ପଡୋଶୀ ହରିଜନ । ମନବଳୁନି ସାଙ୍ଗଛାଡି ଏକା ଏକା ଆହାର ପାଇଁ ଯିବାକୁ । ଧାଡି ବାନ୍ଧି ଚାଲିଛନ୍ତି ଶସ୍ତା ଭୋଜନ କେନ୍ଦ୍ରକୁ । ନିଜ ପାଇଁ ଓ ସାଙ୍ଗମାନଙ୍କ ପାଇଁ କୋପନ କିଣି ଭାତ ଡାଲମା ଖାଉଛନ୍ତି । ସେଥିରେ ଅପାର ଆନନ୍ଦ ପାଉଛନ୍ତି । ଆଲୁଅ ଉଙ୍କି ମାରିଛି ଅନ୍ଧାରର ପେଟ ଚିରି ।

ଉଭରେ ସତୁରିର ସାନ୍ତାଳ ବୁଢା ବୁଢୀ, କି ମୋହରେ ଆସିଛନ୍ତି ସୁଦୂର ମୟୂରଭଞ୍ଜରୁ । ଚାଷୀ ମେଳି, ପ୍ରଜା ଆନ୍ଦୋଳନ କରି ରାଜା ରାଜୁଡାଙ୍କୁ ହଟେଇଥିଲେ ଯୌବନରେ । ଜାତୀୟ ସ୍ରୋତରେ ମିଶି କି ଫଳ ପାଇଲେ ? ଉଦାରମନା ରାଜାଙ୍କ ସ୍ଥାନରେ ଶାସନ କରୁଛନ୍ତି ଅନୁଦାର ସ୍ୱାର୍ଥାନ୍ୱେଷୀ ଚତୁର ପ୍ରତିନିଧିଗଣ । ଗରିବ ଯେଉଁ ଗରିବାକୁ ସେହି ଗରିବ । ଲାଭଖୋର, ମୁନାଫାକାରଙ୍କ ସଂଖ୍ୟା ବଢି ଚାଲିଛି । 'ଦୁନିଆର କୁଲି ମଜଦୂର ଏକ ହୁଅ' ଡାକରାରେ ସେମାନେ ଆସିଛନ୍ତି ନୂତନ ସୂର୍ଯ୍ୟର ମାଙ୍ଗଳିକ ଗାଇ । ଆସିଛନ୍ତି ଶୈଳେନ୍ଦ୍ରଙ୍କ ନେତୃତ୍ୱରେ ନୀଳଗିରିବାସୀ । ପ୍ରଜାମେଳିର ଲୋମହର୍ଷଣକାରୀ ସ୍ମୃତିଚାରଣ କରି ।

ଭୋକ ଲାଗୁଛି । ପେଟ ବିକଳି ବୁଢା । ଶସ୍ତା ଭୋଜନ କେନ୍ଦ୍ର ବହୁ ଦୂରରେ । ଜୀବନ ସଙ୍ଗିନୀ ବୁଢୀଟିର ପାଦ ଥକି ଗଲାଣି, ଯାଇ ହେଉନି ଆଗକୁ । ସେ ଚାହେଁ ଟିକିଏ ବିଶ୍ରାମ, ଥକା ମେଣ୍ଟେଇ ପୁଣି ଚାଲିବାକୁ ହେବ ପ୍ୟାରେଡ୍ ପଡିଆକୁ । ମରଣ ପୂର୍ବରୁ ସେ ଆଉ ଥରେ ଦେଖିନେବ ମେଳି, ପ୍ରଜାମେଳି ଓଡିଶା ଭୂଖଣ୍ଡର ରାଜଧାନୀରେ । ଅତୀତରେ ପୁଲକଭରା ସ୍ମୃତି ଉଙ୍କି ମାରୁଛି । ବାରିପଦାର

ପ୍ରଜାମେଳି, ନୀଳଗିରିର ପ୍ରଜାମେଳି, ରାଜଶକ୍ତିକୁ ଦୋହଲେଇ ଦେଉଥିବା ରଣହୁଙ୍କାର । ପୁରୁଷ ହାତରେ ବର୍ଚ୍ଛା, ତରୁଆଲ୍, ଖଣ୍ଡା, ଲାଖ, ନାରୀର ଉଦ୍ଦୀପ୍ତ ବାଣୀ ଉତ୍ସାହ, ଉଦ୍ଦୀପନା । ଇତିହାସର ପୁନରାବୃତ୍ତି ଘଟୁଛି, କେତେ ବର୍ଷ ପରେ ନୂତନ ରଙ୍ଗରେ । ବୁଢୀ ଆସିଛି ବୁଢା ସଙ୍ଗରେ । ପୁରୁଷ ସଙ୍ଗେ ପ୍ରକୃତି । ପ୍ରାଣରେ ଖେଳି ଯାଉଛି କମ୍ପନ । ଭୋକ ଶୋଷ ଯାଉଛି ଉଭେଇ । ବୁଢାକୁ କହୁଛି ବୁଢୀ "ଏ, ତୁ ଯା' ପେଟ ଭରି ଖାଇଆ, ମୁଁ ଟିକିଏ ଥକାପାରେ, ସଭାଥାନ ତ ବହୁତ ଦୂର" ବୁଢା ଭାତ ଡାଲମା ଖାଇ ଫେରିଛି । ବୁଢି ପାଇଁ ଆଣିଛି ମୁଢି ବାଦାମ । ଦୁହେଁ ଆଗପଛ ହୋଇ ଚାଲିଛନ୍ତି । ପ୍ୟାରେଡ୍ ପଡିଆକୁ, ପାକୁଆ ପାଟିରେ ଲାଲ୍ ସଙ୍ଗୀତ । ଏ ଜନ୍ମରେ ନହେଲେ, ଆର ଜନ୍ମରେ ନୂତନ ସୂର୍ଯ୍ୟର ଶୋଭା ଦେଖିବାକୁ ବ୍ୟାକୁଳ । ଆକାଶ କମ୍ପି ଉଠୁଛି ବିପ୍ଳବ ସଙ୍ଗୀତରେ-

"ଆଗରେ ତୋର ଲାଲ୍ ଫଉଜ
ଉଡାରେ ତୋର ଧ୍ୱଜା
ବିପ୍ଳବର ଜନ୍ମ ଦିନେ
ହତିଆର ତୋ ପକାରେ ପଜା ।"

ଲକ୍ଷ୍ମଣବାବୁଙ୍କ ଶୀତଳ ରକ୍ତ ଉତ୍ତପ୍ତ ହୋଇ ଉଠୁଛି । ଫେରି ଆସୁଛି ବିଗତ ଯୌବନ ।

(ଚବିଶ)

"ରାଜଛତ୍ର ଭେଙ୍ଗେ ପେଡେ; ରଣ ଡଙ୍କା ଶବ୍ଦ ନାହିଁ ତୋଲେ
ଜୟସ୍ତମ୍ଭ ମୂଢସମ ଅର୍ଥ ତାର ଭୋଲେ
ରକ୍ତମାଖା ଅସ୍ତ୍ରହାତେ ଯତରକ୍ତ ଆଁଖି
ଶିଶୁପାଠ୍ୟ କାହାନୀତେ ଥାକେ ମୁଖ ଢାକି"

ବିଷର୍ଣ୍ଣ ମନରେ ଲକ୍ଷ୍ମଣବାବୁ ଗୁମ୍ ହୋଇ ବସିଛନ୍ତି ସକାଳ ଆଠଟାରୁ । ସକାଳର 'ସମାଜ'ରେ ବଡ ବଡ ହରଫରେ ଲେଖା "ସତୁରି ବର୍ଷର ସର୍ବହରାର ସାମ୍ରାଜ୍ୟ, ସୋଭିଏଟ ୟୁନିୟନର ପତନ । କମ୍ୟୁନିଷ୍ଟ ପାର୍ଟି ବିଭାଜିତ । କମ୍ୟୁନିଷ୍ଟ ଶାସନର ବିଲୋପ, ସମଗ୍ର ବିଶ୍ୱରେ ସାମ୍ୟବାଦର ପରାଜୟ । ସାମ୍ରାଜ୍ୟବାଦର ଅଖଣ୍ଡ ରାଜତ୍ୱ ଆରମ୍ଭ" । ବିଶ୍ୱାସ କରିପାରୁ ନାହାନ୍ତି ଲକ୍ଷ୍ମଣବାବୁ, ମାର୍କ୍ସଙ୍କ ବୈଜ୍ଞାନିକ ଚିନ୍ତାଧାରା, ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ଓ ଶ୍ରେଣୀସଂଘର୍ଷ ଭିତ୍ତିରେ କାଳଜୟୀ ଜନନାୟକ ସର୍ବହରାଙ୍କ ତ୍ରାଣକର୍ତ୍ତା ଲେନିନ୍-ଷ୍ଟାଲିନ୍‌ଙ୍କ ଅକ୍ଳାନ୍ତ ଉଦ୍ୟମରେ ଗଢିଉଠିଥିବା ବିଶ୍ୱର ସର୍ବପ୍ରଥମ ସାମ୍ୟବାଦୀ ରାଷ୍ଟ୍ର ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ଚକ୍ରାନ୍ତରେ ଗୋର୍ବାଚୋଭଙ୍କ ସଂସ୍କାର ପ୍ରକ୍ରିୟାର ଅଭିସନ୍ଧି ଦ୍ୱାରା ୭୦ ବର୍ଷର ସାଫଲ୍ୟ-ଅସାଫଲ୍ୟ ଅଙ୍କେଲିଭାଇ ଏପରି ଅପ୍ରତ୍ୟାଶିତ ଭାବେ ଭୁଷୁଡି ପଡିଛି ବୋଲି । ସୋଭିଏଟ ୟୁନିୟନର ପତନପରେ ସତେ କ'ଣ ବିଶ୍ୱରୁ ସାମ୍ୟବାଦର ଆବେଦନ ଲୋପ ପାଇଯିବ ? କାଳର କରାଳ କବଳରେ ବଂଶାନୁକ୍ରମିକ ରାଜତ୍ୱ, ରାଜତନ୍ତ୍ରର ଉତ୍ଥାନ ପତନ ପରି, ସଂଖ୍ୟାଗରିଷ୍ଠ ଅଗଣିତ ଗରିବ ମଜଦୂର କୃଷକ ପ୍ରତିନିଧିଙ୍କ ଶାସନ, ସତରେ ସମୂଳେ ବିନାଶ ଲଭିବ । ସାମ୍ରାଜ୍ୟବାଦୀ

ରାଷ୍ଟ୍ରର ଜୟଶଙ୍ଖ ସର୍ବହରାର ଆଶା ଆକାଙ୍‌କ୍ଷାର ପ୍ରତୀକ, ବ୍ୟକ୍ତିସ୍ୱାତନ୍ତ୍ର୍ୟ ସମତା ଓ ଭାତୃତ୍ୱର ଜାଜ୍ଜ୍ୱଲ୍ୟ ଦୀପିକା, ପୃଥିବୀପୃଷ୍ଠରୁ କ'ଣ ଚିରଦିନ ପାଇଁ ନିର୍ବାପିତ ହୋଇଯିବ ? ବିଶ୍ୱର ଦ୍ୱିତୀୟ ମହାଶକ୍ତି ସାମ୍ରାଜ୍ୟବାଦକୁ ପ୍ରତିହତ ତଥା ଆତଙ୍କିତ କରୁଥିବା ଅଜେୟ ସୋଭିଏତ ୟୁନିୟନ ଅତୀତର ଏକ ଇତିହାସ ରୂପେ, ଶିଶୁପାଠ୍ୟ ପୁସ୍ତକର ଏକ କାହାଣୀ ହୋଇ ଅନାଗତ ଭବିଷ୍ୟତରେ ଚିରଦିନ ପାଇଁ ରହିଯିବ ? '୭୦ ବର୍ଷପରେ ବିଲୟ । ଓଃ କି ଦାରୁଣ ଆଘାତ ଏ ପୃଥିବୀକୁ ?'

ବୋହୂ ନନ୍ଦିତା ଚାହା କପ୍‌ଟି ଥୋଇ ଦେଇ କହିଲା "ବାପା ଏତେ ବିମର୍ଷ କାହିଁକି ? କ'ଣ ଭାବୁଛନ୍ତି ? ଦେହ ଭଲ ନାହିଁ କି ?"

'ନା ମାଆ ଦେହ ଠିକ୍ ଅଛି । ଅନ୍ୟ କଥା, ମାନେ ସାଂପ୍ରତିକ ରାଜନୀତି କଥା ଭାବି ସକାଳୁ ମନଟା ବିମର୍ଷ ହୋଇ ପଡ଼ିଛି । ବୋହୂ ନନ୍ଦିତା ରାଜନୀତିର ଧାର ଧାରେନା, ଶଶୁର ଲକ୍ଷ୍ମଣବାବୁ ବେଳେ ବେଳେ ରାଜ୍ୟ ତଥା ଏ ଅଞ୍ଚଳର ରାଜନୈତିକ ପରିସ୍ଥିତିରେ ଏମିତି ବିବ୍ରତ ହୋଇଥାନ୍ତି । ତେଣୁ ଲକ୍ଷ୍ମଣବାବୁଙ୍କ ମନ ଖରାପ ପ୍ରତି ଗୁରୁତ୍ୱ ନଦେଇ ଘରକାମକୁ ଚାଲିଗଲା" । ଖବରକାଗଜଟିକୁ ଚିକିନିଖି ପଢ଼ିଚାଲିଲେ ଲକ୍ଷ୍ମଣବାବୁ । ଘଟଣା ଉପରେ ସମ୍ପାଦକୀୟ ଟିପ୍ପଣୀ ଓ ବିଶେଷଜ୍ଞମାନଙ୍କ ଅଭିମତ ଗଭୀର ମନ ଦେଇ ପଢୁଥାନ୍ତି ଏବଂ ସମସ୍ତ ଅଭିମତର ସାରବତ୍ତା ତଉଲୁଥାନ୍ତି । ଏତିକିବେଳେ ଯୁବକମ୍ୟୁନିଷ୍ଟ ନେତା ପୀତବାସ ବାବୁ ଏବଂ ସଙ୍ଗରେ ପୁରାତନ କର୍ମୀ ସଂଗ୍ରାମୀ ଶୈଳେନ୍ଦ୍ର ଓ କାର୍ତ୍ତିକ ସବୁ ଆସି ପହଞ୍ଚିଛନ୍ତି । ସେମାନେ ଏ ଦୁର୍ଘଟଣାରେ ଚକିତ ଓ ବ୍ୟଥିତ ।

ଦୁହେଁ ବିସ୍ମୟର ସ୍ୱର ତୋଳି ପଚାରିଲେ "ସାର୍ ଏହା କିପରି ସମ୍ଭବ ହେଲା ? ଏକ ମହାଶକ୍ତିଶାଳୀ ବିଶ୍ୱର ପ୍ରଥମ ବୃହତ ସାମ୍ୟବାଦୀ ରାଷ୍ଟ୍ର ସତୁରିବର୍ଷ କାଳ ସାମ୍ରାଜ୍ୟବାଦର ପ୍ରତିରୋଧ କରି, ସମଗ୍ରବିଶ୍ୱର ଅନୁନ୍ନତ ରାଷ୍ଟ୍ରମାନଙ୍କର ଆଦର୍ଶ ଓ ପ୍ରେରଣାର ଉତ୍ସ ରୂପେ କାର୍ଯ୍ୟକରି ଏପରି ଛିନ୍ନ ଛତ୍ର ହୋଇଯିବ ବୋଲି ଆମେ ସ୍ୱପ୍ନରେ ଭାବି ନଥିଲୁ । ଏହାର କାରଣ କ'ଣ ? କମ୍ୟୁନିଷ୍ଟ ରୁଷିଆର ପତନପରେ ଆଉ କ'ଣ ସାମ୍ୟବାଦ ପ୍ରସାର କରିପାରିବ ?"

ଲକ୍ଷ୍ମଣବାବୁ ଉତ୍ତର ଦେଲେ "ସୋଭିଏତ୍ ୟୁନିଅନର ପତନ ବାସ୍ତବିକ ସାମ୍ୟବାଦ ଇତିହାସରେ ଏକ ଦାରୁଣ ଦୁର୍ବିପାକ, ମହାନ ଜନନାୟକ ମାର୍କ୍ସ ଏଙ୍ଗେଲ୍‌ସ ଲେନିନ୍ ଷ୍ଟାଲିନ୍‌ଙ୍କ ସ୍ୱପ୍ନ ପ୍ରତି ଏକ ମସ୍ତବଡ଼ ଆଘାତ, ଏହା ନିଶ୍ଚିତ ଯେ ରୁଷିଆର ଭୂମିକା ବିଶ୍ୱରେ ସାମ୍ୟବାଦୀ ଚିନ୍ତାଧାରାର ପ୍ରସାର ଓ ବାସ୍ତବ ରୂପାୟନ କ୍ଷେତ୍ରରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହା ସତ୍ତ୍ୱେ ସାମ୍ୟବାଦର ରୂପ ଯେ ଅବିକଳ ରୁଷିଆର ଶାସନ ଓ ଆର୍ଥନୀତିକ ଢାଞ୍ଚାର ଅନୁରୂପ ଏହା ସ୍ୱୀକାର କରିହେବ ନାହିଁ । ରୁଷିଆରେ ଚାଲିଆସିଥିବା ଶାସନ ଓ ଅର୍ଥନୈତିକ ଢାଞ୍ଚା ମାର୍କ୍ସୀୟ ଚିନ୍ତାର ଅପରିବର୍ତ୍ତିତ ରୂପ ନୁହେଁ" ।

ପୀତବାସବାବୁ ସମ୍ମତି ଜଣାଇ କହିଲେ "ତା ଠିକ୍, ପୃଥିବୀର ବିଭିନ୍ନ ରାଷ୍ଟ୍ର ଯଥା, ଚୀନ୍, ୟୁଗୋସ୍ଲୋଭିଆ ପୋଲାଣ୍ଡ, କ୍ୟୁବା ମାର୍କ୍ସୀୟ ଚିନ୍ତାକୁ ବିଭିନ୍ନ ଭାବରେ ବିଶ୍ଳେଷଣ କରି ବିଭିନ୍ନ ପଦ୍ଧତି ଓ

ଢାଞ୍ଚାରେ ସାମ୍ୟବାଦୀ ସମାଜ ଓ ଶାସନ ପ୍ରତିଷ୍ଠା କରିଛନ୍ତି । ଏହା ସତ୍ତ୍ୱେ ବିଶ୍ୱ ସାମ୍ୟବାଦୀ ଇତିହାସରେ ରୁଷିଆର ସ୍ଥାନ ଥିଲା ସ୍ୱତନ୍ତ୍ର ଓ ଗୌରବମୟ । ଏହି ଗୌରବମୟ ଇତିହାସର ଦୁଃଖାନ୍ତକ ପରିଣତି ନିଶ୍ଚିତ ରୂପେ ବ୍ୟଥାଦାୟକ ଏବଂ ପୁଞ୍ଜିବାଦର ସହାୟକ । ଏହାର ନିରୁତ୍ସାହଜନକ ପ୍ରଭାବ ଆମ ଦେଶର ସାମ୍ୟବାଦ ବା ସମାଜବାଦ ଉପରେ ନିଶ୍ଚୟ ପଡ଼ିବ'' ।

ଲକ୍ଷ୍ମଣବାବୁ କହିଲେ ''ଏହି ଚିନ୍ତା ତ ଆମ୍ଭମାନଙ୍କୁ ବିବ୍ରତ କରୁଛି । ତେବେ ମାର୍କ୍ସଙ୍କ ଦର୍ଶନରୁ ଆମକୁ ଶକ୍ତି ସଂଗ୍ରହ କରିବାକୁ ପଡ଼ିବ । ମାର୍କ୍ସ German Ideology ପୁସ୍ତକରେ ଲେଖିଛନ୍ତି ''ଆମେ କୌଣସି ନିର୍ଦ୍ଦିଷ୍ଟ ଦୃଷ୍ଟିରେ ଏ ବିଶ୍ୱକୁ ଦେଖୁନାହୁଁ । ଯାହା ସତ୍ୟ ଓ ନିଷ୍ଠୁର ବାସ୍ତବତା ତା ଆଗରେ ମୁଣ୍ଡ ନୁଆଁଇ ଦେଉଛୁ । ପ୍ରଚଳିତ ଦର୍ଶନକୁ ଭିତ୍ତି କରି ନୂତନ ଦର୍ଶନ ଉପସ୍ଥାପନ କରୁଛୁ'' । ପୁନଶ୍ଚ ସେ କହିଛନ୍ତି ''ସାମ୍ୟବାଦୀ ଆନ୍ଦୋଳନ ଏକ ନିର୍ଦ୍ଦିଷ୍ଟ ଅବସ୍ଥାକୁ ବୁଝାଏ ନାହିଁ । ଅବସ୍ଥିତ ପରିସ୍ଥିତି ପରିବର୍ତ୍ତନ ପାଇଁ ଏହା ଏକ ଆନ୍ଦୋଳନ'' ମାର୍କ୍ସ କହିଥିଲେ : ''ସମ୍ମିଳିତ ଉଦ୍ୟମରେ ସମୂହ କଲ୍ୟାଣ ପାଇଁ ଉତ୍ପାଦନ ସଂଘଟିତ ହେଲେ ଏବଂ ସମାଜରୁ ଶ୍ରେଣୀଭେଦ ଲୋପ ଘଟିଲେ ରାଷ୍ଟ୍ରର ରାଜନୈତିକ ତାତ୍ପର୍ଯ୍ୟ ଲୋପ ପାଇବ । ଏହା ହିଁ ସାମ୍ୟବାଦର ଅନ୍ତିମ ପର୍ଯ୍ୟାୟ । ଏହି ଅନ୍ତିମ ପର୍ଯ୍ୟାୟ ପୂର୍ବରୁ ସାମ୍ୟବାଦୀ ରାଷ୍ଟ୍ରରେ ସର୍ବହରାର ସାର୍ବଭୌମତ୍ୱ ଜାହିର ହେବ'' ।

ପ୍ରକୃତରେ କ'ଣ ରୁଷିଆରେ ସର୍ବହରାର ସାର୍ବଭୌମତ୍ୱ ଥିଲା ? ନା ସର୍ବହରାର ନାମରେ ମୁଷ୍ଟିମେୟ ଲୋକଙ୍କର ଆଧିପତ୍ୟ ବିସ୍ତାର କରିଥିଲା ?''

ପୀତବାସ ବାବୁ ଯୋଗ ଦେଲେ ''ଠିକ୍ କହିଛନ୍ତି ସାର୍ ରୁଷିଆରେ ସର୍ବହରାର ସାର୍ବଭୌମତ୍ୱ ପ୍ରତିଷ୍ଠିତ ହୋଇନଥିଲା । କମ୍ୟୁନିଷ୍ଟ ପାର୍ଟିର ପ୍ରଭାବଶାଳୀ ଲୋକଙ୍କର ଏକାଧିପତ୍ୟ ଜାହିର ହୋଇଥିଲା'' । ଲକ୍ଷ୍ମଣବାବୁ କହିଚାଲିଥାନ୍ତି ''ଏତିକି ନୁହେଁ ରୁଷିଆ ସାମ୍ୟ ଓ ସମୃଦ୍ଧି ଭିତରେ ଏକ ସୁସ୍ଥ ସମନ୍ୱୟ ରଖିପାରିଲା ନାହିଁ । ସାମରିକ କ୍ଷେତ୍ରରେ ଅଦ୍ୱିତୀୟ ବା ଦ୍ୱିତୀୟ ଶକ୍ତିଶାଳୀ ରାଷ୍ଟ୍ର ହେବା ପାଇଁ ଦେଶର ସର୍ବାଧିକ ସମ୍ବଳ ବିନିଯୋଗ କରିଚାଲିଲା, ଅବଶ୍ୟ ସାମ୍ରାଜ୍ୟବାଦୀ ଶତ୍ରୁର ସମ୍ମୁଖୀନ ହେବା ପାଇଁ ଏହା ସୂତ୍ରପାତ ହୋଇଥିଲା । ତେବେ ଅର୍ଥନୈତିକ ସଙ୍କଟ, ବିଶେଷତଃ ଜୀବନଧାରଣର ମାନ ବୃଦ୍ଧି ପ୍ରତି କ୍ରମାଗତ ଅବହେଳା ଲୋକଙ୍କ ମନରେ କମ୍ୟୁନିଷ୍ଟ ଦଳ ପ୍ରତି ବିତୃଷ୍ଣା ଓ ଅସନ୍ତୋଷ ସୃଷ୍ଟିକଲା । ସାଧାରଣ ଲୋକଙ୍କ ଦୁରବସ୍ଥା ବେଳେ ନେତାମାନଙ୍କର ସୌଖିନ ଜୀବନ ଅସନ୍ତୋଷରେ ଘୃତ ଦାନ କଲା । ଗୋର୍ବାଚୋଭଙ୍କ ପୁନର୍ଗଠନ ଓ ଉନ୍ମୁକ୍ତତା ନୀତିର ପ୍ରବର୍ତ୍ତନ ଦେଶର ସଂହତି ଓ ନିରାପତ୍ତା ବୃଦ୍ଧିକରିବା ପରିବର୍ତ୍ତେ ବିଶୃଙ୍ଖଳା ଓ ଅସ୍ଥିରତା ସୃଷ୍ଟି କଲା । ଏପରି ପରିସ୍ଥିତିରେ ସାମ୍ରାଜ୍ୟବାଦୀ ରାଷ୍ଟ୍ରଙ୍କ ଚକ୍ରାନ୍ତ ବେଶ୍ ଫଳପ୍ରଦ ହେବା ସ୍ୱାଭାବିକ । ରୁଷିଆରେ ସାମ୍ୟବାଦର ପତନ ପାଇଁ ଦାୟୀ ଲେନିନ୍ ପରବର୍ତ୍ତୀ ନେତା ମାନେ ଓ ତାଙ୍କର ତ୍ରୁଟିପୂର୍ଣ୍ଣ ଅର୍ଥନୈତିକ ଯୋଜନା ଏବଂ ଜୀବନଚର୍ଯ୍ୟା । ମନେ ପକାଅ ବିତେଲ କାଷ୍ଟ୍ରେ କ'ଣ କହିଛନ୍ତି । ସେ କହିଛନ୍ତି ''ପୁଞ୍ଜିବାଦୀ ମନୋବୃତ୍ତି ଓ ଜୀବନଚର୍ଯ୍ୟା ନେଇ ଦୃଢ଼ ଓ ସ୍ଥାୟୀ ସାମ୍ୟବାଦୀ ରାଷ୍ଟ୍ର ଗଠନ କରି ହେବ ନାହିଁ ।'' ଲୋକମାନଙ୍କ

ବିଶେଷତଃ ନେତାଙ୍କ ମନରୁ ଧନ ଆହରଣ ଲାଳସା ଲୋପ ନକଲେ ମାର୍କ୍ସୀୟ ସାମ୍ୟବାଦ ପ୍ରତିଷ୍ଠା ସମ୍ଭବ ନୁହେଁ'' ।

ପୀତବାସବାବୁ ପ୍ରଶ୍ନ କଲେ ''ରୁଷିଆରେ ଏତେ ଉନ୍ନତି ଘଟିଥିଲା, ଶିକ୍ଷା, ସ୍ୱାସ୍ଥ୍ୟ ନିଯୁକ୍ତି କ୍ଷେତ୍ରରେ ଅଭୂତପୂର୍ବ ସଫଳତା ହାସଲ ହୋଇଥିଲା । ଲୋକଙ୍କର ନିମ୍ନତମ ଗୁଜୁରାଣ ମେଣ୍ଟି ଥିଲା । ତଥାପି ଲୋକେ କିପରି ପୁଞ୍ଜିବାଦର ଶିକାର ହେଲେ ?''

ଲକ୍ଷ୍ମଣବାବୁ କହିଲେ 'ଲୋକେ ପୁଞ୍ଜିବାଦର ଶିକାର ହୋଇ ନାହାନ୍ତି । ନେତାମାନେ ଶିକାର ହୋଇଛନ୍ତି । ତେବେ ରୁଷିଆର ପ୍ରଧାନ ତ୍ରୁଟି ହେଲା ସବୁଥାଇ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ଅଭାବ ଲୋକେ ବୋଧ କରୁଥିଲେ । ଲୋକଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ହୋଇଗଲେ ସେମାନେ ବ୍ୟକ୍ତି ସ୍ୱାଧୀନତା ଉପରେ ଗୁରୁତ୍ୱ ଦେବା ସ୍ୱାଭାବିକ । ବହୁବର୍ଷ ତଳେ ରୋଜାଲକସବର୍ଗ ଚେତାବନୀ ଶୁଣାଇ ଷ୍ଟାଲିନପନ୍ଥୀମାନଙ୍କୁ କହିଥିଲେ ''ସୀମିତ ସ୍ୱାଧୀନତା ଭୋଗ କରୁଥିବା ବ୍ୟକ୍ତିର ସାମାଜିକ ଜୀବନ ସଂକୀର୍ଣ୍ଣ, ଅନୁନ୍ନତମାନର ଓ ନିଷ୍ଫଳ । କାରଣ ତାଠାରୁ ଗଣତାନ୍ତ୍ରିକ ଅଧିକାର ଛଡାଇ ନେଲେ ତାର ବୌଦ୍ଧିକ ବିକାଶ ଓ ପ୍ରଗତି ଖର୍ବ ହୋଇଥାଏ । ''ସର୍ବହରାର ଐତିହାସିକ କାର୍ଯ୍ୟ ହେଉଛି ବୁର୍ଜୁଆ ଗଣତନ୍ତ୍ର ପରିବର୍ତ୍ତେ ଏକ ସମାଜବାଦୀ ଗଣତନ୍ତ୍ର ପ୍ରତିଷ୍ଠା କରିବା'' । ଲେନିନ୍ ସମାଜବାଦର ତତ୍ତ୍ୱ ଓ ପ୍ରୟୋଗ ପରିସ୍ଥିତି ଭେଦରେ ସୃଜନଶୀଳ ରୂପେ ଗଢିତୋଳିବାକୁ କହୁଥିଲେ । ରୁଷିଆର ନେତାମାନେ ବୋଧହୁଏ ଏଥିପ୍ରତି ସମ୍ୟକ ଦୃଷ୍ଟି ଦେଇ ନାହାନ୍ତି । ପୁଞ୍ଜିବାଦର ଉଚ୍ଛେଦ ହୋଇଗଲେ ସବୁ ସମସ୍ୟାର ସମାଧାନ ହୋଇଯାଏ ନାହିଁ । ପୁଞ୍ଜିବାଦୀ ରାଷ୍ଟ୍ରଗୁଡିକ ଯେପରି ଭାବରେ ଉତ୍ପାଦନ ବୃଦ୍ଧି ପଛରେ ଧାଇଁଲେ ଏବଂ ଏହି ଲକ୍ଷ୍ୟ ହାସଲ ପାଇଁ ଯେଉଁ ପ୍ରକାର ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ କଲେ, ସାମ୍ୟବାଦୀ ରାଷ୍ଟ୍ର ତାହା ଅନୁସରଣ କରି ଚାଲିବା ଦ୍ୱାରା କାଳକ୍ରମେ ଉପଭୋକ୍ତାବାଦ ମୁଣ୍ଡ ଟେକିଲା ଏବଂ ଏହା ସାମ୍ୟବାଦର ମହାନ ଲକ୍ଷ୍ୟକୁ ପ୍ରତିହତ କଲା । ଏହି ତ୍ରୁଟିର ପରିଣାମ ହେଲା ମହାଶକ୍ତିଶାଳୀ ସୋଭିଏତ୍ ୟୁନିୟନର ପତନ'' ।

ପୀତବାସ ଓ ସାଥୀ କାର୍ତ୍ତିକବାବୁ ଲକ୍ଷ୍ମଣବାବୁଙ୍କ କଥାର ଯୁକ୍ତିଯୁକ୍ତତା ମର୍ମେ ମର୍ମେ ଅନୁଭବ କରୁଥିଲେ । ଅଧୀର କଣ୍ଠରେ ପ୍ରଶ୍ନ କଲେ ''ସାମ୍ୟବାଦରେ ବିଶ୍ୱାସ କରୁଥିବା ଲୋକଙ୍କ ପକ୍ଷେ ଏବେ ବିକଳ୍ପ ପନ୍ଥା କ'ଣ ?''

ଲକ୍ଷ୍ମଣବାବୁ ଉତ୍ତର ଦେଲେ ''କେବଳ ଶ୍ରେଣୀ ସଂଘର୍ଷ ଓ ସାମାଜିକ କର୍ତ୍ତୃତ୍ୱ ହାସଲ ଉପରେ ଗୁରୁତ୍ୱ ଦେଇ ଏବଂ ବ୍ୟକ୍ତିକୁ ଗୌଣ ସ୍ଥାନ ଦେଇ ସୁସ୍ଥ ସୁଦୃଢ଼ ସାମ୍ୟବାଦୀ ରାଷ୍ଟ୍ର ଗଠନ କରି ହେବ ନାହିଁ । ଆମକୁ ମନେ ପକେଇବାକୁ ହେବ ମାର୍କ୍ସ ଏଙ୍ଗେଲସ୍ ସାବଧାନ କରି ଦେଇଥିଲେ ''ତାଙ୍କର ତତ୍ତ୍ୱ ସର୍ବଦା ଓ ସର୍ବଥା ସତ୍ୟ ହୋଇ ନପାରେ । ମାର୍କ୍ସବାଦ ସ୍ଥାଣୁ ନୁହେଁ । ଏହା ଏକ ବର୍ଦ୍ଧିଷ୍ଣୁ ତତ୍ତ୍ୱ'' ଫିଡେଲ କାଷ୍ଟ୍ରୋ ମଧ୍ୟ କହିଥିଲେ 'ମାର୍କ୍ସୀୟ ରଚନା ଓ ବିପ୍ଳବାତ୍ମକ ରଚନାର ସର୍ବଦା ନବୀକରଣ ହେବା ଉଚିତ ।

ଚିରାଚରିତ କଥାକୁ ଦୋହରାଇ କେହି କାହାକୁ ଜୟ କରିପାରିବ ନାହିଁ'' । ଗୋଟିଏ ଐତିହାସିକ ପରିସ୍ଥିତିରେ ରୁଷିଆରେ ସାମ୍ୟବାଦୀ ରାଷ୍ଟ୍ର ଏକ ସ୍ୱତନ୍ତ୍ର ରୂପ ନେଇଥିଲା । କାଳର ବିବର୍ତ୍ତନ ଓ ପରିସ୍ଥିତି ଭେଦରେ ସାମ୍ୟବାଦୀ ରାଷ୍ଟ୍ର ଭିନ୍ନ ରୂପ ନେବାକୁ ବାଧ୍ୟ । ପୃଥିବୀର ପ୍ରାୟ ସବୁ ଦେଶରେ ଗଣତନ୍ତ୍ର ବିକାଶ ଲାଭ କରିଛି । ଗଣତନ୍ତ୍ରର ପରିବେଶ ଭିତରେ ସାମ୍ୟବାଦ ପ୍ରତିଷ୍ଠା ପାଇଁ ବିକଳ୍ପ ପନ୍ଥା ଧରିବାକୁ ହେବ । ଏହାହିଁ ସାମ୍ୟବାଦୀଙ୍କ ପ୍ରତି ଏକ ଆହ୍ୱାନ । ଏ ଆହ୍ୱାନର ସମ୍ମୁଖୀନ ହେବା ଚିନ୍ତାଶୀଳ ମଣିଷ ପକ୍ଷେ ଦୁରୂହ ବ୍ୟାପାର ନୁହେଁ । ତେଣୁ ହତାଶ ହେବାର କୌଣସି କାରଣ ନାହିଁ ।''

ସାମ୍ୟବାଦ ପ୍ରତି ଲକ୍ଷ୍ମଣବାବୁଙ୍କ ପ୍ରଗାଢ଼ ଅନୁରକ୍ତି ଓ ଅଟଳ ବିଶ୍ୱାସ ଦୁଇ ଯୁବବନ୍ଧୁଙ୍କୁ ମୁଗ୍ଧ କରିଦେଲା ।

- - -

(ପଚିଶ)

"Arise prisoners of Starvation
Arise ye wretched of the earth
For justice thunders condemnations
A new world is in birth"

(Pottier)

ସୋଭିଏଟ ୟୁନିୟନର ପତନ ଲକ୍ଷ୍ମଣବାବୁଙ୍କ ମନରେ ଦାରୁଣ ଦୁଃଖ ଦେଇଥିଲା ସତ, ମାତ୍ର ସାମ୍ୟବାଦର ଭବିଷ୍ୟତ ପ୍ରତି ତାଙ୍କର ଗଭୀର ଆସ୍ଥା ଦୋହଲାଇ ପାରି ନଥିଲା । ଲକ୍ଷ୍ମଣବାବୁଙ୍କ ସମେତ ଭାରତରେ ବାମପନ୍ଥୀମାନେ ବିଶ୍ୱର ପରିବର୍ତ୍ତିତ ପରିସ୍ଥିତି ସଙ୍ଗେ ଖାପ ଖୁଆଇ ସାମ୍ୟ ପ୍ରତିଷ୍ଠାର ଲକ୍ଷ୍ୟକୁ ଆଗେଇ ନେବାକୁ ମାନସିକ ପ୍ରସ୍ତୁତି କରି ପାରିଥିଲେ । ଭାରତର ରାଜନୀତି ଦିଗ୍‌ବଳୟରେ ଏହି ସମୟରେ ଅନ୍ୟ ଏକ ଉଜ୍ଜ୍ୱଳ ତାରକାର ଆବିର୍ଭାବ, ଅନ୍ତତଃ ଭାରତରେ ସାମ୍ୟପ୍ରତିଷ୍ଠାର ଲକ୍ଷ୍ୟ ହାସଲର ଉଦ୍ୟମକୁ କିଛି ଦୂର ଆଗେଇ ନେଇଥିଲା । ଭାରତୀୟ ସମାଜ ପରିପ୍ରେକ୍ଷୀରେ ଜାତିବିଭାଜନ ଯେ ମାର୍କ୍ସୀୟ ଶ୍ରେଣୀ ବିଭାଜନର ଏକ ରୂପାନ୍ତର ଏହା ଅବିସମ୍ବାଦିତ । ଭାରତରେ ହରିଜନ ଆଦିବାସୀଙ୍କ ପାଇଁ ସମ୍ବିଧାନ ଅନୁସାରେ ସ୍ୱତନ୍ତ୍ର ସୁବିଧା ଦିଆହୋଇଥିଲା । ସମାଜର ସବୁ ଦଳିତ ଅବହେଳିତ ସମ୍ପ୍ରଦାୟର ଲୋକଙ୍କ ଉପରେ ସାମ୍ବିଧାନିକ ସୁବିଧା ଆଶାନୁରୂପ ଉପକାର କରି ପାରିନଥିଲେ ହେଁ ଏହି ସମ୍ପ୍ରଦାୟର ଲୋକଙ୍କ ମନରେ ଏକ ଚେତନା ସୃଷ୍ଟି କରିଛି ଏବଂ ଆଶା ଭରସା ଆଣି ପାରିଛି । ମାତ୍ର ସମାଜର ଆଉ ଏକ ବୃହତ ସମ୍ପ୍ରଦାୟ, ପଛୁଆବର୍ଗ ପାଇଁ ସ୍ୱତନ୍ତ୍ର ସୁବିଧା ଦେବାର ସାମ୍ବିଧାନିକ ନିର୍ଦ୍ଦେଶ ଥିଲେ ସୁଦ୍ଧା ଉଚ୍ଚ ବର୍ଗର ଅଭିସନ୍ଧିପୂର୍ଣ୍ଣ ରାଜନୀତି ଯୋଗୁଁ ଏହାକୁ କାର୍ଯ୍ୟକାରୀ କରାଯାଇ ନଥିଲା । ରାଜନୈତିକ ପରିସ୍ଥିତିର ତାଡନାରେ ହେଉ ବା ଆନ୍ତରିକ ଦରଦ ଯୋଗୁଁ ହେଉ

ଭାରତରେ ନିର୍ମଳ ଚରିତ୍ର, ମାନବବାଦୀ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଶୀତଳ ପ୍ରକୋଷ୍ଠରେ ଥିବା ମଣ୍ଡଳ କମିସନ ରିପୋର୍ଟକୁ କାର୍ଯ୍ୟକାରୀ କରି ଅଗଣତି ପଛୁଆବର୍ଗଙ୍କ ପ୍ରାଣରେ ନୂତନ ଆଶା ଉଦ୍ଦୀପନା ସୃଷ୍ଟି କଲେ ଏବଂ ଏହା ଦେଶରେ ସାମ୍ୟ ପ୍ରତିଷ୍ଠାର ଉଦ୍ୟମକୁ ବହୁ ପରିମାଣରେ ପ୍ରୋତ୍ସାହିତ କଲା । ସମତାର ସଜ୍ଞା ଓ ରୂପରେଖ ଓ ତାର ରୂପାୟନ ପଦ୍ଧତି ସମ୍ବନ୍ଧରେ ସମ୍ପୂର୍ଣ୍ଣ ମତୈକ୍ୟ ନଥିଲେ ମଧ୍ୟ ବାମପନ୍ଥୀ ଦଳଗୁଡ଼ିକ ପ୍ରଗତିଶୀଳ ଅଣବାମପନ୍ଥୀ ସମାଜବାଦୀ ଜନତା ଦଳ ଓ ଅନ୍ୟାନ୍ୟ ଦଳମାନଙ୍କ ସହ ରାଜନୈତିକ ସହଯୋଗ ସ୍ଥାପନ କରି ଚାଲିଲେ । ଏହା ଯେ ଭାରତର ଦକ୍ଷିଣପନ୍ଥୀ ଶକ୍ତି ଓ ଦୁର୍ନୀତିଗ୍ରସ୍ତ କ୍ଷୟିଷ୍ଣୁ ଦଳର ପ୍ରଭାବକୁ ସଫଳତାର ସହ ପ୍ରତିରୋଧ କରିପାରିବ, ଏ ଆଶା ସଂଚରି ଯାଇଥିଲା ଭାରତରେ ସମସ୍ତ ସାମ୍ୟବାଦୀ ଓ ସମାଜବାଦୀଙ୍କ ପ୍ରାଣରେ । ଦେଶର ରାଜନୈତିକ ଓ ସାମାଜିକ ଦୃଶ୍ୟପଟ୍ଟର ଏହି ପରିବର୍ତ୍ତନ ଲକ୍ଷ୍ମଣବାବୁଙ୍କ ଭାଙ୍ଗିଯାଇଥିବା ମନକୁ କିଛି ପରିମାଣରେ ସଜାଡ଼ି ଦେଇଥିଲା ।

ବୟସାଧିକ୍ୟ ଯୋଗୁଁ ଦେହ ବାରମ୍ବାର ଅସୁସ୍ଥ ହେଉଥାଏ ଲକ୍ଷ୍ମଣବାବୁଙ୍କର । ଆରୋଗ୍ୟଲାଭ ପାଇଁ ଆସନ୍ତି ରାଜଧାନୀକୁ ପୁଅ ପାଖକୁ । ଜୋଇଁ ସହଦେବ ବାବୁଙ୍କ ବସା ରାଜଧାନୀର ଏକ ଖୋଲା ଅଞ୍ଚଳରେ । ଘରର ବାଲ୍‌କୋନିରେ ବସି ପ୍ରଶାନ୍ତ ସୁନୀଳ ଆକାଶ ଓ ନିକଟସ୍ଥ ଏରୋଡ୍ରମ ଏବଂ ରେଳଲାଇନକୁ ଚାହିଁ ହୁଏ । ଅପେକ୍ଷାକୃତ ନିରୋଳା ଯାଗାରେ ମୁକ୍ତ ପବନ ସେବନ କରି ହାତରେ ବହି କି ପତ୍ରିକାଟେ ଧରି ଘଣ୍ଟା ଘଣ୍ଟା ଧରି ପଢ଼ି ଚାଲନ୍ତି ଲକ୍ଷ୍ମଣବାବୁ । ସମଭାବାପନ୍ନ ଜୋଇଁ ସହଦେବ ବାବୁଙ୍କ ସହିତ ସାଂପ୍ରତିକ ସମସ୍ୟା ସଂକ୍ରାନ୍ତରେ ଆଲୋଚନା କରି ସେ ଖୁବ୍ ଆନନ୍ଦଲାଭ କରନ୍ତି । ଝିଅ ସସ୍ମିତାକୁ ସେ ଖୁବ୍ ଭଲ ପାଆନ୍ତି । ସସ୍ମିତା ତାଙ୍କର ସେବା ଶୁଶ୍ରୁଷା ପ୍ରତି ଅତିମାତ୍ରାରେ ଯତ୍ନଶୀଳା, ତେଣୁ ଲକ୍ଷ୍ମଣବାବୁଙ୍କର ବେଶ୍ ଆଗ୍ରହ ଥାଏ ଝିଅ ପାଖରେ କିଛି ଦିନ କଟାଇବାକୁ ।

ଥରେ ଲକ୍ଷ୍ମଣବାବୁ ବାଲ୍‌କୋନିରେ ବସି ଏରୋଡ୍ରମକୁ ଚାହିଁ କ'ଣ ଭାବୁଥାନ୍ତି । କେଉଁ ଅନାଗତ କାଳ ଓ ଅଜଣା ରାଇଜର କଥା, ମୁହଁରେ ବିଷାଦଭରା ଦାର୍ଶନିକର ଭାବ । ସହଦେବ ବାବୁ ଶ୍ୱଶୁରଙ୍କ ଚିନ୍ତିତ ମନରେ ପରିବର୍ତ୍ତନ ଆଣିବା ପାଇଁ କଥାବାର୍ତ୍ତା ଆରମ୍ଭ କରିଦେଲେ "ବାପା ଆପଣ ତ ସାମ୍ୟବାଦରେ ବିଶ୍ୱାସ କରନ୍ତି । ସାମ୍ୟବାଦୀ ଆନ୍ଦୋଳନରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଭାଗ ନେଇଛନ୍ତି । ଏ ଆନ୍ଦୋଳନ ଓ ଗାନ୍ଧୀଜୀଙ୍କ ଅହିଂସା ଆନ୍ଦୋଳନ ମଧ୍ୟରେ କିଛି ପାର୍ଥକ୍ୟ ଉପଲବ୍ଧି କରିଛନ୍ତି କି ?"

ଲକ୍ଷ୍ମଣବାବୁଙ୍କ ମନୋଭାବ ସମ୍ପୂର୍ଣ୍ଣ ବଦଳିଗଲା । ଆନନ୍ଦର ସହ ଉତ୍ତର ଦେଲେ "ସବୁ ଆନ୍ଦୋଳନର ଲକ୍ଷ୍ୟ ତ ଅନ୍ୟାୟର ପ୍ରତିରୋଧ କରିବା ଓ ସମାଜର ସଂସ୍କାର ଆଣିବା । ଅବସ୍ଥା ଓ ଦର୍ଶନ ଭେଦରେ ଆନ୍ଦୋଳନର ପଦ୍ଧତି ବିଭିନ୍ନ ରୂପ ନେଇଥାଏ । ଗାନ୍ଧିଜୀ ହିଂସାକୁ ସମ୍ପୂର୍ଣ୍ଣ ବର୍ଜନ କରିଛନ୍ତି । ତାଙ୍କ ମତରେ ଲକ୍ଷ୍ୟ ଓ ସାଧନ ଉଭୟ ଔଚିତ୍ୟପୂର୍ଣ୍ଣ ହେବା ବାଞ୍ଛନୀୟ । ସାମ୍ୟବାଦୀମାନେ ଅନ୍ତିମ ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ଉପାୟ ଅବଲମ୍ବନ କରିଥାନ୍ତି । ଏତିକି ପ୍ରଭେଦ । ତେବେ

ଅଯଥା ହିଂସାର ଆଶ୍ରୟ ନିଅନ୍ତି ନାହିଁ ।''

'ବାପା ଆପଣଙ୍କ ଆନ୍ଦୋଳନକାରୀ ଜୀବନର ସ୍ମରଣୀୟ ଘଟଣା କୁହନ୍ତୁ । ମଣିଷର ହୃଦୟ ପରିବର୍ତ୍ତନ ପାଇଁ ଆପଣମାନେ କିଛି କରିଛନ୍ତି ?' ଗାନ୍ଧିଜୀଙ୍କୁ ଭକ୍ତି କରୁଥିବା ଜୋଇଁ ପଚାରିଲେ । ଲକ୍ଷ୍ମଣବାବୁ ଟିକିଏ ଭାବି ଆରମ୍ଭ କଲେ ''ଶୁଣ ଅତୀତ ଆନ୍ଦୋଳନର କେତୋଟି ସ୍ମରଣୀୟ ଘଟଣା, ଏଥିରୁ ତୁମେ ତୁମ ପ୍ରଶ୍ନର ଉତ୍ତର ପାଇଯିବ'' ବର୍ଣ୍ଣନା କରି ଚାଲିଲେ ଘଟଣାବଳୀ-

''ଦିନକର ଘଟଣା । ବାଲେଶ୍ୱର ନାରୀସେବା ସଦନରେ ଲୋକାରଣ୍ୟ । ବିଭିନ୍ନ ଗ୍ରାମରୁ ଶହ ଶହ ନାରୀ ଆସି ସମବେତ ହୋଇଛନ୍ତି ନାରୀସ୍ୱାଧୀନତା ଓ ଆତ୍ମମର୍ଯ୍ୟାଦାର ଜୟଗାନ କରି । ହାତରେ ଦାଆ ହାତୁଡି ସଙ୍କେତ ଥିବା ଲାଲ୍ ପତାକା, ''ନାରୀ ନିର୍ଯାତନା ବନ୍ଦ ହେଉ'', ''ମହାଜନି ଅତ୍ୟାଚାର ବନ୍ଦ ହେଉ'', ''ପୋଲିସ ଯଦି ନହୁଏ ସାହା, ଦଣ୍ଡଦେବୁ ଆମେ ଦୁର୍ଗା ମାଆ'' ନାରୀ କଣ୍ଠର ତୀକ୍ଷ୍ଣ ଫୁତ୍କାରରେ କମ୍ପି ଉଠୁଛି ନାରୀ ସଦନ ଓ ତାର ଚତୁର୍ପାର୍ଶ୍ୱ । ମୋଟା ଖଦଡ ଧୋତି ପିନ୍ଧା ମଧ୍ୟ ବୟସର ହୃଷ୍ଟପୁଷ୍ଟ ଚ୍ୟାପଟିଆ ଲୋକଟିଏ ପହଞ୍ଚିଗଲେ, ନାରୀ ସେବା ସଦନରେ । ଉଚ୍ଛ୍ୱସିତ ଶତ କଣ୍ଠରୁ ନିନାଦିତ ହେଲା, ''ଲକ୍ଷ୍ମଣବାବୁ ଜିନ୍ଦାବାଦ'', ''ଶୈଳେନ୍ଦ୍ର ବାବୁ ଜିନ୍ଦାବାଦ'', ''ନାରୀ ଜାତିର ସମ୍ମାନ ରକ୍ଷକ ସମ୍ମାନ ରଖୁ'', 'ମହାଜନ ଅତ୍ୟାଚାର ବନ୍ଦ ହେଉ, ବନ୍ଦ ହେଉ' ମହାଜନ ସୁଲଭ ବେହେରାଙ୍କୁ ଅପମାନିତ ଓ ଆଘାତ କରିଥିବା ଦୋଷରେ ଅଭିଯୁକ୍ତ ବିପ୍ଳବୀ ଶୈଳେନ୍ଦ୍ର ବାବୁ ଜାମିନ୍‌ରେ ଅଛନ୍ତି କେତେଦିନ ହେଲା । ଆଜି ମାନହାନି ଓ ଆଘାତ ମକଦ୍ଦମାର ବିଚାର । ବାଲେଶ୍ୱର ଜଜ୍ କୋର୍ଟରେ ବିଚାର ହେବ । ମହାଜନ ସୁଲଭ ବେହେରାଙ୍କ ତରଫରୁ ବାଲୋଶ୍ୱରର ନାମଜାଦା ଓକିଲ ହେମଚାନ୍ଦ ମକଦ୍ଦମା ଲଢୁଛନ୍ତି । ଶୈଳେନ୍ଦ୍ର ବାବୁଙ୍କୁ ସାହାଯ୍ୟ କରୁଛନ୍ତି ଜନୈକ ଆଦର୍ଶବାଦୀ ତରୁଣ ଓକିଲ, ବିନା ଫି ରେ । ବାଦୀ ଓକିଲଙ୍କ ଜେରାର ପ୍ରତ୍ୟୁତ୍ତର ନିଜେ ଶୈଳେନ୍ଦ୍ର ବାବୁ ଦେବେ ବୋଲି ଠିକ୍ କରିଛନ୍ତି । ଆମକୁ ସମର୍ଥନ ଜଣାଇ ଦୂର ଦୂରାନ୍ତ ନିପଟ ମଫସଲରୁ ଆସଛନ୍ତି ଶହ ଶହ ନାରୀ, ଯେଉଁମାନଙ୍କ ଭିତରୁ କେତେକ ସୁଲଭ ବେହେରାଙ୍କ ଅତ୍ୟାଚାରର ଶିକାର ହୋଇଛନ୍ତି । ଆବଶ୍ୟକ ହେଲେ ସେମାନେ ବୟାନ ଦେବେ ଜଜ୍ କୋର୍ଟରେ । ମହାଜନଙ୍କ କୁକର୍ମର ଜୀବନ୍ତ ପ୍ରମାଣ ଏହାଠାରୁ ଅଧିକ କ'ଣ ହୋଇପାରେ ? ବୀରଦର୍ପରେ ସ୍ମିତ ହସ ହସି ପହଞ୍ଚିଗଲେ ଶୈଳେନ୍ଦ୍ର ବାବୁ । ଭାଗଚାଷୀ ଆନ୍ଦୋଳନର ନିର୍ଭୀକ ଜନପ୍ରିୟ ନେତା, ଶୈଳେନ୍ଦ୍ରବାବୁ । ସଂଗ୍ରାମୀ ଜୀବନ ଆରମ୍ଭ କରିଥିଲେ ଗାନ୍ଧୀ, ସୁବାସ ବୋଷଙ୍କ ଆହ୍ୱାନରେ । ଗାନ୍ଧୀ ଓ ନେତାଜୀଙ୍କ ଅନ୍ତେ କଂଗ୍ରେସର ଅଧଃପତନେ ଲକ୍ଷ୍ୟ କରି ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଛନ୍ତି । ତେବେ ଗାନ୍ଧୀଯୁଗର ସତ୍ତକ ଖଦଡ ଧୋତି ପିନ୍ଧିବା ଅଭ୍ୟାସ ଜଳାଞ୍ଜଳି ଦେଇ ନାହାନ୍ତି । ଏହା ତାଙ୍କ ମତରେ ସ୍ୱଦେଶ ପ୍ରେମର ଶ୍ରେଷ୍ଠ ପ୍ରତୀକ ।

୧୦-୩୦ରେ କୋର୍ଟରେ ହାଜରେ ହେବାକୁ ପଡିବ । ନାରୀସେବା ସଦନରୁ ଧାଡି ବାନ୍ଧି ଚାଲିଛନ୍ତି ଶହ ଶହ ନାରୀପୁରୁଷ, ଆଗରେ ମୁଁ ଓ ଶୈଳେନ୍ଦ୍ର ବାବୁ । ପଛେ ପଛେ କେତେଜଣ ଯୁବତୀ, ମନେହୁଏ କଲେଜ ଛାତ୍ରୀ, ସୁଶିକ୍ଷିତା, ସମାଜ ସଂସ୍କାର ପାଇଁ ଆଗ୍ରହୀ । ଜଜ୍‌କୋର୍ଟ ପରିସରରେ

ପ୍ରବେଶଦ୍ୱାରଠାରେ ଆମ ଉଚ୍ଚିତରେ ପଟୁଆରର ସ୍ଲୋଗାନ ବନ୍ଦ ହୋଇଗଲା । ମୁଣ୍ଡ ନୁଆଁଇ ଅଭିବାଦନ ଜଣାଇଲେ ଜଜ୍ ସାହେବଙ୍କୁ ଅଭିଯାତ୍ରୀ ଦଳ । ନୀରବରେ ଦଣ୍ଡାୟମାନ ହୋଇ ରହିଲେ, ମାନ୍ୟବର ଜିଲ୍ଲାଜଜଙ୍କ ରାୟ ଶୁଣିବା ପାଇଁ ଉତ୍ସୁକ ମନରେ । ବାଦୀ ପକ୍ଷର ଓକିଲଙ୍କୁ ଜବାବ ସୁଆଲ ଆରମ୍ଭ କରିବାକୁ ଇଙ୍ଗିତ ଦେଲେ ଜଜ୍ ସାହେବ । ପ୍ରଖ୍ୟାତ ଓକିଲ ହେମଚାନ୍ଦ ଆରମ୍ଭ କଲେ : "My lord, ବାଦୀ ମହାଜନ ସୁଲଭ ବେହେରା ସୋରୋର ସବରେଜେଷ୍ଟ୍ରୀ ଅଫିସରୁ ଫେରୁଥିଲା ବେଳେ, ଶୈଳେନ୍ଦ୍ର ବାବୁଙ୍କ ଉସ୍କାଣିରେ କେତେଜଣ ବୟସ୍କ ନାରୀ, ସୁଲଭ ବାବୁଙ୍କୁ ଘେରିଗଲେ ଏବଂ ସେମାନଙ୍କ ମଧ୍ୟରୁ ଚାରିପାଞ୍ଚ ଜଣ ତାଙ୍କୁ କାବୁ କରି ନେଇ ତାଙ୍କର ଚୁଳକୁ କାଟି ତାଙ୍କୁ ସାତବେଣିଆ କରି ସୋରୋ ଥାନା ପର୍ଯ୍ୟନ୍ତ ଯାଇଥିବା ପ୍ରଧାନ ରାସ୍ତାରେ ତାଙ୍କ ସହ ଚାଲିବାକୁ ବାଧ୍ୟ କଲେ । ନାରୀ ଓ ସେମାନଙ୍କ ସମର୍ଥକଙ୍କ ସଂଖ୍ୟା ବହୁତ ଥିବାରୁ ସୁଲଭ ବାବୁ ସେମାନଙ୍କ ଘେରରୁ ବାହାରି ଯାଇ ପାରିଲେ ନାହିଁ । ବଳପ୍ରୟୋଗ କଲେ ଜୀବନ ହରେଇବାକୁ ପଡିବ ବୋଲି ମଧ୍ୟ ଧମକ ଦେଲେ ।

My lord, ସୁଲଭ ବେହେରା ସୋରୋ ଅଞ୍ଚଳର ଜଣେ ଧନୀମାନୀ ବ୍ୟକ୍ତି । ମହାଜନୀ କାରବାର ଦ୍ୱାରା ବହୁ ଲୋକଙ୍କର ଉପକାର କରନ୍ତି । ଏପରି ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ସାତବେଣିଆ କରି ଜବରଦସ୍ତ ରାସ୍ତାରେ ଚଲାଇ ନେବା ଦ୍ୱାରା ଏହି ଲୋକମାନେ, ବିଶେଷତଃ ସେମାନଙ୍କର ରିଙ୍ଗ ଲିଡର ଶୈଳେନ୍ଦ୍ର ବାବୁ ଆଇନ ଅମାନ୍ୟ କରିବା ସଙ୍ଗେ ସଙ୍ଗେ ସୁଲଭ ବେହେରାଙ୍କ ମାନହାନି କରିଛନ୍ତି ଏବଂ ତାଙ୍କୁ ଶାରୀରିକ ଓ ମାନସିକ ଆଘାତ ଦେଇଛନ୍ତି । ଏହା ନିଶ୍ଚିତ ଭାବେ ଏକ ଗୁରୁତର ଦଣ୍ଡନୀୟ ଅପରାଧ । ଏହି ଦୁଷ୍କର୍ମର ସାକ୍ଷୀ ଅଛନ୍ତି ସୋରୋ ଥାନାର କେତେକ ପୁଲିସ୍ କର୍ମଚାରୀ ଓ ଥାନା ଅଞ୍ଚଳର କେତେକ ଭଦ୍ରଲୋକ" । ଏତକ କହିସାରି ଓକିଲ ହେମଚାନ୍ଦ ବାବୁ ସାକ୍ଷୀମାନଙ୍କୁ ତାଙ୍କର ବକ୍ତବ୍ୟ ଦେବାକୁ ନିର୍ଦ୍ଦେଶ ଦେଲେ । କୋର୍ଟ ଇତିହାସରେ ଛିଡା ହୋଇଥିବା ରାଜସାକ୍ଷୀ ରୂପେ ଆନୀତ କେତୋଟି କନଷ୍ଟେବଲ୍ କହିବାକୁ ଆରମ୍ଭ କଲେ "ସାର୍ ଓକିଲ ବାବୁ ଯାହା କହିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ, ଏହି ଲୋକମାନେ ଥାନା ନିକଟରେ ଚିତ୍କାର କରି କହୁଥାନ୍ତି 'ନିଷ୍କର୍ମା ପୁଲିସ୍ ତୁମେ ଅତ୍ୟାଚାରୀ ମହାଜନ ସୁଲଭ ବେହେରାର କିଛି କରି ପାରିଲ ନାହିଁ, ଆସ, ଦେଖ, ଆମେ ତାଙ୍କୁ କି ଦଣ୍ଡ ଦେଇଛୁ । ନାରୀମାନଙ୍କ ଅଗ୍ରଭାଗରେ ଥିଲେ ଖଦଡିପିନ୍ଧା ଶୈଳେନ୍ଦ୍ରବାବୁ" । ବାଦୀ ପକ୍ଷର ସାକ୍ଷୀମାନଙ୍କର ବୟାନ ପରେ ବିଚାରପତି ପ୍ରତିବାଦୀ ଶୈଳେନ୍ଦ୍ର ବାବୁଙ୍କୁ ତାଙ୍କର ସଫେଇ ଦେବାକୁ ଇଙ୍ଗିତ ଦେଲେ ।

ଶୈଳେନ୍ଦ୍ର ବାବୁ ଆରମ୍ଭ କଲେ "ମାନ୍ୟବର ବିଚାରପତି ମହାଶୟ, ବାଦୀ ପକ୍ଷର ଓକିଲ ଯାହା ସବୁ କହିଗଲେ, ତାହା ସତ୍ୟ । ମାତ୍ର ଯେଉଁ ପରିସ୍ଥିତିରେ ଏହି ନିରୀହ ମହିଳାମାନଙ୍କୁ ଏପରି ଆଇନ୍ ବହିର୍ଭୂତ କାର୍ଯ୍ୟ କରିବାକୁ ପଡିଲା ତାହା ଦୟାର ସହ ବିଚାର କରନ୍ତୁ । ମହାଜନ ସୁଲଭ ବେହେରା ସ୍ତ୍ରୀଲୋକମାନଙ୍କର ଗହଣା ଗଣ୍ଠି ବନ୍ଧା ରଖି ଓ ସେମାନଙ୍କର ଜମି ବନ୍ଧକ ରଖି ଉଚ୍ଚ ସୁଧରେ ଋଣ ଦିଅନ୍ତି । ବର୍ଷକୁ ବର୍ଷ ସୁଧ ଦେଇ ନପାରିଲେ ସେମାନଙ୍କ ସ୍ୱଳ୍ପ ଅସ୍ଥାବର ସମ୍ପତ୍ତି ଲୁଣ୍ଠନ କରି

ନିଅଚ୍ଛି । ଋଣ ଗ୍ରହୀତାଙ୍କ ସୁନ୍ଦର ଝିଅ ବୋହୂଙ୍କୁ ଛଳନାରେ ନିଜ ଘରକୁ ଡାକି ସେମାନଙ୍କର ଇଜ୍ଜତ ହରଣ କରନ୍ତି । ଏ ସମ୍ପର୍କରେ ପୁଲିସ ଥାନାରେ ଏତାଲା ଦେଇଥିଲେ ମଧ୍ୟ କିଛି ପଦକ୍ଷେପ ନିଆ ଯାଉ ନାହିଁ । ଆତ୍ମସମ୍ମାନ ଓ ନାରୀ ଜାତିର ମର୍ଯ୍ୟାଦା ରକ୍ଷା ପାଇଁ ମୁଁ ଏହି ମହିଳାମାନଙ୍କୁ ନିଜ ଶକ୍ତିରେ ଯାହା କରିପାରିବେ ତାହା କରିବାକୁ ପରାମର୍ଶ ଦେଇଥିଲି । ସେମାନେ ସଂଘବଦ୍ଧ ଭାବେ ବିଚାର ବିମର୍ଷ କରି ଅତ୍ୟାଚାରୀ ମହାଜନକୁ ସାଚେବେଣ୍ଡିଆ କରି ଜନସମାଜରେ ନିନ୍ଦିତ କରିବାକୁ ଆଗେଇ ଆସିଲେ'' ଏତିକି କହି ଶୈଳେନ୍ଦ୍ର ବାବୁ ଚୁପ୍ ରହିଲେ । ସାଥୀ ମହିଳାମାନଙ୍କୁ କଟାକ୍ଷରେ ଇଙ୍ଗିତ ଦେଲେ ନିଜ ନିଜର ବୟାନ ଦେବାକୁ ।

ମହିଳାମାନେ ସମସ୍ୱରରେ କହି ଉଠିଲେ 'ସାଥୀ ଶୈଳେନ୍ଦ୍ର ବାବୁ ଯାହା କହିଲେ ତାହା ସତ୍ୟ, ଆମ୍ଭେମାନେ ମହାଜନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ଏବଂ ପୁଲିସଙ୍କ ଉଦାସୀନତାରେ କ୍ଷୁବ୍ଧ ହୋଇ ଏହା କରିଛୁଁ । ଏଥିପାଇଁ ଆମେ ସମସ୍ତେ ଦଣ୍ଡ ଭୋଗିବାକୁ ପ୍ରସ୍ତୁତ ଅଛୁଁ । ଶୈଳେନ୍ଦ୍ର ବାବୁ ଜଣେ ସ୍ୱାଧୀନତା ସଂଗ୍ରାମୀ । ସେ ଅନ୍ୟାୟ ଅତ୍ୟାଚାରର ଘୋର ବିରୋଧୀ । ସେ ସମାଜ ସଂସ୍କାରକ । ସେ ଆମର ଗୁରୁ, ଆମର ନେତା, । ଯଦି କିଛି ଦୋଷ ଥାଏ ତାହା ଆମର । ତାଙ୍କୁ କାହିଁକି ମିଛରେ ଅଭିଯୁକ୍ତ କରାଯାଇଛି ?''

ମାନ୍ୟବର ବିଚାରପତି, ବାଦୀ ପ୍ରତିବାଦୀ ତରଫରୁ ଦାଖଲ ହୋଇଥିବା ସମସ୍ତ କାଗଜପତ୍ର ତନ୍ନତନ୍ନ କରି ପଢ଼ିଲେ । ଅଭିଯୋଗକାରୀଙ୍କ ଅଭିଯୋଗ ସତ୍ୟ ହେଲେହେଁ ସେ ଯେ ମିଥ୍ୟା ଓ ପ୍ରତାରଣାର ଆଶ୍ରୟ ନେଇ ଗରିବ ଦୁଃଖୀଙ୍କ ସର୍ବସ୍ୱ ହରଣ କରୁଥିଲେ ଏବଂ ଗରିବ ସ୍ତ୍ରୀଲୋକ ମାନଙ୍କ ପ୍ରତି ଅସଦ୍ ବ୍ୟବହାର କରୁଥିଲେ ତାହା ଲୋକମାନଙ୍କ ବିଭିନ୍ନ ସମୟର ଗୁହାରିରୁ ହୃଦବୋଧ ହେଲା । ପୁଲିସ କିମ୍ବା ସରକାରୀ କର୍ତ୍ତୃପକ୍ଷ କୌଣସି ପ୍ରତିକାରମୂଳକ ପଦକ୍ଷେପ ନେଇଥିବାର ସୂଚନା ମିଳିଲା ନାହିଁ । ଅତ୍ୟାଚାରରେ ଅତିଷ୍ଠ ମହିଳାବୃନ୍ଦ ବାଧ୍ୟ ହୋଇ ମହାଜନଙ୍କୁ ଉଚିତ ଶିକ୍ଷା ଦେଇଛନ୍ତି ବୋଲି ବିଚାରପତି ଅନୁଭବ କଲେ । ମହିଳାମାନଙ୍କ ସ୍ୱତଃସ୍ଫୁର୍ତ୍ତ କ୍ରିୟାନୁଷ୍ଠାନରେ ଶୈଳେନ୍ଦ୍ରବାବୁଙ୍କ ଭୂମିକା ଅତି ଗୌଣ ବୋଲି ତାଙ୍କର ଧାରଣା ହେଲା । ତେବେ ତାଙ୍କଭଳି ଜଣେ ଖ୍ୟାତିସମ୍ପନ୍ନ ବ୍ୟକ୍ତିତ୍ୱ ଘଟଣାସ୍ଥଳରେ ଉପସ୍ଥିତ ରହି ନୀରବ ସମ୍ମତି ଦେଇଥିବାରୁ ଏକ ଟଙ୍କା ସାଙ୍କେତିକ ଜୋରିମାନା କରାଗଲା ବୋଲି ବିଚାରପତି ରାୟ ଦେବା ସଙ୍ଗେ ସଙ୍ଗେ ମହାଜନ ସୁଲଭ ବେହେରା ଭବିଷ୍ୟତରେ ଗରିବମାନଙ୍କୁ ଶୋଷଣ ନ କରିବାକୁ ସତର୍କ କରାଇଦେଲେ ।

ସମବେତ ଜନତା ବିଚାରପତିଙ୍କ ରାୟକୁ ଉଚ୍ଛ୍ୱସିତ ପ୍ରଶଂସା କଲେ । ଶୈଳେନ୍ଦ୍ର ବାବୁ ଗମ୍ଭୀର ସ୍ୱରରେ କହିଲେ ''ମୁଁ ଜୋରିମାନା ବଦଳରେ ନାରୀଜାତିର ଜାଗରଣ ପାଇଁ ଜେଲ ଯିବାକୁ ପ୍ରସ୍ତୁତ ଅଛି । ଜୋରିମାନା ଦେବାକୁ ମୋ ପାଖରେ ଅର୍ଥ ନାହିଁ'' ସମବେତ ଜନତା ସଂଗଠିତ ମହିଳାମାନଙ୍କ ସାହସିକ କାର୍ଯ୍ୟରେ ପ୍ରଭାବିତ ହୋଇ ଯାଇଥିଲେ । ଆମେ ଆପଣଙ୍କ ପାଇଁ ଅର୍ଥ ଦାନ କରୁଛୁ, ''ସତ୍ୟର ଜୟ ହେଉ । ନାରୀମୁକ୍ତି ଆନ୍ଦୋଳନ ପ୍ରସାର ହେଉ'' କହିଉଠିଲେ ସମବେତ ଜନତା ।

ସଙ୍ଗେ ସଙ୍ଗେ ଫୁଲ ପରି ବିଛୁରି ପଡିଲା ଜନତାର ଦାନ । ବିଚାରପତିଙ୍କ ନିର୍ଦ୍ଦେଶରେ ଗୋଟେଇ ନିଆଗଲା ଟଙ୍କା ଗୁଡିକୁ । ପ୍ରାୟ ୫୦୦ ଟଙ୍କା । ଜନତାର ଅବଦାନରୁ ବିଚାରପତି ସାଙ୍କେତିକ ଜୋରିମାନା ଏକ ଟଙ୍କା କାଟି ରଖି ବାକିତକ ବଢାଇଦେଲେ ଶୈଳେନ୍ଦ୍ର ବାବୁଙ୍କ ହାତକୁ । ଶୈଳେନ୍ଦ୍ରବାବୁ ଏହା ଗ୍ରହଣ କରି ନାରୀ ସେବା ସଦନର ବିକାଶ ପାଇଁ ବିଚାରପତିଙ୍କ ହାତରେ ଅର୍ପଣ କରିଦେଲେ । । 'ସାଧୁ ସାଧୁ ! ଧ୍ୱନି ଓ କରତାଳିରେ କମ୍ପି ଉଠିଲା ବିଚାରାଳୟର ପରିସର ।''

ସହଦେବ ବାବୁ ମନ୍ତ୍ରମୁଗ୍ଧ ପରି ଶୁଣିଯାଉଥିଲେ, ଜଣେକ ସଂଗ୍ରାମୀ ଜୀବନର ରୋମାଞ୍ଚକର ଅଲେଖା କାହାଣୀ । ଭାରତର ଆକାଶରୁ ଲିଭି ଗଲେଣି ମୁକ୍ତି ସଂଗ୍ରାମର ଉଜ୍ଜ୍ୱଳ ତାରକା, ସେମାନଙ୍କ ତ୍ୟାଗ ପୂତ ଉତ୍ସର୍ଗିତ ଜୀବନର ଲୋମହର୍ଷଣକାରୀ କାହାଣୀ ଆଜି ଅବିଶ୍ୱାସ୍ୟ ହୋଇଉଠିଛି । ରାଜନୀତିର ବାତାବରଣ ଯେଉଁଠି ସନ୍ଦେହ ଅବିଶ୍ୱାସ ପ୍ରତାରଣା ଆତ୍ମସ୍ୱାର୍ଥ ଓ କ୍ଷମତା ଲୋଭରେ କଳୁଷିତ ସେଠାରେ ତ୍ୟାଗୀ ସଂଗ୍ରାମୀର ଆଦର୍ଶ ଜୀବନ ଆରବକାହାଣୀ ପରି ପ୍ରତୀୟମାନ ହେବ ସିନା ! ମୁକ୍ତିର ସଂଗ୍ରାମ ଶେଷ ହୋଇନି, ସମାଜ ବିକାଶର ସାଧନା ଅନାବଶ୍ୟକ ହୋଇନି । ଆଦର୍ଶ ଜୀବନର କାହାଣୀ ତ ଦେବ ତ୍ୟାଗପୂତ କର୍ମର ପ୍ରେରଣା । ଆଜିକ ଲୋଇଁ ସହଦେବ ବାବୁ, ପକେଟରୁ ଛୋଟ କାଗଜ କଲମ କାଢ଼ି ଲେଖି ବସିଲେ ଘଟଣାଟିକୁ ସଂକ୍ଷେପରେ । ଜଣେ ଅନୁରକ୍ତ ଶ୍ରୋତା ପାଇଁ ବୃଦ୍ଧ ସଂଗ୍ରାମୀ ଲକ୍ଷ୍ମଣବାବୁ ଉତ୍ସାହିତ ହୋଇ ପଡିଲେ ବୋଧହୁଏ । ଜୀବନର ଗାଥା ଲୟେଇ ଚାଲିଲେ ।

''ସହଦେବ ବାବୁ, ସ୍ୱାଧୀନତାପ୍ରାପ୍ତିର ଠିକ୍ ପରବର୍ତ୍ତୀ କାଳରେ ଆମର ଜୀବନ ନିୟୋଜିତ ଥିଲା; ଭାଗଚାଷୀ ଆନ୍ଦୋଳନ ଓ ମହାଜନି ବିରୁଦ୍ଧ ଆନ୍ଦୋଳନରେ । ଜମିଦାର ଓ ମହାଜନଙ୍କ ଭଳି ଦେଶୀୟ ଶୋଷକମାନଙ୍କର ମୂଳୋତ୍ପାଟନ ନହେଲେ, ସାଧାରଣ ଲୋକମାନେ ସ୍ୱାଧୀନତାର ସୁଫଳ ପାଇ ପାରିବେ ନାହିଁ ବୋଲି ମୋର ବଦ୍ଧମୂଳ ଧାରଣା ଥିଲା । ତେଣୁ ସାଥୀମାନଙ୍କୁ ସାହଚର୍ଯ୍ୟରେ ସେ ଦିଗରେ ସଂଗଠିତ ଉଦ୍ୟମ ଚଳାଇ ଥିଲୁଁ ପଞ୍ଚଦଶକରେ । ଅନେକ ସୁଫଳ ମିଳିଛି, ଅନେକଙ୍କ ହୃଦୟରେ ଅପ୍ରତ୍ୟାଶିତ ପରିବର୍ତ୍ତନ ଆଣି ପାରିଛୁଁ ।

ଶଶୁରଙ୍କ ମୁଖରୁ 'ହୃଦୟ ପରିବର୍ତ୍ତନ' କଥା ଶୁଣି କୌତୁହଳୀ ହୋଇ ପଡିଲେ ସହଦେବାବୁ । ''କାହା ହୃଦୟ ପରିବର୍ତ୍ତନ କରିଥିଲେ କୁହନ୍ତୁ ତ ବାପା'' ଅନୁରୋଧ କଲେ । ଲକ୍ଷ୍ମଣବାବୁ ଆରମ୍ଭ କଲେ ''ବ୍ରଜମୋହନ ସାହୁ ନାମକ ଆଉ ଜଣେ ଅତ୍ୟାଚାରୀ ମହାଜନ ଥିଲେ ନୀଳଗିରି ଅଞ୍ଚଳରେ । ଉଚ ସୁଧ ମିଥ୍ୟା ମକଦ୍ଦମା ଦ୍ୱାରା ଗରିବର ଜମି ଦଖଲ ଆଦି ତାଙ୍କର କାର୍ଯ୍ୟରେ କ୍ଷୁବ୍ଧ ହୋଇ ଏକଦା ଟିରୋଟ ସମୟରେ ନୀଳଗିରିର କେତେକ ଗ୍ରାମର ପ୍ରଜାମାନେ ମେଳି ବାନ୍ଧି ତାଙ୍କର ଗଚ୍ଛିତ ଧାନ ସବୁ ଖମାରରୁ ବୋହି ଆଣିଲେ । ଅଭାବୀ ଲୋକଙ୍କ ଭିତରେ ଏ ଧାନ ବାଣ୍ଟି ଦିଆଯାଇଥିଲା । ଲୋକମାନେ ଅବଶ୍ୟ ଶୈଳେନ୍ଦ୍ର ଓ ମୋ ନେତୃତ୍ୱରେ ଏକାର୍ଯ୍ୟ କରିଥିଲେ । ଦିନେ ସୁଯୋଗ ଉଣ୍ଡି ଏକୁଟିଆ ଗୋଟିଏ ଗାଁକୁ ଯାଉଥିଲା ବେଳେ ବ୍ରଜମୋହନଙ୍କ ଗୁଣ୍ଡା ଶୈଳେନ୍ଦ୍ର ବାବୁଙ୍କୁ ପିଟି ବନ୍ଧ ତଳେ ପକାଇ ଦେଲେ । ଭାଗ୍ୟବଳରେ ସେ ଜୀବନ ବଞ୍ଚାଇ ପାରିଥିଲେ । ଆମ ଲୋକେ ଏ ସମ୍ବାଦ ପାଇ ବ୍ରଜମୋହନଙ୍କ ଘରେ

ଚଢ଼ାଉ କରିବା ସଙ୍ଗେ ସଙ୍ଗେ ତାଙ୍କ ବିରୁଦ୍ଧରେ ଫୌଜଦାରୀ କେସ କଲେ । କ୍ଷତବିକ୍ଷତ ତାଙ୍କର ଶରୀର ଦେଖି ଏବଂ ବହୁଲୋକଙ୍କ ସାକ୍ଷ୍ୟ ବଳରେ ପୁଲିସ ବ୍ରଜମୋହନ ସାହୁଙ୍କୁ ଗ୍ରେପ୍ତାର କଲେ । ଆମ୍ଭମାନଙ୍କ ସଂଗଠିତ ଧମକ ଯୋଗୁଁ ଏବଂ ଲୋକେ ମହାଜନଙ୍କୁ ଆନ୍ତରିକ ଘୃଣା କରୁଥିବାରୁ ପ୍ରାଥମିକ ବିଚାର ପରେ କେହି ତାଙ୍କୁ କୋର୍ଟରୁ ଜାମିନ୍‌ରେ ଆଣିବାକୁ ବାହାରିଲେ ନାହିଁ । ପରିଣାମରେ ବ୍ରଜମୋହନଙ୍କୁ ଜେଲ ହାଜତକୁ ଯିବାକୁ ପଡ଼ିଥାଏ । ମହାନ୍ ଧନୀ ସମ୍ଭ୍ରାନ୍ତ ବ୍ରଜମୋହନ କାନ୍ଦ କାନ୍ଦ ହୋଇପଡ଼ିଲେ । ଷାଠିଏ ବର୍ଷ ବୟସ୍କ ବ୍ରଜମୋହନଙ୍କ ବିକଳ ଅବସ୍ଥା ଦେଖି ଆମ ହୃଦୟ ତରଳି ଗଲା । ଆମ ଜାମିନ୍‌ରେ ବ୍ରଜମୋହନ ବାବୁଙ୍କୁ ଛାଡ଼ିଦେବାକୁ ମୁଁ ସମ୍ପୃକ୍ତ ବିଚାରପତିଙ୍କୁ ଅନୁରୋଧ କଲି । ହାକିମ ଓ ବ୍ରଜମୋହନଙ୍କ ସମେତ ସମସ୍ତ ସମବେତ ଜନତା ସ୍ତମ୍ଭିତ । ଶତ୍ରୁର ଜାମିନ୍‌ରେ ଦୋଷୀ ପାଉଛି ସାମୟିକ ମୁକ୍ତି ।

ସମ୍ପୂର୍ଣ୍ଣ ଅଭିଭୂତ ବ୍ରଜମୋହନଙ୍କ ଜୀବନର ଧାରା ବଦଳି ଯାଇଥିଲା ଏହି ଘଟଣା ପରେ ପରେ । ଅନ୍ୟାୟରେ ହସ୍ତଗତ କରିଥିବା ସବୁ ଜମି ଗରିବ ଚାଷୀଙ୍କୁ ଫେରାଇ ଦେଇଥିଲେ । ନିଜ ଶକ୍ତି ମୁତାବକ ଯାହା କିଛି ଦେୟଦେଇ ଋଣ ଗ୍ରହୀତାମାନେ ସେମାନଙ୍କ ବନ୍ଧକ ଦ୍ରବ୍ୟ ଫେରାଇ ନେଇଥିଲେ । ବ୍ରଜମୋହନବାବୁ ସାମ୍ୟବାଦର ଦୀକ୍ଷା ନେଇ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ସଭ୍ୟ ହୋଇଗଲେ । ଆହରଣରୁ ବିତରଣ, ଶୋଷଣରୁ ସମ୍ମୋହନ, ବ୍ୟକ୍ତିବାଦରୁ ସମାଜବାଦ ଆଡ଼କୁ ତାଙ୍କ ଜୀବନର ଗତି ବଦଳି ଯାଇଥିଲା ।

ସମ୍ମୋହିତ ସହଦେବବାବୁ ଦୀର୍ଘଶ୍ୱାସ ପକାଇ ଭାବୁଥିଲେ "ଆମ ଦେଶରେ କ'ଣ ସେ ସୁଦିନ ଆଉ ଆସିବ ନାହିଁ । ନିଃସ୍ୱାର୍ଥପର ତ୍ୟାଗପୂତ ନେତୃତ୍ୱ ଓ ଆଦର୍ଶ ଭିତ୍ତିକ ସଂଗ୍ରାମର ଦିନ ଗୁଡ଼ିକ କେବେ ଲେଉଟିବ ?"

(ଛବିଶ)

'ଶତହସ୍ତ ସମାହାର ସହସ୍ରହସ୍ତ ସଂକିର'

(ଅଥର୍ବ ବେଦ)

(ଶତହସ୍ତରେ ସଂଗ୍ରହ କର, ସହସ୍ର ହସ୍ତରେ ବିତରଣ କର)

ବ୍ୟସ୍ତ ବିବ୍ରତ ପୁଅ ସୁରଜିତ୍, ଜୋଇଁ ସହଦେବ ଓ ଗଜାନନ ଗାଡ଼ି ନେଇ ବାହାନଗାରେ ପହଞ୍ଚିଲା ବେଳକୁ ମଧ୍ୟାହ୍ନ ହୋଇ ଯାଇଥିଲା । ଲକ୍ଷ୍ମଣବାବୁ ଏକ ସଂକଟମୟ ରୋଗରୁ ସାମାନ୍ୟ ଆରୋଗ୍ୟ ଲାଭ କରି ପ୍ରଶସ୍ତ ଟାଇଲ ଘରର ପ୍ରବେଶ କୋଠରୀର ଏକ ପୁରୁଣା ଖଟରେ ଶୋଇ ରହିଥିଲେ । ପୁଅ ଜୋଇଁ ଲକ୍ଷ୍ମଣ ବାବୁଙ୍କୁ ନିଦ୍ରିତାବସ୍ଥାରେ ଦେଖି କିଛି ସମୟ ଚୁପ୍ ଚାପ ଠିଆ ହୋଇରହିଲେ । ଏକ ଆହତ ସିଂହ ନିଜର ପ୍ରିୟ ଗୁହା ଭିତରେ ଶୋଇ ରହି ଅପହୃତ ଶକ୍ତି ଫେରି ପାଇବାକୁ ଚେଷ୍ଟା କଲା ଭଳି ଲକ୍ଷ୍ମଣ ବାବୁଙ୍କ ମୁଖମଣ୍ଡଳର ବେଦନା- କ୍ଲିଷ୍ଟ ଭଙ୍ଗୀ ଓ ଆୟାସ ସାଧ୍ୟ

ନିଃଶ୍ୱାସ ପ୍ରଶ୍ୱାସର ଯାତାୟତରୁ ଆଭାସ ମିଳୁଥାଏ । କିଛି ସମୟ ପରେ ଲକ୍ଷ୍ମଣ ବାବୁ ଙ୍କର ଲେଉଟେଇଲେ । ଅଧୀର ପୁଅ ସୁରଜିତ୍ ଲକ୍ଷ୍ମଣବାବୁଙ୍କ ଦେହରେ ହାତମାରି ପଚାରିଲେ, "ବାପା କମିତି ଅଛନ୍ତି ?" ଆମେ ସହଦେବ ବାବୁ, ଗଜାନନ ଓ ମୁଁ ଏବେ ଆସି ପହଞ୍ଚିଲୁ । ଦୁଇ ଜୋଇଁ ପାଦରେ ହାତମାରି ପ୍ରଣାମର ସୂଚନା ଦେଇ ଉତ୍କଣ୍ଠାର ସ୍ୱରରେ ସେହିଭଳି ପ୍ରଶ୍ନ ପଚାରିଲେ "ବାପା ଦେହ ଭଲ ଅଛିତ ?" ଲକ୍ଷ୍ମଣବାବୁ ନିଦରୁ ଉଠିଲା ବେଳର ସ୍ୱାଭାବିକ ଭାବ ପ୍ରକାଶ ପୂର୍ବକ କହିଚାଲିଲେ "ଆଁରେ କେତେବେଳେ ସବୁ ଆସିଲ, ମାଆ ନନ୍ଦିତା, ବାବୁଙ୍କୁ ଚାହା କରିଦିଏ, ମୋ ଚଷମାଟା କେଉଁଠି ରହିଲା ?" ପାଖ ଟେବୁଲ୍ ଉପରେ ଥିବା ଚଷମାଟା ବଢାଇ ଦେଲେ ସୁରଜିତ୍ ବାବୁ, ଚଷମାଟା ପିନ୍ଧି ଲକ୍ଷ୍ମଣ ବାବୁ ପୁଅ ଜୋଇଁମାନଙ୍କୁ ପରିଷ୍କାର ଭାବେ ଦେଖିବାକୁ ଚେଷ୍ଟା କରୁଥିଲେ । ପଞ୍ଚାଅଶୀ ବର୍ଷ ବୟସରେ ଲକ୍ଷ୍ମଣ ବାବୁଙ୍କ ଦୃଷ୍ଟିଶକ୍ତି ଅତିକ୍ଷୀଣ ହୋଇ ଯାଇଛି । ତଥାପି ମନର ବଳରେ ଏବଂ ଅଭ୍ୟାସ ବଶତଃ ସେହି ଶକ୍ତି ନେଇ ଚଷମା ବ୍ୟବହାର କରି ସହରରୁ ସହରକୁ ଯାଆସ କରନ୍ତି ଏବଂ ହାତରେ ପଡୁଥିବା ପତ୍ର ପତ୍ରିକା ପଢିଥାଆନ୍ତି । ବାମପନ୍ଥୀ ଚିନ୍ତାଧାରାର ଅନୁରକ୍ତ ବାମପନ୍ଥୀ ଆନ୍ଦୋଳନର ଜଣେ ସଚ୍ଚା ସକ୍ରିୟ କର୍ମୀ ଭାବରେ ତାଙ୍କର ସାମାଜିକ ସମସ୍ୟା ଓ ସାଂପ୍ରତିକ ଘଟଣା ପ୍ରତି ଆଗ୍ରହ ଅତି ତୀବ୍ର । ସମାଜ ସଚେତନତା ତାଙ୍କୁ ରାଜନୈତିକ ଓ ଅର୍ଥନୈତିକ ବିଷୟ ବସ୍ତୁ ପ୍ରତି ସର୍ବଦା ଆକୃଷ୍ଟ କରିଥାଏ ଏବଂ ସମାଜ ବିଜ୍ଞାନୀ ଜୋଇଁ ସହିତ ସେ ଏ ସବୁ ବିଷୟରେ ଉତ୍ସୁକତାର ସହ ଆଲୋଚନା କରିଥାନ୍ତି ।

ଲକ୍ଷ୍ମଣବାବୁ ଶୋଇବା ଅବସ୍ଥାରୁ ଉଠି ବସିଲେ, ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହେଉଥିବା ତଥା ପିନ୍ଧିଥିବା ଫତୁଆ ଭିତରୁ ତଳି ପେଟ ଉଠିବା ପଡିବାରୁ ଜଣା ପଡୁଥାଏ । ତାଙ୍କ ପାଖରେ ପୁଅ ଜୋଇଁ ତିନିହେଁ କିଛି ସମୟ ବସି ତାଙ୍କର ଆତ୍ମପ୍ରତ୍ୟୟ ଅତୁଟ ରଖିବା ପାଇଁ ସହାନୁଭୂତିପୂର୍ଣ୍ଣ ଉତ୍ସାହଦୀପ୍ତ କଥା କହିଚାଲିଥିଲେ । ଇତି ମଧ୍ୟରେ ମଧ୍ୟାହ୍ନ ଭୋଜନ ପ୍ରସ୍ତୁତ ହୋଇଯାଇଥିଲା । ସୁରଜିତ ବାବୁ ଓ ଅନ୍ୟମାନେ ମଧ୍ୟାହ୍ନ ଭୋଜନ ସାରି ଦୁଇ ଦିନର ଚିନ୍ତା ଓ କ୍ଳାନ୍ତି ଅପନୋଦନ ପାଇଁ କିଛି ସମୟ ବିଶ୍ରାମ କଲେ । ଲକ୍ଷ୍ମଣବାବୁ ରୋଗୀର ପଥ୍ୟ ଓ ଫଳମୂଳ ଖାଇ ଶୋଇ ପଡିଲେ । ମନରେ ତାଙ୍କର ଅଛି ଆନନ୍ଦର ଉଚ୍ଛ୍ୱାସ, ପୁଅ ବୋହୂ ଓ ଜୋଇଁ ଆସିଛନ୍ତି ।

ଅପରାହ୍ନ ପାଞ୍ଚଟା ଆସନ୍ନ ପ୍ରାୟ । ଆଷାଢର ଝିପି ଝିପି ବର୍ଷା ଘର ଚାରିପାଖ କିସମ କିସମ ଗଛର ପତ୍ର ଉପରେ ପଡି ଏକ ଅନିର୍ବଚନୀୟ ତାନ ସୃଷ୍ଟି କରୁଥାଏ । ଘରର କିଛି ଦୂରରେ ଧାନ କ୍ଷେତ । କେତେ ଦିନର ଲଗାଣ ବର୍ଷା । ଚାଷଜମି ମାଟିକୁ କର୍ଦ୍ଦମାକ୍ତ କରିଦେଇଛି । ଖାଲୁଆ ବିଲରେ ପାଣି ଜମିଛି । ପାଖ ଜମିରେ କାମ କରୁଥିବା ଚାଷୀର ପାଦଶବ୍ଦ, ଚବର ଚବର, ଘର ବାଡି ବଗିଚାରେ ବୁଲୁଥିବା ସହଦେବ ବାବୁଙ୍କ କାନରେ ପଡୁଛି । କେତେ ଯତ୍ନରେ ଅବସର ଜୀବନର ପ୍ରାରମ୍ଭରେ ଲକ୍ଷ୍ମଣବାବୁ ପ୍ରଶସ୍ତ ଏଇ ବାଡିରେ ବଗିଚା ସୃଷ୍ଟି କରିଛନ୍ତି, ଆମ୍ବ, ନଡିଆ, ପିଜୁଳି ଓ ଗୁଆ ଗଛ ଲଗାଇଛନ୍ତି, ଶ୍ରମ ଓ ଯତ୍ନର ସ୍ମାରକୀ ସ୍ୱରୂପ ତାଙ୍କର ଦାୟାଦମାନେ ଗଛର ଫଳ ଖାଇ ଶୀତଳ

ଛାୟାରେ ଗ୍ରୀଷ୍ମର ରୌଦ୍ର ତାପରୁ ଉପଶମ ଭଳି ବେଳେ ବେଳେ ହୁଏତ ମନେ ପକାଇ ପାରନ୍ତି କେହି ଜଣେ ତାଙ୍କର ପୂର୍ବ ପୁରୁଷ ଜେଜେ ଅଣଜେଜେ ଥିଲେ । ¯ଅତି କର୍ମଠ, କର୍ତ୍ତବ୍ୟନିଷ୍ଠ ସମାଜ ଅଂଗୀକାର-ବଦ୍ଧ ଗଭୀର ଆତ୍ମ-ପ୍ରତ୍ୟୟ-ସମ୍ପନ୍ନ ମଣିଷ ଉତ୍ତର ଦାୟାଦ ପାଇଁ ଛାଡି ଦେଇଛନ୍ତି କିଛି ସଜୀବ ସମ୍ପଦ, ଗୃହସ୍ଥ ଭାବରେ । ସମାଜ ପାଇଁ କିଏ କଣ କରେ କେତେ ଜଣ କେତେଦିନ ବା ମନେ ରଖନ୍ତି ? ରାଜନୀତିର ବିତର୍କିତ ଇତିହାସରେ ପାଦଚିହ୍ନ ରହେ ଅଳ୍ପ କେତେକ ଯୋଗଜନ୍ମା ପୁରୁଷଙ୍କର । ଆଦର୍ଶର ପ୍ରବକ୍ତା ରୂପାୟିତ ହୁଅନ୍ତି ସାହିତ୍ୟ ଓ ଇତିହାସରେ । ଅଗଣିତ ଅନୁଚର ଯାହାଙ୍କ ନିଷ୍ଠାପୂର୍ଣ୍ଣ ଅନୁସରଣ ଆଦର୍ଶକୁ ପ୍ରସାର କରେ ଓ ବଞ୍ଚାଇ ରଖେ ସେମାନଙ୍କ ନାମ ନଥାଏ ଇତିହାସରେ । ସେମାନେ କାହାର ସ୍ମୃତିରେ ଉଦ୍‌ଭାସିତ ହୁଅନ୍ତି ନାହିଁ । ସେହିଭଳି ଏକ ବ୍ୟକ୍ତିତ୍ୱ ଲକ୍ଷ୍ମଣବାବୁ । ଆଦର୍ଶ ପାଇଁ ଜୀବନରେ ବହୁ ଅସୁବିଧାରେ ସମ୍ମୁଖୀନ ହୋଇଥିଲେ । ଶାସନ ଓ ସମାଜର ସଂସ୍କାର ପାଇଁ ବାମପନ୍ଥୀ ଆନ୍ଦୋଳନର ଜଣେ ସଚ୍ଚା ସେବକ ଥିଲେ । ସେନାପତି ବା ନେତା ହୋଇ ନଥିବାରୁ ସେ ଅଚିରେ ବିସ୍ମୃତ ହୋଇଯିବେ । ଅତ୍ୟନ୍ତ ସମ୍ବୋଦନଶୀଳ ଆଦର୍ଶବାଦୀ ମଣିଷଟିଏ ଲକ୍ଷ୍ମଣ ବାବୁ । ସେଥିପାଇଁ ସମାଜବାଦୀ ବିଶ୍ୱାସୀ ଭାବ ପ୍ରବଣ ସହଦେବ ବାବୁ ତାଙ୍କୁ ଅତ୍ୟଧିକ ଶ୍ରଦ୍ଧା ଓ ଭକ୍ତି କରନ୍ତି । ତାଙ୍କ ସହ ନିରୋଳାରେ ବସି ସାଂପ୍ରତିକ ସମାଜର ସମସ୍ୟା ଆଲୋଚନା କରିବାକୁ ସେ ଭଲ ପାଆନ୍ତି ।

ଡାକରା ଆସିଲା ଅପରାହ୍ଣର ଚାହାପାନ ପାଇଁ । ବାଡି ବଗିଚାରୁ ଘର ଭିତରକୁ ଫେରି ଆସିଲେ ସହଦେବ ବାବୁ । ଲକ୍ଷ୍ମଣ ବାବୁଙ୍କ ବିଶ୍ରାମ କୋଠରୀରେ ବସିଛନ୍ତି ସୁରଜିତ । ସଦା ବ୍ୟସ୍ତ ବିବ୍ରତ କର୍ମ-ଚଞ୍ଚଳ ବାସ୍ତବବାଦୀ ସୁରଜିତ ବାବୁ । ପାଖରେ ତାଙ୍କର ଶ୍ରୀମତୀ, ଶ୍ୱଶୁରଙ୍କ ସେବା ପାଇଁ ବ୍ୟଗ୍ରତା ସହ କର୍ତ୍ତବ୍ୟ ପାଳନରେ ଲୋକାଚାର ପ୍ରଦର୍ଶନର ସ୍ପୃହା, ବେଶ୍ ବାରି ହୋଇ ପଡେ ତାଙ୍କ କଥାବାର୍ତ୍ତା ଚାଲିଚଳନରୁ । ସାନ ଜୋଇଁ ଗଜାନନ ଲୌକିକ ଅର୍ଚ୍ଚନା ଓ ଔପଚାରିକ ବ୍ୟବହାର ପ୍ରତି ବେଶ୍ ସତର୍କ । ଖଟ ଉପରେ କାନ୍ଥକୁ ଡେରା ହୋଇ ଥିବା ତକିଆକୁ ଆଉଜି ବସିଛନ୍ତି ଲକ୍ଷ୍ମଣବାବୁ । ପାଖ ଟେବୁଲରେ କମ୍ପ୍ଲେନ ମିଶା କ୍ଷୀର, ଅନ୍ୟମାନଙ୍କ ହାତରେ ଚାହାକପ୍ । ସହଦେବ ବାବୁ ନିଜ ଚାହା କପ୍‌ଟି ହାତକୁ ନେଇ ନିକଟସ୍ଥ ସୋଫାରେ ବସି ପଡିଲେ । କିଛି ସମୟ ପୂର୍ବରୁ ଘରୋଇ ଡାକ୍ତର ଔଷଧ ଦେଇ ଆଶାରବାଣୀ ଶୁଣାଇ ଯାଇଛନ୍ତି । ସମସ୍ତଙ୍କ ମନରେ ଆନନ୍ଦ ! ଲକ୍ଷ୍ମଣ ବାବୁ ଟିକିଏ ସତେଜ ଦେଖାଯାଉଛନ୍ତି । ଚାହାପାନ ଭିତରେ ଚାଲିଛି ଘରୋଇ କଥାବାର୍ତ୍ତା ।

ପୁଅ ସୁରଜିତ ଆକଟ ସ୍ୱରରେ କହି ଚାଲିଛନ୍ତ : "ବୟସ ହେଲେ ସାବଧାନରେ ଚଳିବାକୁ ଆମେ ବାରମ୍ବାର କହୁଛୁ । ଦୂରରେ ଏକା ମାଆଙ୍କ ସହ ରହିଲେ । ମାଆତ ଦୁର୍ବଳ, କାମଦାମ କରିବାକୁ ଅକ୍ଷମ । ଆମେତ ଚାକିରି ସ୍ଥାନରେ, ଚାକରାଣୀ ଆଜି ଅଛି, ତ କାଲି ନାହିଁ । ତୁମେ ବେପରୁଆ ଭାବରେ ଏଠାକୁ ସେଠାକୁ ଯାଉଛି କାହିଁକି ? ପୁଣି ଖରା ବର୍ଷାରେ । କିଏ ତୁମକୁ କହୁଥିଲା ରମିର ବାହାଘର ପାଇଁ ଦଶ ମାଇଲ ଦୂର ଗାଁକୁ ବସ୍ ରିକ୍ସାରେ ଚଢି ଏତେ ଦଉଡିବାକୁ । ତମ ଦେହ ଖରାପ

ହୋଇବାବେଳେ ସେଠାରୁ କେତେ ଲୋକ ଧାଇଁ ଆସୁଛନ୍ତି ?''

ରମି ଲକ୍ଷ୍ମଣ ବାବୁଙ୍କ ପୁତୁରା (ଅର୍ଥାତ୍ ତାଙ୍କ ବଡ଼ଭାଇଙ୍କ ପୁଅ)ର ଝିଅ । ତାଙ୍କ ପାଖରେ ରହି କଲେଜରେ ପାଠ ପଢୁଥିଲା, ଲକ୍ଷ୍ମଣବାବୁଙ୍କ ବଂଶର ଶାରୀରିକ ଲକ୍ଷଣର ପ୍ରତୀକ ବହି ରମି ହୋଇଛି ବେଶ ସ୍ୱାସ୍ଥ୍ୟବତୀ ଓ ଦୀର୍ଘାଙ୍ଗୀ । ବଂଶତି ବର୍ଷ ସ୍ପର୍ଶ କରୁଁ କରୁଁ ସେ ବେଶ୍ ବଢିଆଳ ସ୍ତ୍ରୀ ଲୋକଟି ପରି ଦେଖା ଯାଉଥିଲା । ରମିର ବାପା ଜଣେ ଛୋଟ ଚାଷୀ, ଜଳ କିରାଣୀଟିଏ, ଅର୍ଥାଭାବ ଯୋଗୁଁ ଯୋଗ୍ୟ ପାତ୍ର ସହିତ ରମିର ବାହାଘର ଦେବା ସହଜ ସାଧ୍ୟ ନଥିଲା । ଲକ୍ଷ୍ମଣବାବୁଙ୍କ ବିସ୍ତୃତ ଜନ ସମ୍ପର୍କ ଓ ଉଦ୍ୟମ ଫଳରେ ଗୋଟିଏ ବରପାତ୍ର ଯୋଗାଡ ହୋଇ ପାରିଥିଲା ଏବଂ ଯୌତୁକ ଦାବି ପୂରଣ ପାଇଁ ଜନ୍ମସ୍ଥାନରେ ଥିବା ତାଙ୍କର କେତେ ଏକର ଜମିକୁ ବିକି ବାହାଘର ଉତ୍ସବ ଉପଲକ୍ଷେ ଯାଆସ କରି ଶ୍ୱାସ ରୋଗରେ ଆକ୍ରାନ୍ତ ହୋଇ ପଡିଥିଲେ ।

ପୁଅ ସୁରଜିତ୍ ବାବୁ କହି ଚାଲିଥାନ୍ତି ''ପ୍ରତି ମାସ ପେନ୍‌ସନ୍ ଏତେ ପାଉଛ, ଘରଭଡା ଏତେ ଟଙ୍କା ଆସୁଛି । ଯେତେବେଳେ ଯାହା ଦରକାର ଯେତେ ଟଙ୍କା ହେଉ ମୁଁ ପଠାଉଛି । ତୁମେ ନିୟମିତ ଭଲ ଖାଦ୍ୟ ଖାଇବ ନାହିଁ; କ୍ଷୀର, ଫଳ କି ଟନିକ୍ ସରିଗଲେ ଆଣି ଖାଇବ ନାହିଁ । ଅଯଥା କାମରେ ପର ଲୋକଙ୍କ ପାଇଁ ଟଙ୍କା ଖର୍ଚ୍ଚ କରିବ । ନିଜ ଦେହ ପ୍ରତି ଯତ୍ନ ନେବ ନାହିଁ । ଏ ବୟସରେ ଦୁଃସାହସ ଦେଖାଇଲେ ଚଳିବ ?''

ଲକ୍ଷ୍ମଣବାବୁ ଗମ୍ଭୀର ମୁହଁରେ ବସି ରହି ଶୁଣି ଯାଉଛନ୍ତି । ସୁରଜିତ ବାବୁଙ୍କ ଉପଦେଶ ଚେତାବନୀ ଓ ଜିଜ୍ଞାସା ଶେଷ ହେଉ ନଥାଏ ।

''ବାପା ଗାଁରେ ଅର୍ଥାତ ଆପଣଙ୍କ ଜନ୍ମସ୍ଥାନରେ କେତେ ଜମିଥିଲା ? କେତେ ବିକ୍ରୟ କଲେ ରମି ବାହାଘର ପାଇଁ ? ଆଉ କେତେ ରହିଲା ? ଅନ୍ୟ ପାଇଁ ପୁଣି ବିକିବନା ?''

ଅନ୍ୟମାନେ ହେଲେ ଲକ୍ଷ୍ମଣବାବୁଙ୍କ ପିଲା ଚାରିଝିଅ ଚୋଇଁ ଗୋଟିଏ ପୁଅ । ଲକ୍ଷ୍ମଣ ବାବୁ ଏ ପର୍ଯ୍ୟନ୍ତ ନୀରବରେ ସବୁ ଶୁଣି ଯାଇଥିଲେ । ତାଙ୍କ ମୁଖ ମଣ୍ଡଳରେ ଚିନ୍ତାର ଛାୟା ସୁସ୍ପଷ୍ଟ । ବୈଷୟିକ ଜ୍ଞାନ ସମ୍ପନ୍ନ ପୁଅ ସୁରଜିତ ଏହା ଲକ୍ଷ୍ୟ କରନ୍ତୁ ବା ନ କରନ୍ତୁ ଭାବୁକ ଜୋଇଁ ସହଦେବ ବାବୁ ଏହା ଲକ୍ଷ୍ୟ କରିଥିଲେ ।

ପୁଅର ସତର୍କ ଚେତାବନୀ ଓ ପ୍ରଶ୍ନର ସ୍ରୋତରେ ଭାସି ଯାଉଥାଏ, ଲକ୍ଷ୍ମଣ ବାବୁଙ୍କ ପରିବାରର ଅତୀତ ଏବଂ ତାଙ୍କ ଦୁଃଖ ଦୁର୍ଦ୍ଦଶାମୟ କଠିନ ଶ୍ରମମୟ ଜୀବନ, ସରଳ ଶିଶୁ ଜୀବନର ଅକପଟ ସ୍ନେହ ସୋହାଗ ଦାରିଦ୍ର୍ୟ । ପଙ୍କରେ ପଦ୍ମର ଗନ୍ଧ ବା କଇଁର ଶୁଭ୍ରତା ସ୍ମୃତିପଟରେ ଉଦ୍‌ଭାସିତ ହୋଇଉଠିଲା ଭଳି, ଲକ୍ଷ୍ମଣ ବାବୁଙ୍କ ମୁଖ ମଣ୍ଡଳରେ ସ୍ମିତ ହସ ଉକୁଟି ଉଠି ଉଭେଇ ଯାଉଥାଏ । ଗାଁ ପାଖ ରେଳ ଷ୍ଟେସନର ଶବ୍ଦ ବାଜି ଯାଉଥାଏ କାନରେ, ରେଳ ଆସିବା, ଯିବାର ବେଳ ହେଲା, ଘଣ୍ଟି ବାଜିଲା ବଡ ବାପା ସିଗ୍ନାଲ ଘରୁ ଲାଲନୀଳ ପତାକା ଦେଖାଇ ବନ୍ଦ କରିବାକୁ ବା ଆଗେଇ ଯିବାକୁ ନିର୍ଦ୍ଦେଶ

ଦେଉଛନ୍ତି ରେଳଗାଡିକୁ । ବସା ଘରୁ ଦଉଡି ଯାଉଛି ଖେଳୁଆଡ ହୃଷ୍ଟପୁଷ୍ଟ ପିଲାଟି । ସେହି ପିଲାଟି ଶିଶୁରୁ କିଶୋର, କିଶୋରରୁ ତରୁଣ ତରୁଣରୁ ପ୍ରୌଢ ଓ ପ୍ରୌଢରୁ ବୃଦ୍ଧ ହୋଇ ଜୀବନ ସାୟାହ୍ନରେ ପହଞ୍ଚିଛି । ଜୀବନର ଶେଷ ଯାତ୍ରାର ଦିନଟିକୁ ଘୁଞ୍ଚାଇ ଦେବା ପାଇଁ ପୁଅ ବୋହୂ ଜୋଇଁଙ୍କର ଆପ୍ରାଣ ଚେଷ୍ଟା । ମନେ ମନେ ହସୁଛନ୍ତି ଲକ୍ଷ୍ମଣବାବୁ । ମେଧାବୀ ଛାତ୍ର ଥିଲେ ସେ । ପିଲାବେଳେରେ ପଢୁଥିବା କାବ୍ୟ ପଂକ୍ତି ଆଜି ବି ତାଙ୍କର ମନେ ଅଛି । "ରହିନାହିଁ କେହି ରହିବେ ନାହିଁଟି ଭବରଙ୍ଗ ଭୂମିତଳେ" ।

ଗରିବ ଘର, ଛୋଟ ଚାଷୀ, ବାପ ବିଲରେ ଖଟି ବର୍ଷକର ଖାଦ୍ୟ, ଧାନ ଅମଳ କରିବା କଷ୍ଟକର । ବଡବାପା ବି.ଏନ୍.ଆର୍.ରେ ସିଗ୍‌ନାଲ ମ୍ୟାନ୍ । ଅଳ୍ପ ଦରମା । ତେବେ କର୍ତ୍ତବ୍ୟରେ ବହୁତ ନିଷ୍ଠା, କେତେ ରେଳ ବାବୁ ଶିକ୍ଷିତ ବଙ୍ଗାଳୀ ଓ ଗୋରା ସାହେବ ସଂସ୍ପର୍ଶରେ ଆସିଛନ୍ତି । ପୁତୁରା ନଛି ବେଶ ବୁଦ୍ଧିମାନ, ଗାଁ ସ୍କୁଲରେ ପ୍ରଥମ ହେଉଛି । ତାକୁ ନିଶ୍ଚୟ ଇଂରାଜୀ ପଢାଇ ଏଣ୍ଟ୍ରାନ୍ସ ପାଶ୍ କରାଇବେ । ବଙ୍ଗାଳୀଙ୍କ ଭଳି ଏହି ବି.ଏନ୍.ଆର୍.ରେ ସେ ବାବୁ ହେବ । ଆମ ବଂଶର ଗୌରବ ବଢିବ। ପୁଅ ଭଳି ସ୍ନେହ କରି ଅକାତରେ ଖର୍ଚ୍ଚ କରି ନଛିଆକୁ ଏଣ୍ଟ୍ରାନ୍ସ ପାଶ କରାଇ ପାରିଥିଲେ, ସିଗ୍‌ନାଲ ମ୍ୟାନ କକା । ଏଣ୍ଟ୍ରାନ୍ସ ପାଶ ପରେ ନଛିଆ ହୋଇଥିଲେ ରେଳ ଷ୍ଟେସନ ମାଷ୍ଟର ଲକ୍ଷ୍ମଣ ବାବୁ, ବଙ୍ଗାଳୀ ବାବୁଙ୍କ ସଙ୍ଗେ ସମାନ ।

ସେହି ଲକ୍ଷ୍ମଣ ବାବୁଙ୍କ ମନେ ପଡିଯାଉଛି ହସ କାନ୍ଦ ଦୁଃଖ ସୁଖମୟ ରୋମାଞ୍ଚକର ଅତୀତ, ଉଚ୍ଚାଭିଳାଷୀ ବଡବାପାର ବାତ୍ସଲ୍ୟ, ତ୍ୟାଗ ଓ ସାଧନା, ପରିବାରର ଗୌରବ ପାଇଁ ଅକୁଣ୍ଠିତ ଶ୍ରମ ଓ ସାଧନା । ସିଗ୍‌ନାଲ ମ୍ୟାନ୍ ବଡବାପା ଆଉ ନାହାନ୍ତି । ଅବସର ପ୍ରାପ୍ତ ଷ୍ଟେସନ ମାଷ୍ଟର ପୁତୁରା ଲକ୍ଷ୍ମଣ ବାବୁ ଆଜି ସମାଜରେ ବେଶ୍ ପ୍ରତିଷ୍ଠିତ । ପୁଅ ତାଙ୍କର ଇଞ୍ଜିନିୟର, ଜୋଇଁମାନେ ପ୍ରଫେସର, ବ୍ୟାଙ୍କ ମ୍ୟାନେଜର ଇତ୍ୟାଦି ।

ମାତ୍ର ଲକ୍ଷ୍ମଣବାବୁଙ୍କ ପୁତୁରା ? ପୁତୁରାର ପୁଅ ଝିଅ ? ଏ ଦେଶର ଅସଂଖ୍ୟ ପରିବାର ଭଳି ଦାରିଦ୍ର୍ୟର କଷାଘାତ ଏବେ ବି ସହୁଛନ୍ତି । ଜନ୍ମସ୍ଥାନର ସେହି ପୁରୁଣା ଘର ପରିବାରର ଅତୀତ ସ୍ମୃତି ରୂପେ ଛିଡା ହୋଇଛି । କେଉଁ ଦୂରରୁ ବଡବାପାଙ୍କ ଭଳି କିଏ କହୁଛି "ମୁଁ ସିଗ୍‌ନାଲ ଦେଖାଇ ରେଳ ଗାଡିକୁ ଠିକ୍ ସମୟରେ ଠିକ୍ ସଙ୍କେତ ଦେଇ ରେଳ ଧାରଣା ବାଟ କଢେଇ ନେଉଛି । ନହେଲେ ଗାଡି ସହିତ ଗାଡି ଧକା ଲାଗିବ । ବହୁ ଲୋକଙ୍କ ଜୀବନ ହେବ ବିପନ୍ନ । ନଛି ତୁ ମଣିଷ ହେବୁ । ଠିକ୍ ବାଟରେ ଚଳାଇ ନେବୁ ଏ ପରିବାରକୁ, ଏ ଗାଡିକୁ, ପାରୁ ଯଦି ଏ ସମାଜକୁ ।

ସୁରଜିତ୍ ବାବୁଙ୍କ କଥାରେ ଯୋଗ ଦେଇ ହାଲୁକା ଭାବରେ ସହଦେବ ବାବୁ କହିଲେ "ଆଉ ଗୋଟିଏ ଅଭାବୀ ନାତୁଣୀ ତ ଅଛି, ତା ମୁଣ୍ଡରେ ଫୁଲଚୋଳ ପିନ୍ଧାଇବା ପାଇଁ କିଛି ରଖିଛନ୍ତି ନା ?"

ଅତି ଆଦରର ଜୋଇଁଙ୍କ କଥାରେ ବୋଧହୁଏ ଲକ୍ଷ୍ମଣ ବାବୁଙ୍କ ଗଭୀର ଚିନ୍ତା ଓ ସ୍ମୃତିଚାରଣ ବାଧାପ୍ରାପ୍ତ ହେଲା । ହଠାତ୍ ତାଙ୍କର ସଂବିତ୍ ଫେରି ଆସିଲା । କରୁଣାସିକ୍ତ ସ୍ୱରରେ ଉତ୍ତର ଦେଲେ :

''ପରିବାରର ଝିଅଟା ଯେ ରହି ଯାଉଥିଲା'' ପୁଅ ବୋହୂ ତୋଗଁ ମୁହଁରୁ ଆଉ ବାକ୍ୟ ସ୍ଫୁରିଲା ନାହିଁ ।

(ସତରେଶ)

'ଅଭିନ୍ନସ୍ପନ୍ଦନ

ମୃତ୍ୟୁ ଓ ଜନ୍ମ'

ହୃଷ୍ଟପୁଷ୍ଟ ଲକ୍ଷ୍ମଣବାବୁ ଅଶୀତିପର ବୟସରେ ଜୀବନର ପ୍ରଥମ ଥର ପାଇଁ ଏତେ ଦିନ ଧରି ରୋଗଶଯ୍ୟାରେ ପଡି ଆରୋଗ୍ୟ ଲାଭ କଲେ । କଠିନ ଶ୍ୱାସରୋଗ ଓ ତାର ଉପଶମ ତାଙ୍କୁ ଜନ୍ମମୃତ୍ୟୁର ଏକ ଅଭିନବ ଅଭିନ୍ନ ଉପଲବ୍ଧି ଦେଇଥିଲା । ଜନ୍ମମୃତ୍ୟୁକୁ ନେଇ ଏ ଜୀବନ ଯେତିକି ସଂଘର୍ଷମୟ ସେତିକି ସ୍ପନ୍ଦନମୟ । କେତେବେଳେ ଆନନ୍ଦ ତ କେତେବେଳେ ବିଷାଦ । ଆଶଙ୍କିତ ମୃତ୍ୟୁର ଅନ୍ଧକାରରେ ବ୍ୟକ୍ତି ନିଜକୁ ଯେତିକି ନିସ୍ୱ ନିଃସଙ୍ଗ ଭାବେ, ଜନ୍ମର ଆଲୋକରେ ନିଜକୁ ସେତିକି ବିଶ୍ୱମୟ ସାଂଗସାଥୀ ଭରା ସ୍ନେହାସକ୍ତ ଭାବେ, ପ୍ରତ୍ୟେକ ଜୀବନ ଏକ ସ୍ୱତନ୍ତ୍ର ଅନୁଭୂତି, ସ୍ୱତନ୍ତ୍ର ଚିନ୍ତା ଚେତନାର ସମାହାର । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେ ଜୀବନକୁ ତିଳେ ତିଳେ ଉପଭୋଗ କରିଛି ଦୁଃଖସୁଖ ବାଧାବିଘ୍ନ ସବୁ ହସିହସି ବରି ନେଇ ନିର୍ଭୀକତାର ସହ ଆଗେଇଚାଲେ ମୃତ୍ୟୁର ଆଶଙ୍କାରେ ସେ ଭାଙ୍ଗି ପଡେନା କି ସୁସ୍ଥ ସମୃଦ୍ଧ ଜୀବନର ଆତିଶଯ୍ୟରେ ଜୀବନର ଲକ୍ଷ୍ୟ ଆଦର୍ଶ ଓ ସମାଜପ୍ରତି ତାର କର୍ତ୍ତବ୍ୟ ଭୁଲିଯାଏନା । 'ସଂସାରେ ଥିବ ଯେତେଦିନ, ଆନନ୍ଦ କରୁଥିବ ମନ' ଏହି ଦର୍ଶନ ରୋଗାକ୍ରାନ୍ତ ଲକ୍ଷ୍ମଣବାବୁଙ୍କୁ ଆଚ୍ଛନ୍ନ କରି ଚାଲିଲା । ଲକ୍ଷ୍ମଣବାବୁ ଆରୋଗ୍ୟ ଲାଭପରେ ଉତ୍କଣ୍ଠିତ ହେଉଥିଲେ ଯାହାକିଛି ବାକିକାମ ସାରିଦେବାକୁ । ପୁରୁଣାବନ୍ଧୁ ସାଥୀସୋଦର ପ୍ରିୟପରିଜନ ମାନଙ୍କ ସହ ମିଶିବାକୁ । କଠିନ ଶ୍ୱାସ ରୋଗଟି ସତେଯେମିତି ତାଙ୍କ ପାଇଁ ଅନ୍ତିମ ଯାତ୍ରାର ସତର୍କ ଘଣ୍ଟି ବଜାଇଗଲା । ପରିବାର ପାଇଁ ତ ଯାହା କରିବାର କଥା ସେ ନାନା କଷ୍ଟ ସ୍ୱୀକାର କରି କରିଦେଇଛନ୍ତି । ନିଜ ପିଲାମାନଙ୍କୁ ଓ ଏକଦା ଏକାନ୍ନବର୍ତ୍ତୀ ପରିବାରର ପିଲାମାନଙ୍କୁ ସ୍ୱଚ୍ଛଳ ଜୀବନଯାପନ କରିବାକୁ ସମର୍ଥ କରିଦେଇଛନ୍ତି । ସେମାନଙ୍କର ଚିନ୍ତା ତାଙ୍କୁ ବିବ୍ରତ କରେ ନାହିଁ । ବେଳେବେଳେ ତାଙ୍କ ମନରେ ଉଙ୍କିମାରେ ତାଙ୍କ ପରେ ପତ୍ନୀ ସବିତା ଦେବୀଙ୍କ ଭବିଷ୍ୟତ କଥା । ଭଉଣୀ ରେବତୀ ଉପରେ ନିର୍ଭର କରି ସବିତା ଦେବୀଙ୍କୁ ଅତୀତରେ ଏକ ପ୍ରକାର ଅବହେଳା କରିଛନ୍ତି । ତାଙ୍କଠାରୁ ବହୁତ ସାନ ସବିତା ଦେବୀ ଯେ ଅବଶ୍ୟମ୍ଭାବୀ ବିଚ୍ଛେଦ ଯନ୍ତ୍ରଣା ଦିନେ ନା ଦିନେ ଭୋଗ କରିବେ ଏହି ଚିନ୍ତା ତାଙ୍କୁ କେତେବେଳେ କେମିତି ବିଷଣ୍ଣ କରି ଦିଏ । ତେଣୁ ତାଙ୍କ ପରେ ପତ୍ନୀ ସବିତା ଦେବୀ ଯେପରି ଆତ୍ମସମ୍ମାନର ସହ ଆତ୍ମନିର୍ଭରଶୀଳା ହୋଇ ଚଳିପାରିବ ତାର ସୁବନ୍ଦୋବସ୍ତ କରିବାକୁ ସେ ପଛେଇ ନାହାନ୍ତି । ବାକି ଦିନ ତକ ନିଜ ହାତରେ ଗଢା ସୁନ୍ଦର ବାସଭବନରେ ପତ୍ନୀଙ୍କ ସହ କଟାଇ ଦେବାକୁ ଅତ୍ୟନ୍ତ ଆଗ୍ରହୀ । ପୁଅ ସୁରଜିତ ବାବୁ ଯେତେ କହିଲେ ମଧ୍ୟ ସବୁଦିନ ପାଇଁ କଟକ ବସାଘରେ ପୁଅବୋହୂ ପାଖରେ ରହୁନାହାନ୍ତି । ମଝିରେ ମଝିରେ ପୁଅ ପାଖକୁ ଯାଆନ୍ତି ନିଜର ଚିକିତ୍ସା ପାଇଁ କିମ୍ୱା ଉତ୍ସବାଦିରେ ଯୋଗ ଦେବାପାଇଁ । ବାହାନଗାରେ ଗୋଟିଏ ସଂସ୍ଥା ଓ କଟକ ବା ଭୁବନେଶ୍ୱର ଚାକିରି

ସ୍ଥଳରେ ଅନ୍ୟ ଏକ ସଂସ୍ଥା ଚଳାଇବାକୁ ସୁରଜିତ ବାବୁଙ୍କୁ ନିଶ୍ଚିତ ରୂପେ କଷ୍ଟଦାୟକ ହୁଏ । ତଥାପି ସୁରଜିତ ବାପା ମାଆଙ୍କ ଭାବପ୍ରବଣତା ଓ ମନର-ସାଦକୁ ସମ୍ମାନଦେଇ ସମସ୍ତ ଆର୍ଥିକ ଓ କାୟିକ ବୋଝ ସହି ନିଅନ୍ତି । ଭବିଷ୍ୟତରେ ତାଙ୍କ ପରେ ପୁଅ ସୁରଜିତ କ'ଣ କରିବ ସେ ବିଷୟ ଲକ୍ଷ୍ମଣବାବୁ ବେଳେ ବେଳେ ଭାବନ୍ତି । ଆଜିକାଲି ଦୁନିଆରେ ସମସ୍ତେ ତ ସହରମୁଖୀ । ପଲ୍ଲୀର ଶାନ୍ତ ସୁନ୍ଦର ପ୍ରାକୃତିକ ପରିବେଶରେ ଜୀବନଯାପନ କରିବାକୁ କିଏ ବା ଆଗ୍ରହୀ ? ଲକ୍ଷ୍ମଣବାବୁ ପୁଅକୁ ସିଧା ସଳଖ କିଛି କହନ୍ତି ନାହିଁ । କାହାର ସ୍ୱାଧୀନ ମତ ଉପରେ ନିଜର ମତ ଚାପିଦେବା ତାଙ୍କର ସ୍ୱଭାବ ଓ ଦର୍ଶନ ବିରୁଦ୍ଧ । ପୁଅ ଯଦି ବାପର ଦର୍ଶନରେ ନିଜେ ଆକୃଷ୍ଟ ନହେଲା, ତାକୁ ଉପଦେଶ ପରାମର୍ଶ ଦେବା ନିଷ୍ପ୍ରୟୋଜନ । ତଥାପି ନିଜ ଅନ୍ତରର ଇଚ୍ଛା ଆଦରଣୀୟ ଝିଅମାନଙ୍କ ଜରିଆରେ ପୁଅକୁ ଜଣାଇ ଦେବାକୁ ସେ ଭୁଲି ନାହାନ୍ତି । ତାଙ୍କର ଅନ୍ତିମ ଇଚ୍ଛା, ତାଙ୍କ ହାତଗଢା କୀର୍ତ୍ତି ବାହାନଗାଛ ତପୋବନ ସଦୃଶ ବାସସ୍ଥଳୀ ଯେପରି ତାଙ୍କ ଅନ୍ତେ ଭାଙ୍ଗି ନପଡୁ । ତାଙ୍କର ପୁତ୍ର ପୌତ୍ରାଦି, ତାଙ୍କର ସ୍ମୃତିକୁ ବଞ୍ଚାଇ ରଖନ୍ତୁ - ଶ୍ରୀମା କୁଟୀର ପୁରୁଣା ଟାଇଲ ଘର, ନୂଆ ପକ୍କା ଘର, ଆମ୍ବ, ପଣସ, ସଜନା, ନଡିଆ ଗଛ ଓ ଛୋଟ ନିର୍ମଳ ଜଳଭଣ୍ଡାର କର୍ଦ୍ଦମାକ୍ତ ପୋଖରୀଟି ମାଧ୍ୟମରେ ତାଙ୍କ ଆତ୍ମା ହେଉ ଉପଲବ୍ଧ ଏବଂ ବିଚ୍ଛୁରିତ- ଯୁଗଯୁଗ ଧରି ।

ଯେଉଁ ଆଦର୍ଶ ଓ ସ୍ୱପ୍ନ ନେଇ ସେ ଏଯାବତ୍ ଜୀବନଯାପନ କରି ଆସିଲେ, କେତେଦୂର ତା ଏ ଦେଶର ଲୋକେ ଗ୍ରହଣ କଲେ ବା ଭବିଷ୍ୟତରେ କରିବେ ତା ନିରୂପଣ କରିବା ଅନାବଶ୍ୟକ । ସମୟର ଗତି ସଙ୍ଗେ ଚାଳରଖି ସବୁ ଆଦର୍ଶ ସବୁ କଳ୍ପନା ରୂପ ପରିବର୍ତ୍ତନ କରି ଚାଲିଛି । ସଠିକ୍ କେଉଁଟା ଶ୍ରେୟ କେଉଁଟା କହିବା ନିଜପକ୍ଷେ ମଧ୍ୟ ଆଜି କଷ୍ଟକର ହୋଇଗଲାଣି । ଗୋଟିଏ ବିଷୟ ଏବେ ତାଙ୍କୁ ବେଶୀ ଆନ୍ଦୋଳିତ କରୁଛି, ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପରେ ମଧ୍ୟ ଏ ଦେଶରେ କାହିଁକି ବତିଶ କୋଟି ଲୋକ ପେଟପୂରା ଖାଇବାକୁ ପାଉନାହାନ୍ତି, ଭଲ ବସ୍ତ୍ର ପିନ୍ଧି ପାରୁ ନାହାନ୍ତି, ଆବଶ୍ୟକ ମତେ ଶିକ୍ଷା ପାଉ ନାହନ୍ତି, ଜ୍ୱରବ୍ୟାଧି ହେଲେ ଉପଯୁକ୍ତ ଚିକିତ୍ସା ମିଳୁ ନାହିଁ । ଯେଉଁ ପ୍ରକାର ରାଜନୀତି ଯିଏ କରୁନା କାହିଁକି, ମଣିଷକୁ ମଣିଷ ପରି ବଞ୍ଚିବା ପାଇଁ ସମସ୍ତ ସୁଯୋଗ ଦେବା ସର୍ବପ୍ରଥମ ଓ ସର୍ବ ପ୍ରଧାନ କର୍ତ୍ତବ୍ୟ । ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପୂରଣ ତ ରାଷ୍ଟ୍ରର ପ୍ରଧାନ ଲକ୍ଷ୍ୟ । ଏତିକି କ'ଣ ଏ ଦେଶରେ ସମ୍ଭବ ହେବ ନାହିଁ ? ଲକ୍ଷ୍ମଣବାବୁ ନିଶ୍ଚିତ ଯେ ଦେଶର ସମ୍ବଳ ଠିକ୍ ରୂପେ ସମସ୍ତଙ୍କ ମଙ୍ଗଳ ପାଇଁ ବ୍ୟବହୃତ ହେଲେ ଦେଶରେ ଦାରିଦ୍ର୍ୟ ଅଶିକ୍ଷା, ଅସ୍ୱାସ୍ଥ୍ୟ ରହିବ ନାହିଁ । ଏଥିପାଇଁ ରାଷ୍ଟ୍ରକୁ ଏବଂ ପ୍ରତ୍ୟେକ ରାଜନୈତିକ ଦଳକୁ ସାମ୍ୟ ଓ ମାନବିକତା ଧର୍ମରେ ଦୀକ୍ଷିତ ହେବାକୁ ପଡିବ- ସମାଜ ସୃଷ୍ଟିର ଆରମ୍ଭରୁ ତ କୁହାଯାଇଛି ଆମ ବେଦରେ, "ରାଜାର ଉଚିତ ଚିନ୍ତା- ମୋର ପଛେ ସର୍ବନାଶ ହେଉ ପ୍ରଜାଏ ସୁଖରେ ରହନ୍ତୁ" । କେଉଁ ଏକ ଅନ୍ଧକନ୍ଧ କବି ଗାଇଗଲେ "ମୋ ଜୀବନ ପଛେ ନର୍କେ ପଡିଥାଉ, ଜଗତ ଉଦ୍ଧାର ହେଉ" । ଆମ ରାଜନୈତିକ ଚିନ୍ତାଧାରା ଜ୍ଞାନ ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ, ଏତିକି ଗ୍ରହଣ କରି ପାରୁନି ?

ରାଜନୀତିର ଘନଘଟା ଅର୍ଥନୀତିର ଜଟିଳତା ଯେତେବେଳେ ଏହି ଲକ୍ଷ୍ୟକୁ ପଛରେ ପକାଇ ଧର୍ମାନ୍ଧତା ରକ୍ଷଣଶୀଳତା ସଂକୀର୍ଣ୍ଣ ଦଳ ଓ ନେତାର ସ୍ୱାର୍ଥସାଧନ ପଥରେ ଚାଲେ, ଗଣତନ୍ତ୍ରର ମୁଖା ଓ ଛଳନାର ବେଶ ପିନ୍ଧି, ଲକ୍ଷ୍ମଣବାବୁ ବଡ ବିଚଳିତ ହୋଇ ପଡନ୍ତି, ଡାକନ୍ତି ତାଙ୍କର ଶିଷ୍ୟ ପୀତବାସ, କାର୍ତ୍ତିକ, ଶୈଳେନ୍ଦ୍ରଙ୍କୁ ଏବଂ କହନ୍ତି "କ'ଣ ତୁମ୍ଭେମାନେ କରୁଛ ? ରାଜନୀତିର ଏ ସ୍ଖଳନକୁ ପ୍ରତିରୋଧ କରି ପାରୁନା ? ସାମ୍ୟ ପ୍ରତିଷ୍ଠା ପାଇଁ ଏକନିଷ୍ଠ ଉଦ୍ୟମ ତୁମର କୁଆଡେ ଗଲା ?" ସେମାନେ ନିଜର ଅସାମର୍ଥ୍ୟର ସୂଚନା ଦେଇ କହନ୍ତି 'ସୋଭିଏଟ ୟୁନିୟନର ପତନ ପରେ ତ ସମଗ୍ର ବିଶ୍ୱକୁ ପୁଞ୍ଜିବାଦୀ ସଭ୍ୟତା ଗ୍ରାସ କରିଛି । ଅର୍ଥନୈତିକ ସାହାଯ୍ୟ ଓ ଋଣ ପାଇଁ ଆମ ସରକାର ତ ଧନଶାଳୀ ରାଷ୍ଟ୍ର ନିକଟରେ ମୁଣ୍ଡ ବିକି ଦେଇଛି । ମୁକ୍ତ ଅର୍ଥନୀତିରେ ବିଦେଶୀ ଦ୍ରବ୍ୟର ଚାକଚକ୍ୟ ସମାଜର ପ୍ରଭାବଶାଳୀ ଲୋକମାନଙ୍କୁ ଏପରିକି ନିମ୍ନ ମଧ୍ୟବିତ୍ତ ଶ୍ରେଣୀକୁ ମୋହିତ କରି ଦେଉଛି । ସମସ୍ତେ ଧାଇଁଛନ୍ତି ଧନପଛରେ ନୀତି ଅନୀତି ବିଚାର ନକରି । ରାଜନୀତି କଳୁଷିତ ହୋଇଗଲାଣି ଅର୍ଥର କାରସାଦିରେ । ଗରିବ ଲୋକେ ବି ଶିକାର ହେଉଛନ୍ତି ସାମୟିକ ସ୍ୱାର୍ଥ ଓ ଅର୍ଥ ପ୍ରଲୋଭନରେ । ଆମ ରାଜନୀତି ହାର ମାନୁଛି । ଅପେକ୍ଷା କରି ରହିଛୁଁ ସୁଦିନକୁ" । ନୈରାଶ୍ୟର କୁହୁଡିକାଟି ଆଲୋକ ବିଚ୍ଛୁରି ଦେବାକୁ ଶକ୍ତି ନଥାଏ ରୁଗ୍ଣ ଲକ୍ଷ୍ମଣବାବୁଙ୍କର । ମନରେ ସାନ୍ତ୍ୱନା ଓ ଆଲୋକର ସଂଧାନ ଖୋଜି ସେ ଚାଲିଆସନ୍ତି ଭୁବନେଶ୍ୱର ଯେଉଁଠି ଅଛନ୍ତି ରାଜ୍ୟର ଶ୍ରେଷ୍ଠ ବୁଦ୍ଧିଜୀବୀ ଏବଂ ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ଏବଂ ଆଦର୍ଶବାଦୀ ଚିନ୍ତାଶୀଳ ବ୍ୟକ୍ତି ସହଦେବ ବାବୁ ।

ପୁଅ ଓ ନାତି ସଙ୍ଗରେ ଲକ୍ଷ୍ମଣବାବୁ ଆସନ୍ତି ଭୁବନେଶ୍ୱର ଝିଅ ଘରକୁ । ଝିଅ ସସ୍ମିତା ବାପାଙ୍କ ମନବୁଝି ବିଭିନ୍ନ ପ୍ରକାର ରୁଚିକର ଖାଦ୍ୟ ଖାଇବାକୁ ଦିଅନ୍ତି । ଶ୍ୱାସ ରୋଗରେ ଆକ୍ରାନ୍ତ ହେବା ପରେ ଲକ୍ଷ୍ମଣବାବୁ ନିୟମିତ ପଥି ଖାଉଛନ୍ତି । ଅଧିକ କିଛି ଖାଇଲେ ରୋଗର ପ୍ରକୋପ ବଢିପାରେ । ପୁଅ ସୁରଜିତ ଓ ନାତି ବୁଲୁର ସତର୍କ ଦୃଷ୍ଟି ତାଙ୍କ ଖାଇବା ପ୍ରତି । ସେମାନଙ୍କର ବଡଭୟ ସସ୍ମିତା ପିଲାଙ୍କୁ ବଳେଇ ଖୋଇଲାଉଳି ବାପାଙ୍କୁ ନାନା ଜିନିଷ ମାତ୍ରାଧିକ ଖାଇବାକୁ ଦେଇ ଦେବ । ସସ୍ମିତାର ଏହା ଏକ ଦୁର୍ଗୁଣ ବା ସୁଗୁଣ । ଅତିଥି ଅଭ୍ୟାଗତ ଚର୍ଚ୍ଚାରେ ଅତିମାତ୍ରାରେ ଯତ୍ନଶୀଳ ସେ । ପୁଅ ସୁରଜିତ୍ ଏହି ଭୟରେ ବାପାଙ୍କୁ ଭୁବନେଶ୍ୱରରେ ଛାଡି ଯାଆନ୍ତି ନାହିଁ । ଦିନରେ ଆଣି, ନିଜ ଅଫିସ କାମ ପରେ ରାତିରେ କଟକ ବସାକୁ ଲକ୍ଷ୍ମଣବାବୁଙ୍କୁ ନେଇଯାଆନ୍ତି । ଯେଉଁ ପାଞ୍ଚ ଛଅ ଘଣ୍ଟା ସେ ଭୁବନେଶ୍ୱରରେ ରହନ୍ତି ବୋଇଁ ସହଦେବ ବାବୁଙ୍କ ସହ ରାଜ୍ୟ ଦେଶ ଓ ବିଶ୍ୱ ରାଜନୀତି ଚର୍ଚ୍ଚା କରି ମନକୁ ଉଶ୍ୱାସ କରନ୍ତି । ଆଦରର ଝିଅର ନିବିଡ ସ୍ନେହପୂର୍ଣ୍ଣ ସେବାରେ ଉତ୍‌ଫୁଲ୍ଲ ହୋଇ ଉଠନ୍ତି । ପୁଅ ଓ ନାତିଙ୍କ କଥାରେ ସେ ବାଧ୍ୟ ହୋଇ ଫେରି ଯାଆନ୍ତି ରାତିରେ କଟକ । ଫେରିଲାବେଳେ ତାଙ୍କ ମୁଖ ମଣ୍ଡଳରେ ଆଙ୍କି ହୋଇଯାଏ ବିଷାଦର ଚିତ୍ର । ସତେ ଯେମିତି ଛୋଟ ପିଲାଟିକୁ ତାର ଆଦରର ମାଆଠାରୁ ଦୂର ଛାତ୍ରାବାସକୁ କିଏ ନେଇଯାଉଛି ।

ଦିନେ ଲକ୍ଷ୍ମଣବାବୁ ବୋଇଁ ସହଦେବବାବୁଙ୍କୁ ପଚାରିଲେ "ବାବୁ ଏବେ ପୁଞ୍ଜିବାଦ ଓ ମୁକ୍ତ

ଅର୍ଥନୀତିର ଜୟଗାନ ଜୋରସୋର ଚାଲିଛି । ପତ୍ରପତ୍ରିକାରେ ଲେଖାଯାଉଛି ମୁକ୍ତ ଅର୍ଥନୀତି ଓ ବିଦେଶୀ ପୁଞ୍ଜିଲଗାଣ ଦ୍ୱାରା ଏସିଆର ଛଅ ସାତଟି ରାଜ୍ୟ, ଜାପାନ, ଦକ୍ଷିଣ କୋରିଆ, ଇଣ୍ଡୋନେସିଆ, ମାଲେସିଆ, ଥାଇଲାଣ୍ଡ, ହଙ୍ଗକଙ୍ଗ ଅଭୂତପୂର୍ବ ଭାବେ ପ୍ରଗତି ହାସଲ କରିଛନ୍ତି । ଚୀନ ମଧ୍ୟ ଏବେ ଏହି ପନ୍ଥା କେତେକ ସ୍ଥଳରେ ଅବଲମ୍ବନ କରିଛି । ପ୍ରକୃତରେ କ'ଣ ସରକାରୀ ନିୟନ୍ତ୍ରଣ ଓ ସାମ୍ୟବାଦୀ ନୀତି ନିରର୍ଥକ ? ପୁଞ୍ଜିବାଦୀ ମୁକ୍ତ ଅର୍ଥନୀତି ଏତେ ଶକ୍ତିଶାଳୀ ଓ ମହତ୍ତର ?

ସହଦେବ ବାବୁ ଅନୁଭବ କଲେ ସାମ୍ୟବାଦକୁ ନ୍ୟୁନ କରୁଥିବା ଚିନ୍ତାଧାରା ଲକ୍ଷ୍ମଣବାବୁଙ୍କୁ ଗଭୀର ବ୍ୟଥା ଦେଉଛି । ସେ ଉତ୍ତର ଦେଲେ "ନା ବାପା, ସତ୍ୟ ଅନ୍ୟ ପ୍ରକାର । ଏହି ଦେଶ ଗୁଡିକ, ରାଷ୍ଟ୍ରର ନିୟନ୍ତ୍ରଣରେ ଅର୍ଥନୀତି ବିକାଶର ଭିତ୍ତିସ୍ଥାପନ କଲେ । ପ୍ରାରମ୍ଭିକ ପର୍ଯ୍ୟାୟରେ ରାଷ୍ଟ୍ର ଭୂସଂସ୍କାର ଶିକ୍ଷା ଓ ସ୍ୱାସ୍ଥ୍ୟର ପ୍ରସାର ଘଟାଇ ସମଗ୍ର ଦେଶବାସୀଙ୍କୁ ନିଜ ଗୋଡରେ ଛିଡା ହେବାକୁ ସମର୍ଥ କରିଥିଲା । ପରବର୍ତ୍ତୀ କାଳରେ ଲୋକେ ପ୍ରତିଯୋଗୀ ମନୋଭାବ ନେଇ ଆଗେଇ ଗଲେ । ଅର୍ଥନୈତିକ ପ୍ରଗତି ଦ୍ରୁତ ହେଲା । ତେଣୁ ଦ୍ରୁତ ପ୍ରଗତି ପାଇଁ ସମାଜରେ ରାଷ୍ଟ୍ରର ନିୟନ୍ତ୍ରଣ ଓ ଆବଶ୍ୟକୀୟ ସମତା ଅପରିହାର୍ଯ୍ୟ" ।

ଲକ୍ଷ୍ମଣବାବୁ ଉଲ୍ଲସିତ ହୋଇଗଲେ, ଏବଂ ପଚାରିଲେ, "ତେବେ କାହିଁକି ଆମ ଦେଶରେ ଏପରି ଏକ ଧାରଣା ସୃଷ୍ଟି କରାଯାଉଛି ଯେ ସାମ୍ୟବାଦ ଓ ରାଷ୍ଟ୍ରୀୟ ନିୟନ୍ତ୍ରଣ ଏସବୁ ନିରର୍ଥକ, ଅସଲ ହେଉଛି ମୁକ୍ତ ବଜାର ଓ ପ୍ରତିଦ୍ୱନ୍ଦ୍ୱିତା ?"

"ଏ ସବୁ ସ୍ୱାର୍ଥାନ୍ୱେଷୀ ଧନିକ ଗୋଷ୍ଠୀ ଓ ତାଙ୍କ ରାଜନୈତିକ ସମର୍ଥକମାନଙ୍କ ମିଥ୍ୟା ପ୍ରଚାର, ଅଭିସନ୍ଧିମୂଳକ ଯୁକ୍ତି । କଂଗ୍ରେସ ସରକାରର ପତନପରେ ରାଜନୈତିକ ଦଳଗୁଡିକ ଉପଲବ୍ଧି କଲେଣି 'ସାମ୍ୟ ଓ ରାଷ୍ଟ୍ରୀୟ ନିୟନ୍ତ୍ରଣ ବିନା ସମଗ୍ର ଜାତିର ବିକାଶ ସମ୍ଭବ ନୁହେଁ, ଅର୍ଥନୀତିର ମୂଳଦୂଆ ଦୃଢ କରିବା ପାଇଁ ଏହା ଅପରିହାର୍ଯ୍ୟ । ଅର୍ଥନୈତିକ ବିକାଶ କିଛି ଦୂର ଆଗେଇ ଗଲାପରେ ରାଷ୍ଟ୍ର ନିୟନ୍ତ୍ରଣ କୋହଳ କରି ବ୍ୟକ୍ତିଗତ ଉଦ୍ୟମକୁ ଅଗ୍ରାଧିକାର ଦିଆଯିବା ବାଞ୍ଛନୀୟ" କହିଲେ ସହଦେବ ବାବୁ ।

"ଏହି ନୂତନ ବାସ୍ତବବାଦୀ ଚିନ୍ତା କେତେଦୂର ଆମ ନେତାମାନଙ୍କୁ ପ୍ରଭାବିତ କଲାଣି ?" 'ପ୍ରଗତିଶୀଳ ରାଜନୀତିକ ଦଳ ଓ କେତେକ ଆଞ୍ଚଳିକ ଦଳମାନେ ଏହାର ସତ୍ୟତା ଉପଲବ୍ଧି କଲେଣି । ବ୍ୟକ୍ତିସ୍ୱାତନ୍ତ୍ର୍ୟ ସମତା ଓ ଭାତୃତ୍ୱ କିପରି ସୁସ୍ଥ ଓ ଫଳପ୍ରଦ ଭାବେ ସମନ୍ୱିତ ହେବ ଏହି ଚିନ୍ତା ହିଁ ଉଦାର ବିଚାରଶୀଳ ନେତାମାନଙ୍କୁ ଆଲୋଡିତ କରୁଛି" କହିଲେ ସହଦେବ ବାବୁ ।

'ଏହି ମଧୁର ସମନ୍ୱୟ ଆମ ଦେଶରେ କେବେ ରୂପାୟିତ ହେବ, କିଏ ଏହାର ନେତୃତ୍ୱ ନେବ ?' ଉତ୍କଣ୍ଠାର ସହ ପଚାରିଲେ ଲକ୍ଷ୍ମଣବାବୁ ।

"ବାପା ମାର୍କ୍ସଙ୍କ ମାନବବାଦ, ଗାନ୍ଧିଜୀଙ୍କ ଅହିଂସା ଓ ପ୍ରେମ ଏବଂ ଜୟପ୍ରକାଶ ଲୋହିଆ ଆମ୍ବେଦକରଙ୍କ କ୍ଷମତାର ବିକେନ୍ଦ୍ରୀକରଣ ଓ ଭାତୃତ୍ୱକୁ ଆଧାର କରି ସମଗ୍ର ବିଶ୍ୱରେ ଶାନ୍ତି ଓ ପ୍ରଗତି

ପାଇଁ ଏକ ନୂତନ ଚିନ୍ତାର ସୂତ୍ରପାତ ହେଉଛି । ଏହି ଚିନ୍ତାର ଆଲୋକ ଦିନେ ନା ଦିନେ ସମଗ୍ର ବିଶ୍ୱକୁ ଆଲୋକିତ କରିବ । ଏହି ଆଲୋକ ବିଚ୍ଛୁରି ଦେବା ପାଇଁ ଠିକ୍ ସମୟରେ ଉପଯୁକ୍ତ ନେତୃତ୍ୱ ଆବିର୍ଭାବ ଘଟିବ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି-

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
+ + + + + +
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭାବାମି ଯୁଗେ ଯୁଗେ"

ଲକ୍ଷ୍ମଣବାବୁଙ୍କ ମୁଖ ମଣ୍ଡଳରେ ଆଶା ଅଶ୍ୱାସନାର ଉଜ୍ଜ୍ୱଳତା ଫୁଟି ଉଠିଲା ନିଉଟନ ଲ ଅଫ୍ ଗ୍ରାଭିଟି ଆବିଷ୍କାର କଲାଭଳି ଉତ୍‌ଫୁଲ୍ଲିତ କଣ୍ଠରେ କହି ଚାଲିଲେ "ଏହାହିଁ ତାହାହେଲେ ହେବ, ସାମ୍ୟବାଦର ତୃତୀୟ ବିଗ୍ରହ- ତୃତୀୟ ବିପ୍ଳବର ରୂପ, ନୂତନ ସୂର୍ଯ୍ୟୋଦୟ । ସୋଭିଏଟ୍ ୟୁନିୟନର ପତନ ବେଳେ ମୁଁ ମର୍ମାହତ ହୋଇ ଭାବିଥିଲି, ୧୭୮୯ରେ ଯୁଗାନ୍ତକାରୀ ପ୍ରଥମ ବିପ୍ଳବ ଫରାସୀ ବିପ୍ଳବ ଗଲା, ୧୯୧୯ରେ ଦ୍ୱିତୀୟ ବିପ୍ଳବ, ରୁଷିଆରେ ସାମ୍ୟବାଦ ସଂଘଟିତ ହୋଇଥିଲା । ତୃତୀୟ ବିପ୍ଳବ କେବେ ? ଏ ଯୁଗାନ୍ତକାରୀ ବିପ୍ଳବର ରୂପରେଖ ମୋ ପାଖରେ ଥିଲା ଅସ୍ପଷ୍ଟ । କିନ୍ତୁ ଏକ ଦୁର୍ବାର ଆଶା ମୋତେ ସମ୍ମୋହିତ କରି ରଖିଥିଲା, ଏଯାବତ୍ । ଆଜି ତୁମେ ସେ ବିପ୍ଳବର ଆଭାସ ଦେଉଛ । ମଣିଷର ଉନ୍ନତ ମନ ନିଶ୍ଚେ ଏହାକୁ ବାସ୍ତବ ରୂପ ଦେବ, ବାସ୍ତବ ରୂପ ଦେବ" ଆଶାବିଶ୍ୱାସରେ ପ୍ରଜ୍ୱଳିତ ଲକ୍ଷ୍ମଣବାବୁଙ୍କ ମୁଖ ମଣ୍ଡଳକୁ ବିସ୍ମୟର ସହ ଚାହିଁ ରହିଥିଲେ ଜ୍ୱାଇଁ ସହଦେବ ।

- - - -

ହୃଦରୋଗ ବିଭାଗରେ ଏକ କୋଠରୀରେ ଶଯ୍ୟାଶାୟୀ ଲକ୍ଷ୍ମଣବାବୁ । ଯନ୍ତ୍ରଣାରେ ଅସ୍ଥିର । ଏକଡ ସେକଡ ଲେଉଟାଇ ଚାହୁଁଛନ୍ତି ଚାରିପାଖ ଲୋକଙ୍କୁ । ଆଖିବୁଜି ପୁଣି ଚୁପ୍ ହୋଇ ରହୁଛନ୍ତି । ତାଙ୍କୁ ଘେରି ରହିଛନ୍ତି ପୁଅ ବୋହୂ, ଝିଅ ଜ୍ୱାଇଁ, ଭଣଜା ଭଣଜାବୋହୂ, ପୁତୁରା ଓ ନାତି । ସେବା କରୁଥିବା ଚାକର ପିଲାଟି । ବେଳେ ବେଳେ ବିଡ଼ିବିଡ଼େଇ କ'ଣ କହିଯାଉଛନ୍ତି, କିଛିଟା ସ୍ପଷ୍ଟ କିଛି ଅସ୍ପଷ୍ଟ । ଆଖି ଖୋଲିଲେ ଲକ୍ଷ୍ମଣବାବୁ । ପାଦ ପାଖରେ ଛିଡା ହୋଇଛନ୍ତି ଝିଅ ସସ୍ମିତା ଓ ବୋହୂ ନନ୍ଦିତା । ପ୍ରାଣଭରି ଭଲ ପାଆନ୍ତି ଏ ଦୁହିଁଙ୍କୁ, ହାତଠାରି ଡାକିଲେ ପାଖକୁ । ଅଶ୍ରୁଳ ନୟନରେ ସସ୍ମିତା ନନ୍ଦିତାର କମରକୁ ଦୁଇ ହାତରେ କୁଣ୍ଢାଇ ଧରିଲେ କିଛି ସମୟ । ଝିଅ ବୋହୂଙ୍କ ଆଖିରୁ ଲୁହ ଝରି ଯାଉଥାଏ । ସମସ୍ତେ ନିର୍ବାକ । ଜ୍ୱାଇଁ ସହଦେବ ବାବୁଙ୍କୁ ଲକ୍ଷ୍ୟ କରି କହିଲେ : "I have struggle for life for three days, day and night, ଏଥର ବୋଧହୁଏ ଶେଷ ଯାତ୍ରା" । 'ନା ବାପା ଆପଣ ନିଶ୍ଚୟ ଭଲ ହୋଇଯିବେ' କହିଲେ ସହଦେବ ବାବୁ ।

ଟିକିଏ ପରେ ଆଖିବୁଜି ଲକ୍ଷ୍ମଣ ବାବୁ ପ୍ରଳାପ କରି ଚାଲିଲେ "ଦେଖ ଦେଖ, ଅନ୍ଧାର କାଟି

ଗୋଟିଏ ଆଲୋକ ରେଖା ଆସି ଯାଉଛି, ମୁଁ ଧରି ପାରୁନାହିଁ ଏ ରଶ୍ମିକୁ । ମୋର ଆଖି ଫିଟୁନି । କିଏ ଅଛରେ ତୁମେ, ଏ ଆଲୋକ ରଶ୍ମିକୁ ନେଇ ଗାଁଏଁ ଗାଏଁ ଦେଶେ ଦେଶେ ବିଛୁରି ଦିଅ । ଚନ୍ଦ୍ରକିରଣ ପରି ଶୀତଳ ଆମୋଦଦାୟକ, ସୂର୍ଯ୍ୟାଂଶୁପରି ଶୁଭ୍ର ପ୍ରାଣମୟ । ଏ ଆଲୋକରେ ସମସ୍ତଙ୍କ ଜୀବନ ହେବ ସ୍ୱଚ୍ଛ ସୁନ୍ଦର ସୁଖମୟ । ମୁଁ ନଥିବି । ତୁମେ ଆକୁ ସ୍ୱାଗତ କର ।''

(ଅଠେଇଶ)

''ହବେ ହବେ ଆଲୋକ ହବେ ଅନ୍ଧାର ଯାବେ କେଟେ
ତୋମାର ବାନୀ ସୋନାର ଧାରା ପଡ୍‌ବେ ଆକାଶ ଫେଟେ''

(ରବୀନ୍ଦ୍ରନାଥ)

ଆକାଶରେ ଆଷାଢର କଳା ବାଦଲ ଖଣ୍ଡ ଖଣ୍ଡ ହୋଇ ଭାସି ଯାଉଥାଏ । ସବୁରି ମନରେ ବିଷାଦର ଛାୟା, ଲକ୍ଷ୍ମଣ ବାବୁଙ୍କର ପୁଅ ବୋହୂ, ଝିଅ ଜୋଇଁ; ଭଣଜା ଭାଣିଜୀ, ପୁତୁରା ବୋହୂ କାହିଁ କେତେ ଦୂରରୁ ଆସି ସହର ରୂପେ ମୁଣ୍ଡ ଟେକୁଥିବା ପଲ୍ଲୀ ଗାଁର ପ୍ରଶସ୍ତ ଘରେ ଗହଳି କରିଛନ୍ତି । ଛୋଟ ବଡ ନାତି ନାତୁଣୀ, ଅଣନାତିମାନଙ୍କ କିଚିରିମିଚିରି ଶବ୍ଦରେ ବରଗଛ ପରି ମେଲି ଯାଉଥିବା 'ଶ୍ରୀମ୍ନା କୁଟୀର' ନାମକ ଗୃହଟି ମୁଖରିତ । ମାତ୍ର ଲକ୍ଷ୍ମଣ ବାବୁ ନାହାଁନ୍ତି । ଜୀବନ ସଂଗ୍ରାମର ଦୁର୍ଦ୍ଧର୍ଷ ସଙ୍ଗ୍ରାମୀ ବୀର ଲକ୍ଷ୍ମଣ ବାବୁ, ମୃତ୍ୟୁ ସହିତ ଦୀର୍ଘ ଚାରିଦିନ ଅହୋରାତ୍ର ସଂଗ୍ରାମ କରି ପରାଜିତ ସୈନିକ ରୂପେ ଅନ୍ତରିତ ହୋଇଛନ୍ତି, ଅନ୍ୟ କେଉଁ ଅଜଣା ଦେଶକୁ । ଯେଉଁଠୁ କେହି ଫେରେନା, କି କିଛି ସମ୍ବାଦ ଆସେନା । ତାଙ୍କର ନିଜ ହାତଗଢା ଇହଜୀବନର ଶେଷ ଆଶ୍ରୟ ସ୍ଥଳୀରେ ଖୁନ୍ଦି ହୋଇ ରହିଛି ଅଭିଭାସ୍ମୃତି, ନିବିଡ ସ୍ନେହ, ପ୍ରେମ, ହସକାନ୍ଦ, ଦୟା, ଅନୁକମ୍ପା, ଆଦର୍ଶ ଜୀବନଚର୍ଯ୍ୟାର ମୁଗ୍ଧକାରୀ ମହକ । ଲକ୍ଷ୍ମଣବାବୁଙ୍କ ଅନୁପସ୍ଥିତିରେ ତାଙ୍କର ଜ୍ଞାତିକୁଟୁମ୍ବ ସାଙ୍ଗସାଥୀ ରାଜନୀତିକ ଅନୁଚରବର୍ଗ ବିଷାଦ ଗମ୍ଭୀର ବାତାବରଣ ଭିତରେ ଆଘ୍ରାଣ କରୁଥିଲେ ସେହି ବର୍ଣ୍ଣାଢ୍ୟସ୍ମୃତିର ଉଲ୍ଲସିତ ମହକ । ଅବସରପ୍ରାପ୍ତ ଜାମାତା କବି, ଦାର୍ଶନିକ ସହଦେବ ବାବୁ ନିରାସକ୍ତ ମନରେ କାଳର ପ୍ରବାହମାନତା କଥା ଭାବି ଚାଲୁଥିବା ବେଳେ ହୃଦୟରେ ତାଙ୍କର ଅନୁରଣିତ ହେଉଥାଏ, "I have struggled for life since last four days, day and night, ଏଥର ବୋଧେ ଶେଷଯାତ୍ରା ।'' ଶ୍ୱାସଯନ୍ତ୍ରଣାର ଉପଶମ ପାଇ ଆଶ୍ୱସ୍ତିରେ କହିଥିବା ''ବଞ୍ଚିଗଲି'' ଏଗାର ଦିନ ତଳେ ପରିଣତ ୮୮ ବର୍ଷ ବୟସରେ ଶ୍ୱଶୁରଙ୍କ ମୁଖରୁ ନିଃସୃତ ଏହି ବାକ୍ୟ ଗୁଡିକ ସହଦେବ ବାବୁଙ୍କୁ ମନେ ପକେଇ ଦେଉଥାଏ, ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାବ ଗମ୍ଭୀର ଲଳିତ କବିତାର କେତୋଟି ପଙ୍‌କ୍ତି ''ମରିତେ ଚାଇନା ଆମି ସୁନ୍ଦର ଭୁବନେ, ମାନବେର ମାଝେ ଆମି ବାଞ୍ଚିବାର ଚାଇ'' ଲକ୍ଷ୍ମଣବାବୁ ମଣିଷକୁ ଭଲ ପାଉଥିଲେ, ଭଲ ପାଉଥିଲେ ଦୀନ ଦରିଦ୍ର ଶ୍ରମିକ, କୃଷକ, ସରଳ ଅକୃତ୍ରିମ ମଣିଷକୁ, ପ୍ରକୃତିର ବାସ୍ତବ ସନ୍ତାନକୁ, ସେଇଥିପାଇଁ ସେ ଥିଲେ ସାମ୍ୟବାଦୀ, ମାର୍କ୍ସଙ୍କ ଚିନ୍ତା ଚେତନାର ନିଷ୍ଠାପର ଉପାସକ । ଜୀବନ ଦର୍ଶନ ଓ ରାଜନୈତିକ-ସମାଜିକ ଚିନ୍ତାଧାରାର ସମାନ ଢେଉରେ ଭାସୁଥିବା

ସହଦେବ ବାବୁ ଅନ୍ତର ସହିତ ଶ୍ରଦ୍ଧାଭକ୍ତି କରୁଥିଲେ ଶଶୁର ଲକ୍ଷ୍ମଣବାବୁଙ୍କୁ । ପ୍ରତିବଦଳରେ ତାଙ୍କ ଠାରୁ ପାଉଥିଲେ ଅମାୟିକ ସ୍ନେହ । ଅକୃତ୍ରିମ ପ୍ରଂଶସା ଓ ପ୍ରେରଣା । ସେଇଥିପାଇଁ ସେ ଶଶୁରଙ୍କ ଏହି ଘରକୁ ଆସିଲେ ପ୍ରଚୁର ଆନନ୍ଦ ପାଆନ୍ତି । ଘରକୁ ଘେରି ବାଉ ବଗିଚା, ପୋଖରୀ ଧାନବିଲ, ସବୁଜ ପତ୍ରର ମର୍ମର, ମୁକ୍ତ ସ୍ୱଚ୍ଛନ୍ଦ ସୁଲୁସୁଲିଆ ପବନ, ସହଦେବ ବାବୁଙ୍କ କବିମାନସକୁ ଆକର୍ଷି ନିଏ । ବିବାହିତ ଜୀବନର କେତେ ମଧୁର ରୋମାଞ୍ଚକର ସ୍ମୃତି ଗୁମ୍ଫି ହୋଇ ରହିଛି ଏଠି । ଏହି ବାସଗୃହଟି ଭାରତୀୟ ସହାବସ୍ଥାନ ଦର୍ଶନର ଏକ ପ୍ରତୀକ ଭଳି ମନେ ହୁଏ । ସେହି ମଧୁମୟ ବାସଗୃହଟି ଗୃହସ୍ଥର ଅବର୍ତ୍ତମାନରେ କି ରୂପ ନେବ ଆଗାମୀ ଦିନରେ ? ଆଜୀବନ ସାମ୍ୟବାଦୀ ଶ୍ରମିକ ଓ ପ୍ରଜା ଆନ୍ଦୋଳନର ନିଃସ୍ୱାର୍ଥପର ନେତା ଶୈଳେନ୍ଦ୍ରବାବୁ ଆସିଛନ୍ତି ଦଶାହ କର୍ମକୁ । ଶୈଳେନ୍ଦ୍ର ବାବୁଙ୍କ ଦୁଃସାହସିକ ବୈପ୍ଳବିକ କାର୍ଯ୍ୟ ସମ୍ବନ୍ଧରେ କିଛିଟା ଶୁଣିଥିଲେ ସହଦେବ ବାବୁ । ବହୁ ଦିନ ତଳେ କେବେ ଦେଖା ସାକ୍ଷାତ ହୋଇଥିଲା ତାଙ୍କ ସହିତ । ହଠାତ୍ ଚିହ୍ନି ପାରିଲେ ନାହିଁ ସହଦେବବାବୁ, ଶାଳକ ପରିଚୟ କରାଇଦେଲେ । ନମସ୍କାର ପ୍ରତି ନମସ୍କାର ପରେ ବିଭିନ୍ନ ବିଷୟରେ ଆଳାପ ଆରମ୍ଭ ହେଲା । ଅଶୀତିପର ବୟସ୍କ ଶୈଳେନ୍ଦ୍ରବାବୁ କଳା ମୁଗୁନି ପଥରର ଦେହ ଧରି ଏବେ ବି ବେଶ୍ ଶକ୍ତ ଅଛନ୍ତି । ମାଇଲ୍ ମାଇଲ୍ ଧରି ଚାଷ ବିଲ ବାଟରେ ଚାଲି ପାରୁଛନ୍ତି । ସଂଗ୍ରାମର ସ୍ଫୁଲିଙ୍ଗ ନିଷ୍ପ୍ରଭ ହୋଇ ଯାଇଥିଲେ ହେଁ ସଂପୂର୍ଣ୍ଣ ଲିଭିଯାଇନି । ଏବେ ମଧ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଜଣେ ସକ୍ରିୟ ସଭ୍ୟ । ଜଣେ ଅନ୍ତରଙ୍ଗ କମ୍ରେଡର ଏକାଦଶାହ ଉତ୍ସବରେ ତାଙ୍କର ସ୍ମୃତିଚାରଣ କରି ହୃଦୟର ଗଭୀର ଶ୍ରଦ୍ଧା ଜଣାଇବାକୁ ଧାଇଁ ଆସିଛନ୍ତି ସୁଦୂର ମଫସଲରୁ । ଆସିଛନ୍ତି ଅନ୍ୟତମ ସାଥୀ ଅନୁଜ ପୀତବାସ ପୂର୍ବତନ ବିଧାୟକ ଓ ଅନ୍ୟମାନେ । ସହଦେବ ବାବୁ କୌତୁହଳୀ ହୋଇ ଉଠିଲେ, ଶଶୁରଙ୍କ ଅନ୍ତରଙ୍ଗ ବନ୍ଧୁ ସମବୟସ୍କ ସଂଗ୍ରାମୀ ଶୈଳେନ୍ଦ୍ରବାବୁଙ୍କ ମୁହଁରୁ ପ୍ରିୟ ଶ୍ୱଶୁରଙ୍କ ଅତୀତ ଜୀବନ ବିଷୟରେ କିଛି ଜାଣିବାକୁ, ଏବଂ ତାଙ୍କ ବିଷୟରେ ଜାଣିବା ପ୍ରକ୍ରିୟାରେ ରୋମାଞ୍ଚକର ଅତୀତର ବହୁବିଧ ସଂଗ୍ରାମର ବୈଚିତ୍ର୍ୟମୟ ଦୃଶ୍ୟର ଏକ ଆଭାସ ପାଇବାକୁ ।

ଶୈଳେନ୍ଦ୍ରବାବୁ କହି ଚାଲିଥାନ୍ତି "ଦ୍ୱିତୀୟ ମହାଯୁଦ୍ଧର ଘନଘଟା, ପୁରୀ କଟକ ବାଲେଶ୍ୱର ଉପକୂଳ ଅଞ୍ଚଳର ପ୍ରଶାନ୍ତ ଆକାଶରେ ଉଡାଜାହାଜ ଚକ୍ରର ଘୁଁ ଘୁଁ ଶବ୍ଦ ଶୁଣାଯାଉଥାଏ । ଜାପାନର ଆକ୍ରମଣରେ ଭାରତ ସରକାର ବିଶେଷତଃ ପୂର୍ବ ଭାରତ ବିପଦଗ୍ରସ୍ତ । ସୁଭାଷ ବୋଷ ଭାରତ ତ୍ୟାଗ କରି ଜର୍ମାନୀ ଓ ଜାପାନ ପ୍ରଭୃତି ଅକ୍ଷ ଶକ୍ତି ସହିତ ହାତ ମିଳାଇ ବ୍ରିଟେନ୍ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥାନ୍ତି । ବର୍ମା ରେଙ୍ଗୁନ୍ ପଟୁ ଭାରତ ଆକ୍ରମଣ କରି ଭାରତକୁ ବ୍ରିଟିସ୍ କବଳରୁ ମୁକ୍ତ କରିବାକୁ ଇଂରେଜ ସରକାର ବିରୁଦ୍ଧରେ ଗଣ ଆନ୍ଦୋଳନ ଓ ସଶସ୍ତ୍ର ଅଭିଯାନ ଚଳାଇବା ପାଇଁ ଗୋପନରେ ଆମେ ସଙ୍ଗଠନ କରି ଚାଲିଥାଉଁ । ଅଗଷ୍ଟ ବିପ୍ଳବ ପୂର୍ବରୁ ପୁଲିସର ତୀକ୍ଷ୍ଣ ଦୃଷ୍ଟି ଥାଏ ଆମ୍ଭମାନଙ୍କ ଉପରେ । ମୁଁ ସ୍ୱାଧୀନତା ସଂଗ୍ରାମ ପାଇଁ ଉପକୂଳ ଅଞ୍ଚଳ ବା ମୋଗଲବନ୍ଦୀ ଅଞ୍ଚଳର ଲୋକଙ୍କୁ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ ଦେଶୀୟ ରାଜ୍ୟ ନୀଳଗିରିରେ ପ୍ରଜା ଆନ୍ଦୋଳନ ତୀବ୍ର କରିବା ପାଇଁ

ଆଦିବାସୀମାନଙ୍କୁ ସଶସ୍ତ୍ର ସଂଗ୍ରାମ କରିବାକୁ ମତାଉଥାଏ । ଏ ଉଭୟ କାର୍ଯ୍ୟ କରିବା ପାଇଁ ନୀଳଗିରି ଓ ବାଲେଶ୍ୱର (ବାହାନଗା) ଉପାନ୍ତରେ ଥିବା ବଡ ଗାଁ ନାମକ ଗ୍ରାମଟି ପ୍ରକୃଷ୍ଟ ସ୍ଥାନ ଥାଏ । ବଡ ଗାଁର ବଡଚାଷୀ ବନ୍ଧୁ କୃଷ୍ଣମୋହନଙ୍କ ଘରେ ଆତ୍ମଗୋପନ କରୁଥାଏ, ତାଙ୍କର ସହଧର୍ମିଣୀ ଆମର ଆଦରର ଭାଉଜ ଅତି ସ୍ନେହୀ ଓ ସେବାପରାୟଣା । କୃଷ୍ଣମୋହନଙ୍କର ପ୍ରଶସ୍ତ ଆଟୁ ଘର ଥାଏ । ସେ ସମୟରେ ଗ୍ରାମାଞ୍ଚଳର ଜମିଦାର ପରିବାରକୁ ପୁଲିସ୍‌ମାନେ ସମିହ ଓ ସମ୍ମାନ କରୁଥାନ୍ତି । ସେମାନେ ସରକାରଙ୍କ ସନ୍ଦେହର ବଳୟ ବାହାରେ ଥାନ୍ତି । ବିନା କୁଣ୍ଠାରେ ଭାଉଜ (କୃଷ୍ଣମୋହନଙ୍କ ସହଧର୍ମିଣୀ) ଆମର ଯତ୍ନ ନେଉଥାନ୍ତି । ମୋ ଭଳି କେତେକ ଦିନ ବେଳା ଘରର ଚୌହଦୀ ଭିତରେ ଲୁଚିରହୁଁ । ରାତିରେ ସଙ୍ଗୀତ ଚର୍ଚ୍ଚା ଓ ବନ୍ଧୁତାର ସଂଳାପରେ ଜୀବନର ପ୍ରାକୃତିକ ପ୍ରବୃତ୍ତି ମେଣ୍ଟିଯାଏ । ଆପଣଙ୍କ ଶ୍ୱଶୁର ଲକ୍ଷ୍ମଣବାବୁ ବାହାନଗା ରେଳ ଷ୍ଟେସନ ମାଷ୍ଟର । ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ । ବେଶ୍ ସଙ୍ଗୀତ ପ୍ରିୟ, ହାରମୋନିଅମ୍ ବେହେଲା ବଜାଇ ସୁନ୍ଦର ଗୀତ ବୋଲନ୍ତି । ଶାଳକ କୃଷ୍ଣମୋହନଙ୍କ ଘରକୁ ଆସନ୍ତି, ସଙ୍ଗୀତ ଆସରରେ ଯୋଗ ଦେବାକୁ ଏବଂ ଆମ୍ଭମାନଙ୍କ ସହିତ ଗୋପନ ସମ୍ପର୍କ ରଖିବାକୁ । ତାଙ୍କ ମାଧ୍ୟମରେ ଆମର ବାର୍ତ୍ତା ସବୁ ଚାଲିଯାଏ ବହୁ ଦରଦୀ ସମର୍ଥକ ଓ ସହଚର ସାଥୀମାନଙ୍କ ପାଖକୁ । ଆତ୍ମଗୋପନକାରୀ ସଂଗ୍ରାମୀମାନେ, ପାଖାପାଖି ଗାଁରେ ବିଭିନ୍ନ ଲୋକଙ୍କ ଘରେ ଥା'ନ୍ତି ସମସ୍ତ ଘରେ ଖାଇବାର ସୁବିଧା ନଥାଏ । ଦୟାଳୁ କୃଷ୍ଣବାବୁ ଲକ୍ଷ୍ମଣବାବୁ ଆତ୍ମଗୋପନକାରୀଙ୍କୁ ଭାଉଜଙ୍କ ହାତ ରନ୍ଧା ଖାଦ୍ୟ ଦେଇ ଆସନ୍ତି ।

ପୁଲିସ ଆଖିରେ ଧୂଆଁ ଦେଇ ମାସ ମାସ ବର୍ଷ ବର୍ଷ ଆତ୍ମଗୋପନ କରି ରହିଛୁ । ମୁଁ ଏକାଦିକ୍ରମେ ପ୍ରାୟ ୬ ବର୍ଷ ଆତ୍ମଗୋପନ କରି ରହିଥିଲି, ୧୯୪୦ରୁ ୧୯୪୬ ପର୍ଯ୍ୟନ୍ତ । ସହଦେବ ବାବୁ ସ୍ତମ୍ଭିତ । କୌତୁହଳ ସମ୍ବରଣ କରି ନ ପାରି ପଚାରିଲେ "ଆପଣ କେବେ ପୁଲିସ୍ ହାତରେ ଧରାପଡିବା ଅବସ୍ଥାର ସମ୍ମୁଖୀନ ହୋଇ ନାହାଁନ୍ତି ? ସେପରି ସ୍ଥଳେ କିପରି ପୁଲିସକୁ ଏଡାଇ ଯାଇଛନ୍ତି ?"

ଶୈଳେନ୍ଦ୍ର ବାବୁଙ୍କ ମୁଖମଣ୍ଡଳରେ ଏକ ରହସ୍ୟମୟ ତୃପ୍ତି ଓ ଗର୍ବର ହସ ଫୁଟି ଉଠିଲା; ସେ ଆରମ୍ଭ କଲେ: "ପୁଲିସର ଦୃଷ୍ଟି ଏଡାଇବା ପାଇଁ ମୁଁ ବିଭିନ୍ନ କୌଶଳ ଅବଲମ୍ବନ କରିଛି । ମୋ ପାଖରେ ବିଭିନ୍ନ ପୋଷାକ ଥାଏ, ମୁସଲମାନୀ ମୌଲବୀ ପୋଷାକ, ଧଳାଦାଢି ଠାରୁ ମଫସଲି ସ୍ତ୍ରୀଲୋକ ଏପରିକି ଆଦିବାସୀ ସ୍ତ୍ରୀ ଲୋକର ପୋଷାକ ଥାଏ । ଥରେ ଏକ ସଙ୍କଟମୟ ପରିସ୍ଥିତି ଉପୁଜିଲା । ମୁଁ ଆଦିବାସୀବହୁଳ ଗ୍ରାମର ଏକ ସର୍ଦ୍ଦାରର ଘରେ ଆତ୍ମଗୋପନ କରିଥାଏ । ରାତି ପାହାନ୍ତାରେ ପୁଲିସ ଘରକୁ ଘେରାଉ କରିଦେଲା, ମୋତେ ଧରିବା ପାଇଁ । ଗୃହ ମାଲିକ ବଡ ଚିନ୍ତିତ, ଭୟଭୀତ । ମୁଁ ସଙ୍ଗେ ସଙ୍ଗେ ନିଜକୁ ଜଣେ ଆଦିବାସୀ ସ୍ତ୍ରୀ ଲୋକ ପରି ସଜେଇ ଦେଲି । ଆଦିବାସୀ ସ୍ତ୍ରୀଲୋକମାନେ ଦୂର ଝରଣାକୁ ସକାଳେ ପାଣି ଆଣିବାକୁ ଯାଆନ୍ତି ମାଠିଆ ଧରି । ସର୍ଦ୍ଦାରଙ୍କ ଘରର ଓ ପାଖ ପଡିଶା ଘରର ବୋହୂମାନଙ୍କ ସହିତ ଦୂର ଝରଣାକୁ ପାଣି ଆଣି ଚାଲିଲି । ସକାଳେ ସର୍ଦ୍ଦାରଙ୍କ

ଘର ଖାନ୍‌ତଲାସ୍ କଲେ । ପଞ୍ଜୁରି ଛାଡି ଖୋଜା ପକ୍ଷୀଟି ନାରୀ ସାଜି ନୀଳ ଘଞ୍ଚ ଅରଣ୍ୟ ଭିତରକୁ ଉଡିଗଲାଣି, ଦାରୋଗା ବାପୁଡା ଜାଣି ପାରିଲେ ନାହିଁ ।''

ମନ୍ତ୍ରମୁଗ୍ଧ ଭଳି ଶୁଣି ଯାଉଥିଲେ ସହଦେବ ବାବୁ ଜଣୈକ ସ୍ୱଚ୍ଛ ଶିକ୍ଷିତ ସ୍ୱାଧୀନତା ସଂଗ୍ରାମୀର ଉତ୍ସର୍ଗିତ ଜୀବନର ବିପ୍ଲବ କାହାଣୀ-ନେତାଜୀଙ୍କ ପଟ ଶିଷ୍ୟ ଜାତୀୟ କଂଗ୍ରେସର ଜଣେ ଦୁଃସାହସୀ ସୈନିକ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ କିପରି ଅନ୍ତର୍ଭୁକ୍ତ ହେଲେ, ଜାଣିବାକୁ ଉତ୍କଣ୍ଠିତ ହୋଇ ପଡିଥିଲେ ସହଦେବ ବାବୁ । 'ଗାନ୍ଧୀବାଦରୁ ସାମ୍ୟବାଦକୁ ଲମ୍ଫ ଦେବା ମୂଳରେ କି କାରଣ ନିହିତ ଥିଲା କହିବେ କି ଶୈଳେନ୍ଦ୍ର ବାବୁ ?'' ପ୍ରଶ୍ନ କଲେ ସହଦେବ ବାବୁ । ରାଜନୀତିର ଦର୍ଶନର ତର୍କ ବିତର୍କ ଠାରୁ ଦୂରେଇ ରହିଥିବା ତତ୍ତ୍ୱପ୍ରତି କ୍ୱଚିତ୍ ମନୋନିବେଶ କରିଥିବା କର୍ମ ପ୍ରବଣ ଶୈଳେନ୍ଦ୍ର ବାବୁ କିଛି ସମୟ ଚୁପ୍‌ରହି ଆରମ୍ଭ କଲେ । ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲାବେଳେ ମୁଁ ଗାନ୍ଧୀବାଦ କି ଅହିଂସା ହିଂସା ନୀତିର ସୂକ୍ଷ୍ମତାତ୍ତ୍ୱିକ ପ୍ରଭେଦ ସମ୍ବନ୍ଧରେ ବିଶେଷ ଅବଗତ ନଥିଲି, ସୁବାସ ବୋଷଙ୍କ ବୀରତ୍ୱ ଦୁଃସାହସିକ କର୍ମ ଆମକୁ ଉଦ୍‌ବୁଦ୍ଧ କରିଥିଲା । ଦେଶର ଆଶୁ ମୁକ୍ତି ଓ ଦେଶବାସୀଙ୍କ ଦୁରବସ୍ଥାର ନିରାକରଣ ଆମ ଜୀବନର ଥିଲା ପ୍ରଧାନ ଲକ୍ଷ୍ୟ । ସୁବାସ ବୋଷଙ୍କ ମୃତ୍ୟୁ ସମ୍ବାଦ ଆମ୍ଭମାନଙ୍କୁ ବିଚଳିତ କରି ଦେଇଥିଲା । ତାଙ୍କ ଭଳି ସଂକଳ୍ପବଦ୍ଧ ସଂଗ୍ରାମୀ, ଜନତାର ଆଶାର ପ୍ରତୀକ ଆମେ ଅନ୍ୟ କେଉଁ ଭାରତୀୟ ନେତାଙ୍କ ଠାରେ ଦେଖିବାକୁ ପାଉ ନଥିଲୁଁ । ସୋଭିଏଟ୍ ରୁଷିଆର ସାମାଜିକ, ଅର୍ଥନୈତିକ ଦ୍ରୁତ ବିକାଶ ଆମ୍ଭମାନଙ୍କୁ ବିମୁଗ୍ଧ କରିଥିଲା । ଚାଷୀମୂଲିଆ ମଜଦୂର ଶ୍ରେଣୀର ଆସ୍ଥାଭାଜନ ହୋଇ ଉଠିଥିଲା ସାମ୍ୟବାଦୀ ରାଷ୍ଟ୍ର ରୁଷିଆ ଓ ତାର ନୀତିର ପ୍ରବକ୍ତା ଭାରତୀୟ ନେତା ଡାଙ୍ଗେ, ନମ୍ବୁଦ୍ରିପଦ, ଏମ୍.ଏନ୍. ରାୟ । କାରାଗାରରୁ ମୁକ୍ତିଲାଭ ପରେ ମୋର ଧାରଣା ହେଲା, ଦେଶ ତ ଦିନେ ନା ଦିନେ ସ୍ୱାଧୀନ ହେବ, ମାତ୍ର ସ୍ୱାଧୀନ ଭାରତରେ ସାମ୍ୟବାଦ ବିନା ଗରିବ ଖଟିଖିଆ ମଣିଷର ଭାଗ୍ୟ ପରିବର୍ତ୍ତନ ହେବ ନାହିଁ । ସେହି ପରିବର୍ତ୍ତନର ପଥ ପରିଷ୍କାର କରିବା ପାଇଁ ଶ୍ରେଣୀ ସଂଘର୍ଷ ମାଧ୍ୟମରେ କୃଷକ ଓ ଶ୍ରମିକ ଆନ୍ଦୋଳନକୁ ଶକ୍ତିଶାଳୀ କରିବାକୁ ହେବ । ମୋ ଅଞ୍ଚଳର ଗରିବ ଲୋକମାନଙ୍କ ଉପରେ ଜମିଦାର, ମହାଜନମାନଙ୍କ ଅତ୍ୟାଚାର ମୋତେ ମର୍ମାହତ କରୁଥିଲା । ଏହି ଦୁର୍ଦ୍ଦଶାର ଅବସାନ ପାଇଁ ସାମ୍ୟବାଦର ଆଶ୍ରୟ ନେବାକୁ ଆମେ ସ୍ଥିର କଲୁଁ । ସାଥି ବନମାଳୀ ଦାସ, ଗଜେନ୍ଦ୍ର ଦାସ ଓ ଲକ୍ଷ୍ମଣବାବୁଙ୍କ ନେତୃତ୍ୱରେ ଆମେ କେତେଜଣ ଯୋଗ ଦେଲୁ କମ୍ୟୁନିଷ୍ଟ ପାର୍ଟିରେ । ସେଇ ଦିନ ଠାରୁ ଲକ୍ଷ୍ମଣବାବୁ ହେଲେ ଆମର କମ୍ରେଡ, ଶ୍ରମିକ ସଙ୍ଗଠନର ଜଣେ ସହକର୍ମୀ ନେତା ।

ସହଦେବ ବାବୁ ଭାରତର ସୋସାଲିଷ୍ଟ ପାର୍ଟି ଓ ତାର କୃଷକ ଆନ୍ଦୋଳନ ସମ୍ପର୍କରେ କିଛିଟା ଜାଣିଥିଲେ । କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଯେ ବାଲେଶ୍ୱର ଜିଲ୍ଲାରେ ଚାଷୀ ଆନ୍ଦୋଳନ ତୀବ୍ରତର ହୋଇଥିଲା, ତା' ସେ ଜାଣିନଥିଲେ, କୌତୁହଳରେ ସେ ପ୍ରଶ୍ନ କଲେ ''ଆପଣ କମ୍ୟୁନିଷ୍ଟ ପାର୍ଟିର ପତାକା ଧରି ଏ ଅଞ୍ଚଳର ଚାଷୀ ଓ କ୍ଷେତମୂଲିଆର ମୁକ୍ତି ଆନ୍ଦୋଳନକୁ କେତେ ଦୂର ପ୍ରଭାବିତ କରିଥିଲେ ? ଅତୀତର ସେ କୃତିତ୍ୱ ଆପଣଙ୍କୁ ଆଜି ଆତ୍ମସନ୍ତୋଷ ଦେଉଛି କି ?'' କିଞ୍ଚିତ୍ ଚିନ୍ତା

ଗମ୍ଭୀର ସ୍ୱରରେ ଶୈଳେନ୍ଦ୍ର ବାବୁ କହି ଚାଲିଲେ "ସଂଗ୍ରାମୀର ସ୍ୱପ୍ନ ସବୁବେଳେ ସମ୍ପୂର୍ଣ୍ଣ ସାର୍ଥକ ହୁଏ ନାହିଁ । ତେବେ ଉତ୍ସର୍ଗିତ ନିଃସ୍ୱାର୍ଥପର ଆନ୍ଦୋଳନ ଯେ ସମାଜ ଓ ଅର୍ଥନୈତିକ ବ୍ୟବସ୍ଥାରେ ସଂସ୍କାରର ପ୍ରକ୍ରିୟାକୁ ଆପେ ଆପେ ଆଗେଇ ନିଏ, ଏହା ଅସ୍ୱୀକାର କରିହେବ ନାହିଁ ।" ଏହିକଥା ଆମକୁ ବାରମ୍ବାର କହୁଥିଲେ ସାଥୀ ଲକ୍ଷ୍ମଣବାବୁ । କି ବୃଦ୍ଧ କି ତରୁଣ ସମସ୍ତଙ୍କ ଦୃଷ୍ଟିରେ ଲକ୍ଷ୍ମଣ ବାବୁ ଥିଲେ ଅତ୍ୟନ୍ତ ସ୍ନେହୀ ଶ୍ରଦ୍ଧାଶୀଳ, ଆଦର୍ଶ ବ୍ୟକ୍ତିତ୍ୱ । ସାମ୍ୟବାଦର ଗୂଢ଼ତତ୍ତ୍ୱ ମର୍ମେ ମର୍ମେ ସେ ଉପଲବ୍ଧି କରୁଥିଲେ ଏବଂ ଅନ୍ୟମାନଙ୍କୁ ସଦାବେଳେ ଉତ୍ସାହ ପ୍ରେରଣା ଓ ଉପଦେଶ ଦେଉଥିଲେ । ତାଙ୍କର ଏକ ମହତବାଣୀ ଆମ ହୃଦୟରେ ରେଖାଙ୍କିତ ହୋଇ ରହିଛି । ସେ କହୁଥିଲେ "ସାଂସାରିକ ଭୋଗଲାଳସା, ଇନ୍ଦ୍ରୀୟ ବାସନା, ସାଂସାରିକ ମାନ ସମ୍ମାନ ଯଶ ପ୍ରତିଷ୍ଠା ଆଦି ଅଭିଳାଷ ତ୍ୟାଗ ନକଲେ ମହତ ଦର୍ଶନ ପ୍ରତିଷ୍ଠା ଓ ପ୍ରସାର ହୋଇ ପାରେ ନାହିଁ ।" ତାଙ୍କ ଦୃଷ୍ଟିରେ ସବୁଠୁଁ ମହତ ଦର୍ଶନ ଥିଲା, ମାର୍କ୍ସଙ୍କ ଦର୍ଶନ-ସାମ୍ୟବାଦ । ସାମ୍ୟବାଦର ପ୍ରତିଷ୍ଠା ଓ ପ୍ରସାର ପାଇଁ ତାଙ୍କ ଜୀବନ ଥିଲା ଉତ୍ସର୍ଗିତ । ସେ ବାରମ୍ବାର କହୁଥିଲେ : "ଗଡ଼ସିଂହ ଦରିଜାରେ ଠିଆହୋଇ ତୂରୀ ବଜାଇଲେ ଦୁର୍ଗ ପ୍ରାଚୀର ଭାଙ୍ଗିଯାଏନା । ପୁରଣା ବ୍ୟବସ୍ଥାକୁ ଭାଙ୍ଗି ନୂତନ ବ୍ୟବସ୍ଥା ଗଢ଼ିବାକୁ ହେଲେ ସଂଗ୍ରାମୀମାନଙ୍କୁ ପ୍ରାଣମୂର୍ଚ୍ଛା ଉଦ୍ୟମ ଓ ସୁଚିନ୍ତିତ କାର୍ଯ୍ୟାନୁଷ୍ଠାନ କରିବାକୁ ହେବ" । ତାଙ୍କର ଦୃଢ଼ ବିଶ୍ୱାସ ଥିଲା- ନାନା ବାଧା ବିଘ୍ନ ସତ୍ତ୍ୱେ ଉତ୍ଥାନ ପତନ ମଧ୍ୟ ଦେଇ ସାମ୍ୟବାଦର ଅମୃତବାଣୀ ମଣିଷର ହୃଦୟକୁ ଜୟ କରି ଚାଲିବ ।

ଲକ୍ଷ୍ମଣବାବୁଙ୍କ ସ୍ମୃତିରେ ନଇଁ ଆସିଲା ଦୁହିଁଙ୍କ ମୁଣ୍ଡ ଭକ୍ତିରେ ।



# ପରିଶିଷ୍ଟ

## ଜଣେ ଅଦମ୍ୟ ପ୍ରଶ୍ନବାଚୀ ଭାବୁକର ପ୍ରତୀକ ସାଥୀ ଲଛମନ

### ସାଥୀ ଲଛମନ

ବିଦ୍ରୋହୀ ୧୯୪୨ ଅକ୍ଟୋବର ମାସର ଏକ ସନ୍ଧ୍ୟା । ମୋ ବନ୍ଧୁ ବଡଗାଁ ନିବାସୀ ଶ୍ରୀ ରାଧାଶ୍ୟାମ ଦାସ ମୋତେ ନେଇ ପହଞ୍ଚାଇ ଦେଲେ ବାହାନଗା ଷ୍ଟେସନ୍‌ର ଏକ କ୍ବାର୍ଟରରେ । ମୋ ନାଁରେ ଅଟକ ୱାରେଣ୍ଟ ଥିଲା । ତେଣୁ ବିନା ଆଲୁଅରେ ଅନ୍ଧାର ଭିତରେ ଆମକୁ ଯିବାକୁ ପଡିଥିଲା । କ୍ବାଟରର କବାଟରେ ଥାପୁଡା ମାରିବାରୁ କବାଟ ଖୋଲିଲା । ଏକ ସଙ୍ଗେ ସ୍ୱାଗତ ନମସ୍କାର ଜଣାଇବାକୁ ଆଗେଇ ଆସିଲେ ୩/୪ ଜଣ ବନ୍ଧୁ । ମୁଁ ଜାଣିଥିଲି କାହା କ୍ବାଟର୍‌କୁ ଯାଉଛି । ସେମାନେ ମଧ୍ୟ ଜାଣିଥିଲେ ମୁଁ କିଏ ଓ କିଭଳି ପରିସ୍ଥିତି ମଧ୍ୟରେ ମୁଁ ସେଠାକୁ ଯାଉଛି, କେବଳ ପ୍ରତ୍ୟକ୍ଷ ପରିଚୟ ପୂର୍ବରୁ ନଥିଲା ।

### ପ୍ରଥମ ପରିଚୟ :

ସାମାନ୍ୟ ଥଟ୍ଟା-କୌତୁକ ଭିତରେ ଯେଉଁମାନଙ୍କର ପରିଚୟ କରାଇ ଦେଲେ ରାଧାଶ୍ୟାମ ବାବୁ ସେମାନେ ହେଲେ ଲଛମନ ବାବୁ, ସୋରୋରେ ଲୋକପ୍ରିୟ ପ୍ରଖ୍ୟାତ "ପାଗଳା ଡାକ୍ତର" ସୁରଞ୍ଜନ ଚକ୍ରବର୍ତ୍ତୀ, ତାଙ୍କ ସାନଭାଇ ଅକିଞ୍ଚନ ଓ "ବେଙ୍ଗ୍ ଦା"- ଭଦ୍ରଖ ଷ୍ଟେସନର goods clerk । ସେ ରାତିରେ ଆମ ସମସ୍ତଙ୍କର ରହଣି ଲଛମନଙ୍କ ବସାରେ । ଆମ ସମସ୍ତଙ୍କୁ ପାଇ ଲଛମନବାବୁଙ୍କ ଛାତି କୁଣ୍ଢେ ମୋଟ ହୋଇଯାଇଥିଲା ।

### ସୁଭାଷ ପନ୍ଥୀ :

ମୁଁ ଯିବା ଆଗରୁ ଯେଉଁମାନେ ସେଠାରେ ଏକଜୁଟ ହୋଇଥିଲେ ସେମାନେ ସମସ୍ତେ ସୁଭାଷ ପନ୍ଥୀ ଥିଲେ । ସେତେବେଳେ ଭାରତ ଛାଡ ଆନ୍ଦୋଳନ ବିଶୃଙ୍ଖଳ ଭାବରେ ହେଲେ ମଧ୍ୟ ଜୋର୍‌ସୋର୍‌ରେ ଚାଲିଥାଏ । କମ୍ୟୁନିଷ୍ଟମାନେ ଏହି ଆନ୍ଦୋଳନକୁ ସମର୍ଥନ କରୁନଥିଲେ । ମୁଁ ଥିଲି କମ୍ୟୁନିଷ୍ଟ । ସୁଭାଷପନ୍ଥୀମାନେ ଆନ୍ଦୋଳନର ରଣକୌଶଳକୁ ସମର୍ଥନ କରୁଥିଲେ, ମାତ୍ର ଏହା ଅସଂଗଠିତ ଓ ବିଶୃଙ୍ଖଳଥିବାରୁ ଏବଂ ଆଜାଦ୍ ହିନ୍ଦ୍ ଫୌଜ୍ ସହିତ କଂଗ୍ରେସ କୌଣସି ପ୍ରକାର ଯୋଗସୂତ୍ର ରଖୁନଥିବାରୁ ସେମାନେ ଆନ୍ଦୋଳନର ସଫଳତା ସମ୍ପର୍କରେ ସନ୍ଦିହାନ ଥିଲେ । ତେଣୁ ସେ ରାତିରେ ଗୁପ୍ତ ଆଲୋଚନା କିପରି ଜୋର୍‌ଦାର୍ ହୋଇଥିବ ଅନୁମାନ କରିବା ସହଜ । ପ୍ରଶ୍ନ ସମସ୍ତଙ୍କର । ଉତ୍ତର କେବଳ ମୋର । ମୁଁ ମଧ୍ୟ ପାର୍ଟିର ଲାଇନକୁ- ସମ୍ପୂର୍ଣ୍ଣ ନାସ୍ତିବାଚକ ବିରୋଧୀତାକୁ ସମର୍ଥନ କରୁ ନଥିଲି । "ଜନଯୁଦ୍ଧ"ର ଆନ୍ତର୍ଜାତିକ ବିଚାର ସହିତ ଭାରତୀୟ ପାର୍ଟିର ପ୍ରୟୋଗ ଶୈଳୀ

ମେଳ ଖାଉନଥିବାରୁ ଚିନ୍ତା ମୋର ଥିଲା । ମାତ୍ର ତାହା ପାର୍ଟି ବିରୋଧୀ ବୟାନ ଆକାରରେ ପ୍ରକାଶ ପାଉ ନଥିଲା ।

ଯାହାହେଉ ସରଳ ଓ ସାଥୀସୁଲଭ ଆଲୋଚନା ଭିତରେ ସେମାନଙ୍କର କମ୍ୟୁନିଷ୍ଟ ବିରୋଧୀତା ସେହି ରାତିରେ ଶେଷ ହେଲା । ବାହାନଗା ପାଖାପାଖି ଏକ ସ୍ଥାନରେ ରେଳ ଲାଇନ୍ ଉଠାଇ କୌଣସି ଏକ ମେଲ ବା ଏକ୍ସପ୍ରେସ୍ ଟ୍ରେନକୁ ଲାଇନଚ୍ୟୁତ କରିବାର କାର୍ଯ୍ୟକ୍ରମକୁ ବାତିଲ କରାଗଲା । ପ୍ରସ୍ତାବିତ ରେଳ ଧର୍ମଘଟକୁ ସଫଳ କରିବାର କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ସେଥିପାଇଁ ବେଙ୍କଟ୍‌ଦାଙ୍କ ଉପରେ ମୁଖ୍ୟ ଦାୟିତ୍ୱ ନ୍ୟସ୍ତ କରାଗଲା । ସେ ଦିନ ଜାଣିଲି ଲଛମନ ବାବୁଙ୍କ ଦେଶପ୍ରେମ, ସଂଗ୍ରାମୀ ମନୋଭାବ ଓ ପ୍ରଶ୍ନବାଚୀ ଚିନ୍ତାଧାରାରେ ନିଷ୍ଠା ଓ ଆବେଗ କେତେ ।

## ସ୍ଥାୟୀ ଗୋପନ କେନ୍ଦ୍ର :

ସେହିଦିନଠାରୁ ଲଛମନବାବୁ ଥିବା ଯାଏ ବାହାନଗା ରେଳ ଷ୍ଟେସନ ଆମ୍ଭମାନଙ୍କ ରାଜନୈତିକ କାର୍ଯ୍ୟର ଏକ ସ୍ଥାୟୀ ଗୋପନ କେନ୍ଦ୍ର ହିସାବରେ କାର୍ଯ୍ୟ କଲା । ବେଙ୍କଟ୍‌ଦା ରେଳ କର୍ମଚାରୀ ମାନଙ୍କ ଭିତରେ ସାଂଗଠନିକ କାମ କରିବେ । ଡାକ୍ତର ସୁରଞ୍ଜନ ତାଙ୍କ ସୋରୋ ଡାକ୍ତରଖାନାରୁ ପ୍ରକାଶ୍ୟ ରାଜନୈତିକ ପ୍ରଚାର ଚଳାଇ ରଖିବେ । ଅକିଞ୍ଚନ ଗୋପନ ସଂସ୍ଥାମାନ ଗଢିତୋଳିବେ । ଲଛମନଙ୍କ ବନ୍ଧୁ ବିଶ୍ୱମୋହନ (ବଡଗାଁ) ଓ କଂଗ୍ରେସ କର୍ମୀ ଗୋବର୍ଦ୍ଧନ ପ୍ରଭୃତି ସେଥିରେ ସାହାଯ୍ୟ କରିବେ । ଯଥାସମ୍ଭବ ଗିରଫକୁ ଏଡାଇବା ପାଇଁ ଚେଷ୍ଟା କରାଯିବ । ରାଧାଶ୍ୟାମ ଆର୍ଥିକ ସହାୟତା ଦେବାକୁ ସମ୍ମତ ହେଲେ । ଏହି ବ୍ୟବସ୍ଥା ସମୟକ୍ରମେ ଭାଙ୍ଗି ପଡିଲା । ବେଙ୍କଟ୍‌ଦା ଓ ଗୋବର୍ଦ୍ଧନ ଜେଲ୍‌କୁ ଗଲେ । ଅକିଞ୍ଚନ କଲିକତା ଚାଲିଗଲେ । କିନ୍ତୁ ବ୍ୟକ୍ତିଗତ ଭାବେ ଲଛମନ ବାବୁ ଓ ଡାକ୍ତର ସୁରଞ୍ଜନ ତାଙ୍କ କର୍ତ୍ତବ୍ୟ ପାଳନରେ ଅବିଚଳିତ ହୋଇ ରହିଲେ । ଲଛମନ କିଛିଟା ଆଗେଇ ଯାଇ ରେଳ ଧର୍ମଘଟ ପାଇଁ ପୋଷ୍ଟର ମାନ ବିଭିନ୍ନ ଷ୍ଟେସନ୍‌ରେ ଲଗାଇଲେ ।

## ଅସ୍ଥାୟୀ ବିଚ୍ଛିନ୍ନତା

ଏହି ସମୟରେ ମୁଁ ଭଦ୍ରକରେ ୧୯୪୩ ଆଦ୍ୟରେ ଗିରଫ ହୋଇ ଲଗାତାର ଭାବେ ବିଭିନ୍ନ ଜେଲ୍‌ମାନଙ୍କରେ ୧୯୪୫ରେ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ଅଟକ ହୋଇ ରହିଗଲି । ଲଛମନଙ୍କ ସହିତ ସମ୍ପର୍କ ଛିନ୍ନ ହୋଇ ଗଲା । ପରେ ଆସି ଯାହା ଶୁଣିଲି ଲଛମନ ବ୍ୟକ୍ତିଗତ ଭାବେ, ଭାରତୀୟ ରାଜନୀତି ଉପରେ ଏବଂ ଆଦର୍ଶଗତ ଭାବେ ସାମ୍ୟବାଦ ଉପରେ ବିଭିନ୍ନ ରାଜନୈତିକ କର୍ମୀମାନଙ୍କ ସହିତ ଆଲୋଚନା ଚଳାଇ ରଖିଥିଲେ ଓ ବ୍ୟକ୍ତିଗତ ଭାବେ କର୍ମୀମାନଙ୍କୁ ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ ।

ଭାବପ୍ରବଣ ବନ୍ଧୁ ଲଛମନ :

୧୯୪୬ରେ ମୋର ବିବାହ ଦିନ ହଠାତ୍ ଲଛମନଙ୍କର ଆମ ଘରେ ଆବିର୍ଭାବ । ହାତରେ ପୂରା ଭର୍ତ୍ତି ହୋଇଥିବା ଏକ ଓଜନଦାର ଥଳି । ଫଳ, ମିଠା, ବିସ୍କୁଟ ଇତ୍ୟାଦିରେ ଭର୍ତ୍ତି । ସେଦିନ ତାଙ୍କର ପ୍ରଶ୍ନ ଥିଲା କମ୍, ରିପୋର୍ଟିଂ ଥିଲା ବେଶି । କିପରି ବହୁତ ତଥାକଥିତ ଦେଶପ୍ରେମୀ ସରକାରଙ୍କୁ ବଣ୍ଡ ଦେଇ ଜେଲରୁ ମୁକ୍ତ ହୋଇଥିଲେ ଓ ସେହିମାନେହିଁ ଆମକୁ ଦେଶଦ୍ରୋହୀ ବୋଲି ଗାଳି କରୁଥିଲେ- ଏହାହିଁ ଥିଲା ତାଙ୍କରିପୋର୍ଟର ମୁଖ୍ୟ ବିଷୟବସ୍ତୁ ।

ତା ସହିତ ୧୯୪୫ରେ ଫାସିଷ୍ଟ ଶକ୍ତିମାନଙ୍କର ପରାଜୟ, ବିଶ୍ୱଯୁଦ୍ଧ ପରବର୍ତ୍ତୀ ବିଶ୍ୱ ତଥା ଭାରତୀୟ ରାଜନୀତି ସମ୍ପର୍କରେ ଖୁବ୍ ବ୍ୟାପକ ଚର୍ଚ୍ଚା ହେଲା । ସବୁ କଥା ଭିତରେ ତାଙ୍କ ଚିନ୍ତାର ପ୍ରଶ୍ନବାଚୀ ପ୍ରଖରତା ଥିଲା ଖୁବ୍ ଉଦ୍‌ଭଟ । ମୋର ସବୁ ବନ୍ଧୁଙ୍କ ଭିତରେ ତାଙ୍କର ପ୍ରଶ୍ନବାଚୀ ଆଲୋଚନା ଥିଲା ସର୍ବାଧିକ । କେତେ କେତେ ଜଟିଳ ପ୍ରଶ୍ନ- ବ୍ୟକ୍ତିଗତ ଜୀବନର ସମସ୍ୟାବଳୀ ଠାରୁ ଆରମ୍ଭ କରି ସମଗ୍ର ମାନବ ସମାଜର ଗତିଧାରା ଓ ଭବିଷ୍ୟତ ସମ୍ପର୍କରେ ତାଙ୍କର ଚିନ୍ତା ଥିଲା ଖୁବ୍ ଗଭୀର ଓ କାଳଭେଦୀ ।

ଏହାପରେ ଯେତେଥର ଲଛମନ ଆମ ଘରକୁ ଆସନ୍ତି ଖାଲି ହାତ ନା ଖାଲି ମନରେ କେବେ ନୁହେଁ । ଥରେ ମୁଁ କଟକ ଡାକ୍ତର ଖାନାରେ କଳିକା କଟେଜରେ ରହି ଏକ ଅସ୍ତ୍ରୋପଚାର ପରେ ଚିକିତ୍ସିତ ହେଉଥିଲି । ସେତେବେଳେ ମୁଁ ଅଟକବନ୍ଦୀ ଥିଲି । ଲଛମନ ଥିଲେ ନିରାକରପୁର ଷ୍ଟେସନରେ । ସେଠାରୁ ଜଣେ କମ୍ରେଡ ଆସୁଥିଲେ ମୋତେ ଦେଖା କରିବା ପାଇଁ । ସେ ଗାଡ଼ିକୁ ଉଠିଲାବେଳେ ତରବରରେ ଲଛମନ ତାଙ୍କ ପକେଟ୍‌ରେ ଯାହା ଥିଲା ତାହା ତାଙ୍କ ହାତରେ ମୋ ପାଖକୁ ପଠାଇ ଥିଲେ । କିନ୍ତୁ ସେ କମ୍‌ରେଡ୍ ମୋତେ ଦେଖା କରିଗଲେ, ଲଛମନ ପଠାଇଥିବା ସାହାଯ୍ୟ ମୋତେ ଦେଇ ନଥିଲେ କିମ୍ବା ସେ ବିଷୟରେ କୌଣସି ସୂଚନା ମଧ୍ୟ ଦେଇନଥିଲେ । ତାପରେ ହଠାତ୍ ଲଛମନ ଏକ ଭାରି ବ୍ୟାଗ ଧରି ଆସି ଡାକ୍ତର ଖାନାରେ ହାଜର । ସିଧା ସଳଖ କିଛି ନପାଇ କଥାବାର୍ତ୍ତା ଭିତରୁ ସୂଚନା ପାଇଗଲେ ଯେ ମୁଁ ତାଙ୍କ ପଠାଇଥିବା ସାହାଯ୍ୟ ପାଇନାହିଁ । ହଠାତ୍ ସେ କ୍ରୋଧରେ ଅଧୀର ହୋଇ ପଡ଼ିଲେ । ଟଙ୍କାର ପରିମାଣଟା ନଥିଲା ବଡ଼କଥା- ତାଙ୍କ କ୍ରୋଧର କାରଣ ଥିଲା ଜଣେ କମ୍ରେଡ୍‌ର ଜୀବନର ମୂଲ୍ୟବୋଧର ଅଭାବ । ତାଙ୍କ ମନ୍ତବ୍ୟ ଥିଲା- "What ! a Comrade stealing the help meant for a Comrade who is fighting with death ! No, No, it is not excusable a crime."

ମୁଁ ନିରାକାରପୁର କେତେ ଥର ଯାଇଛି । ତାଙ୍କ କ୍ୱାଟର୍‌ରେ ରାତି କଟାଇଛି । ସାଥୀମାନେ ଆସି ମୋ ସହିତ ସେଠାରେ ସାକ୍ଷାତ କରିଯାନ୍ତି । ସେଥିରେ ତାଙ୍କର ଆପତ୍ତି ବା ଭୟ ନଥାଏ । ମାତ୍ର ସମସ୍ତ ଆତିଥ୍ୟ ଭିତରେ ତାଙ୍କ ବସାରେ ପ୍ରଧାନ ମେନୁ ଥିଲା ପ୍ରଶ୍ନ, ପ୍ରଶ୍ନ, ପ୍ରଶ୍ନ । ଏହା ପଛରେ

ତାଙ୍କର ଏକ ବିଧିବଦ୍ଧ ଧାରଣା କାର୍ଯ୍ୟ କରୁଥିଲା- "ବନମାଳୀ ଦାସଙ୍କ ଭାଷଣ ଅପେକ୍ଷା ୯୮ଙ୍କ ସହିତ ପ୍ରଶ୍ନୋତ୍ତର ଆଲୋଚନା ଅଧିକ ଆନନ୍ଦ ଦାୟକ ।" ସଭାରେ ଭାଷଣ ଦେଲାବେଳେ କେହି ଯଦି ମୋତେ ବିରୋଧାତ୍ମକ ପ୍ରଶ୍ନ କରେ ଲଛମନଙ୍କ ତୁରନ୍ତ ମନ୍ତବ୍ୟ ହୁଏ "ମଲା ବିଚରା, ମୂର୍ଖଟା ପ୍ରଶ୍ନ କାହିଁକି କରୁଛି ବନମାଳୀ ଦାସଙ୍କୁ ?"

ଏହି ବୌଦ୍ଧିକ ବନ୍ଧୁତ୍ୱ ଆମ ଦୁହିଁଙ୍କୁ ଏକ ଭାବପ୍ରବଣ ବନ୍ଧୁତାରେ ବାନ୍ଧି ଦେଇଥିଲା ଶେଷ ପର୍ଯ୍ୟନ୍ତ । ମୃତ୍ୟୁର ବର୍ଷେ ଦୁଇବର୍ଷ ପୂର୍ବରୁ ମୁଁ ତାଙ୍କ ବାହାନଗା ଘରକୁ ଯାଇଥିଲି । ମୁଁ ଓ ମୋ ଝିଅ ତାଙ୍କ ଘରେ ଖିଆ ପିଆ କଲୁଁ । ଆଗପରି ଆଉ ପ୍ରଶ୍ନବାଚୀ ଆଲୋଚନା ନଥିଲା । କିଛିଟା ଜଞ୍ଜାଳ ଭିତରେ ସେ ଏକାକୀ ଦିନ କାଟୁଥିଲେ । ହେଲେ ସେହି ଓଳିକର ଆତିଥ୍ୟ ଭିତରେ ଆନ୍ତରିକ ଶ୍ରଦ୍ଧାର ପ୍ରାବଲ୍ୟକୁ ଉପଲବ୍ଧି ନକରି କେହି ରହି ପାରିବ ନାହିଁ । ସେଠାରୁ ଫେରିଲା ପରେ ମୋ ଝିଅ କହିଲା "ବାସ୍ତବିକ କେତେ ସ୍ନେହୀ ଲଛମନ ବାବୁ" । ମୁଁ କହିଲି ଏହା ତାଙ୍କର "ସ୍ୱଭାବସିଦ୍ଧ" । ଆଜି କାଲିର ରାଜନୈତିକ କର୍ମୀମାନଙ୍କ ମଧ୍ୟରେ ଏ ପ୍ରକାର ବନ୍ଧୁତା ଖୁବ୍ ବିରଳ ।

## ସୋରୋ ଅଞ୍ଚଳରେ କୃଷକ ଆନ୍ଦୋଳନ

ଲଛମନଙ୍କ ଘର ସୋରୋ ଥାନା ଅଞ୍ଚଳ ଭିତରେ । ବିଶ୍ୱଯୁଦ୍ଧର ଅବସାନ ପରେ ସୋରୋ ଅଞ୍ଚଳରେ ପ୍ରବଳ ଭାଗଚାଷୀ ଆନ୍ଦୋଳନ ଦେଖା ଦେଲା । ତାର ନେତୃତ୍ୱ ନେଉଥିଲେ ଷୈଳେନ୍ଦ୍ରା ମହାରଣା ଓ ଷୈଳେନ୍ ମହାପାତ୍ର (ପରେ କଂଗ୍ରେସରେ ମିଶିଲେ) । ନୀଳଗିରିରେ ମଧ୍ୟ ସେହି ସମୟରେ ଭାଗଚାଷୀ ଆନ୍ଦୋଳନ ଜାଁ ଭାଁ ମୁଣ୍ଡ ଟେକି ଉଠିଥିଲା । ଦିନେ ସକାଳେ ବଡଗାଁ ମହନ୍ତଙ୍କ ଘର ଉପରେ ନୀଳଗିରି ଓ ବାହାନଗା ଅଞ୍ଚଳର କୃଷକ କର୍ମୀମାନେ ପ୍ରବଳ ଆକ୍ରମଣ ଚଳାଇଥିଲେ । ବହୁତ ଜିନିଷ ଲୁଟ୍‌ପାଟ୍ କରିନେଲେ । ମହନ୍ତଙ୍କ ବିରୁଦ୍ଧରେ ସେତେବେଳେ ଜିଲ୍ଲା ଏସ୍.ପି.- ବୈଷ୍ଣବବାବୁ । ସଙ୍ଗେ ସଙ୍ଗେ ବଡଗାଁରେ ପଡିଗଲା ପୁଲିସ ଶିବିର । ଲୋକଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କରିବା ଥିଲା ସେମାନଙ୍କର କାମ । ଲଛମନଙ୍କୁ ଭେଟିଲି । ସେ ମତ ଦେଲେ ପୁଲିସ ଶିବିରକୁ ଯେ କୌଣସି ମତେ ସେଠାରୁ ଉଠାଇବାକୁ ହେବ । ଦୈବାତ୍ ସେହି ସମୟରେ ଉପରଓଳି ଦିନେ ଖୁବ୍ ତୋଫାନ ହେଲା । ପହରା ଦେଉଥିବା ଦୁଇଜଣ ସିପାହୀ ଜଣେ ବୁଢୀ ଘରକୁ ପଶିଗଲେ । ତୋଫାନ ଛାଡିଲା ପରେ ସେମାନେ ଚାଲି ଆସିଲେ । ମୁଁ ବୁଢୀ ଘରେ ପହଞ୍ଚିଗଲି । ବୁଢିକୁ ରାଜି କରାଇଲି ସେ ଏସ୍.ପି.କୁ ଏକ ଦରଖାସ୍ତ କରିବ, ତା ବଢିଲା ଝିଅ ପ୍ରତି କନେଷ୍ଟବଳ ଦୁଇଜଣ ଅଶ୍ଳୀଳ ଭାବ ପ୍ରକାଶ କରିଥିଲେ । ଏସ୍.ପି. ବୈଷ୍ଣବ ବାବୁ ତୁରନ୍ତ ତଦନ୍ତ କରି ବୁଝିଲେ ଯେ କନେଷ୍ଟବଳ ଦୁଇଜଣ ବୁଢୀଘରେ ପଶିଥିଲେ ଓ ବୁଢୀର ଗୋଟିଏ ବଢିଲା ଝିଅ ଅଛି । ତାପରେ ଏହିଭଳି କାଣ୍ଡ ପୁଲିସ ଚାରିଆଡେ ଘଟାଉଛନ୍ତି ବୋଲି ଆମେ ଅଭିଯୋଗ କଲୁଁ । ବଡଗାଁରୁ ପୁଲିସ ଶିବିର ତୁରନ୍ତ ଉଠିଗଲା ।

ଆମ ବନ୍ଧୁ ରାଧାଶ୍ୟାମଙ୍କ ବିରୁଦ୍ଧରେ ମଧ୍ୟ ଭାଗଚାଷୀମାନେ ଉଠିଲେ । ଲଛମନ କିନ୍ତୁ

ରହିଲେ ଭାଗଚାଷୀଙ୍କ ସପକ୍ଷରେ । ନାନା ଭାବରେ ଆନ୍ଦୋଳନ ପ୍ରତି ପରୋକ୍ଷ ସାହାଯ୍ୟ ସେ ଚଳାଇ ରଖିଥିଲେ । ଆନ୍ଦୋଳନର କର୍ମୀ ମାନଙ୍କର ସେ ହୋଇଯାଇଥିଲେ ଜଣେ ପରୋକ୍ଷ ପରାମର୍ଶଦାତା ସେନାପତି ।

## କୁଡେଇ ଆକ୍ରମଣ :

ସୋରୋଠାରୁ ପ୍ରାୟ ୪।୫ କି.ମି. ଦୂର ହେବ କୁଡେଇ ଗ୍ରାମ । ସେଠାରେ ଏକ ସଭା ବସିବା ପାଇଁ କୃଷକ ସଭା ପକ୍ଷରୁ ସ୍ଥିର ହେଲା । ସ୍ଥାନୀୟ କୃଷକ ନେତା ଶୈଳେଜା ପ୍ରଭୃତି ସଭା କଲେ । ହଠାତ୍ ସେଠାକାର ନାମୀ ଜମିଦାର ଶ୍ୟାମସୁନ୍ଦର ପ୍ରହରାଜ ଗୁଣ୍ଡା ଲଗାଇ ସଭାଉପରେ ଆକ୍ରମଣ ଚଳାଇ ଦେଲେ । ଲାଇଟ ପ୍ରଭୃତି ଭାଙ୍ଗିରୁଜି ଦେଲେ । କର୍ମୀମାନଙ୍କୁ ମାଡ ଦେଇ ଘଉଡାଇ ଦେଲେ ।

ଲଛମନ ଏ ଖବର ପାଇ ମୋତେ ଡକାଇଲେ । ଆମେ ଦୁହେଁ ଯାଇ ମିଶିଲୁଁ ଡାକ୍ତର ସୁରଞ୍ଜନଙ୍କ ଘରେ । ଲଛମନଙ୍କର ଡାକ୍ତରଙ୍କୁ ବରାଦ ହେଲା- ଦୁଇଦିନ ମଧ୍ୟରେ ସେ ମୋତେ ଫାଇଲେରିଆ ଜନିତ ଅସୁସ୍ଥତାରୁ ମୁକ୍ତ କରି ଦେବେ ଏବଂ ୩ ଦିନ ପରେ ସେହି କୁଡେଇ ଗ୍ରାମରେ ମୋ ନେତୃତ୍ୱରେ ପୁଣି ସଭା ହେବ । ଏହା ଘୋଷଣା କରି ପ୍ରଚାର ପତ୍ର ଛପା ହେଲା । ଡାକ୍ତର କହିଲେ ମୋତେ ଠିକ୍‌କରି ଦେବେ କିନ୍ତୁ ମୁଁ ତାଙ୍କ ଘରେ ସଭା ପର୍ଯ୍ୟନ୍ତ ରହିବି । ତାହାହିଁ ହେଲା । "ଯୁଦ୍ଧମ୍ ଦେହିଂ" ପ୍ରଚାର ପତ୍ର ବଣ୍ଟା ହେଲା । ନୀଳଗିରିରୁ ପ୍ରାୟ ୨ ଶହ ଲାଠିଧାରୀ ସ୍ୱେଚ୍ଛାସେବକ କୁଡେଇରେ ପହଞ୍ଚିଲେ । ପୁଲିସ ବାହିନୀ ମଧ୍ୟ ସେଠାରେ ପହଞ୍ଚିଲେ । ସେ ଦିନର ଅଞ୍ଚଳ ପ୍ରଦକ୍ଷିଣ କରିଥିବା ଶୋଭାଯାତ୍ରା ଖୁବ୍ ସଂଗ୍ରାମୀ ଥିଲା । ଜମିଦାରଙ୍କ ଗୁଣ୍ଡାମାନଙ୍କୁ ଆହ୍ୱାନ ଦିଆଗଲା, ଲାଇଁଷୋର ସାମନାକୁ ଆସିବା ପାଇଁ । ସଭା ସାରି ଫେରିଲୁଁ ସୋରୋକୁ । ଓଃ କଣ ଦେଖିବା ଲଛମନଙ୍କ ଉନ୍ମାଦନା !

## ପାର୍ଟି ବିଭାଜନ :

ପାର୍ଟି ଭିତରେ ବିଭାଜନ ଘଟିଲା ଷଷ୍ଠ ଦଶକର ଶେଷାର୍ଦ୍ଧରେ । ସୃଷ୍ଟି ହେଲା ସି.ପି.ଆଇ. ଏବଂ ସି.ପି.ଆଇ.(ଏମ୍.) । ମୁଁ ରହିଲି ସି.ପି.ଆଇ.(ଏମ୍) ସହିତ । ବନ୍ଧୁ ଲଛମନ ରହିଲେ ସି.ପି.ଆଇ. ସହିତ । ସି.ପି.ଆଇ.ର ରାଜନୀତି ପ୍ରତି ତାଙ୍କର ସମର୍ଥନ ଯେତେଟା ନଥିଲା ବିଭାଜନ ପ୍ରତି ବିରୋଧୀତା ଥିଲା ଅଧିକ । ବିଭାଜନ କମ୍ୟୁନିଷ୍ଟ ଆନ୍ଦୋଳନକୁ ଦୁର୍ବଳ କରିଦେବ ଏଇ ଥିଲା ତାଙ୍କର ବିଚାର । ସି.ପି.ଆଇ.(ଏମ୍)ର ଏମ୍.ଏଲ୍.ଏ. ହିସାବରେ ମୁଁ ନିର୍ବାଚିତ ହେଲି ୧୯୬୭ରେ । ସେଥିରେ ତାଙ୍କର ପରମ ଆନନ୍ଦ । ସେ ମଧ୍ୟ ନୀଳଗିରି ନିର୍ବାଚନ ଖର୍ଚ୍ଚ ପାଇଁ ଆର୍ଥିକ ସାହାଯ୍ୟ ଦେଇଥିଲେ । ହେଲେ ସୋରୋର ସି.ପି.ଆଇ. ସହିତ ତାଙ୍କର ସମ୍ପର୍କକୁ ଅକ୍ଷୁଣ୍ଣ ରଖିଥିଲେ । ରାଜନୈତିକ ମତଭେଦ ସତ୍ତ୍ୱେ ସଂଗ୍ରାମୀ ବନ୍ଧୁତାକୁ ବଜାୟ ରଖିବାର ନିଦର୍ଶନ ଥିଲୁଁ ଆମେ ଦୁହେଁ, ନୀତିଭିତ୍ତିକ ଚିନ୍ତାଧାରା ନଥିଲେ ଏହା ସମ୍ଭବପର ନୁହେଁ ।

## ଚାକିରିରୁ ଅବସର ନେବାପରେ :

ଲଛମନ ଖୋଲାଖୋଲି ଭାବେ ସି.ପି.ଆଇ.ର ସଭ୍ୟପଦ ଗ୍ରହଣ କଲେ । ପାର୍ଟି ପାଇଁ କାମ କଲେ । କେତେକ ପାର୍ଟି କର୍ମୀଙ୍କର ଆଚରଣଗତ ଦୋଷତ୍ରୁଟିରେ ସେ ଖୁବ୍ ବ୍ୟଥିତ ହୋଇ ପଡୁଥିଲେ ମଧ୍ୟ ରାଜନୈତିକ ସୁବିଧାବାଦକୁ ସେ କେବେହେଲେ ମନ ଭିତରେ ପଶିବାକୁ ଦେଉନଥିଲେ ।

୧୯୪୨ର ସୁଭାଷ ପନ୍ଥୀ ଓ ଏକ ସନ୍ତ୍ରାସବାଦୀ ଗୋଷ୍ଠୀର ଘେର ଭିତରେ ଥିବା ସାଥୀ ଲଛମନଙ୍କ ଜୀବନ କ୍ରମବିକାଶର ଧାରାକୁ ଲକ୍ଷ୍ୟ କଲେ ବର୍ତ୍ତମାନର ସାଂଗଠନିକ ଓ ରାଜନୈତିକ ହତାଶାରୁ କିଛିଟା ଆଶ୍ୱସ୍ତି ନିଶ୍ଚୟ ନିଷ୍ଠାପର ବିପ୍ଳବୀ କର୍ମୀମାନେ ପାଇ ପାରିବେ ।

ବନମାଳୀ ଦାସ

ନୀଳଗିରି